# ପାଠ୍ୟ ପ୍ରବନ୍ଧାବଳୀ

ଓଡ଼ିଆ ବିଭାଗ

ଉତ୍କଳ ବିଶ୍ୱବିଦ୍ୟାଳୟ

ସମ୍ପାଦକ—ଡକ୍ଟର୍ ବଂଶୀଧର ମହାନ୍ତି, ଏମ୍. ଏ., ପି. ଏଚ୍. ଡି. (ଉତ୍କଳ)
ପ୍ରାଧ୍ୟାପକ, ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ

ଦ୍ୱିତୀୟ ଖଣ୍ଡ

୧୯୭୮-୭୯

ଉତ୍କଳ ବିଶ୍ୱବିଦ୍ୟାଳୟର ଉପାଧ୍ୟୁତ୍ତର ଓଡ଼ିଆ ବିଭାଗର ପାଠଚକ୍ର ପ୍ରବନ୍ଧାବଳୀର ଦ୍ୱିତୀୟ ଭାଗ ପ୍ରକାଶିତ ହେବା ଅବକାଶରେ ମୋର ଆନ୍ତରିକ ଶୁଭେଚ୍ଛା ଜ୍ଞାପନ କରୁଅଛି । ଓଡ଼ିଆ ବିଭାଗର ଅଧ୍ୟାପକବୃନ୍ଦ ଓ ଛାତ୍ରଛାତ୍ରୀମାନଙ୍କର ଗବେଷଣାମୂଳକ ପ୍ରବନ୍ଧାବଳୀର ଏହି ଉଚ୍ଚକୋଟୀର ସଙ୍କଳନ ଓଡ଼ିଆ ଭାଷା ଓ ସାହିତ୍ୟ ଆଲୋଚନା ଉପରେ ସମୁଚିତ ଆଲୋକପାତ କରିବା ସଙ୍ଗେ ସଙ୍ଗେ ପ୍ରତିଭାଶାଳୀ ଲେଖକମାନଙ୍କ ପ୍ରତିଭା ବିକାଶ କରିବାରେ ସହାୟକ ହେବ ।

ରମାନାଥ ମହାନ୍ତି

୧୪ । ୧୦ । ୭୨

କୁଳପତି

ଉତ୍କଳ ବିଶ୍ୱବିଦ୍ୟାଳୟ

# ଉପୋଦ୍‌ଘାତ

ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗର ସୃଷ୍ଟି ହୁଏ ୧୯୬୧ ମସିହାରେ । ଏହାର ସୃଷ୍ଟି ପୂର୍ବରୁ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ସାଧନ ଉଦ୍ଦେଶ୍ୟରେ ଆଉ ଗୋଟିଏ ଅନୁଷ୍ଠାନର ସୃଷ୍ଟି ମଧ୍ୟ ଉଲ୍ଲେଖଯୋଗ୍ୟ, ଯଥା :—ଓଡ଼ିଆ ଭାଷା ଓ ସାହିତ୍ୟ ଉନ୍ନୟନ କମିଟି, ପାଣ୍ଡୁଲିପି ଗ୍ରନ୍ଥାଗାର ଓ ପାଣ୍ଡୁଲିପି ପ୍ରକାଶନ ବିଭାଗ । ପାଣ୍ଡୁଲିପି ଗ୍ରନ୍ଥାଗାରରେ ସମିତି କର୍ତ୍ତୃକ ବହୁ ଅପ୍ରକାଶିତ ଓଡ଼ିଆ ଓ ସଂସ୍କୃତ ଗ୍ରନ୍ଥ ସଂରକ୍ଷିତ ହୋଇଅଛି । ସ୍ୱର୍ଗତଃ ଡକ୍ଟର କରୁଣାକର କରଙ୍କର ଶତାଧିକ ପାଣ୍ଡୁଲିପି ସହିତ ଉତ୍କଳ ବିଶ୍ୱବିଦାଳୟ ଆନୁକୂଲ୍ୟରେ ମଧ୍ୟ ଅନେକ ସାହିତ୍ୟକ ଓ ଐତିହାସିକ ଉପାଦାନ ସଂଗୃହୀତ ହୋଇଅଛି । ପ୍ରତ୍ୟେକ ବର୍ଷ ବିଶ୍ୱବିଦ୍ୟାଳୟ ପ୍ରେସ୍‌ରେ ଓଡ଼ିଆ ସାହିତ୍ୟ ସମ୍ବନ୍ଧୀୟ ବହୁ ଉପାଦେୟ ପ୍ରାଚୀନ ତଥା ଆଧୁନିକ ଗ୍ରନ୍ଥ ପ୍ରକାଶିତ ହୋଇଥାଏ । ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ବହୁ ପୂର୍ବରୁ ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶ ପାଇଁ ଯେଉଁ ବଳିଷ୍ଠ ଭିତ୍ତିଭୂମି ସ୍ଥାପିତ ହୋଇଥିଲା, ଆଜିର ସ୍ନାତକୋତ୍ତର ଓଡ଼ିଆ ବିଭାଗ ତା'ହାରି ଉପରେ ପ୍ରତିଷ୍ଠିତ ।

ଦୈନନ୍ଦିନ ଅଧ୍ୟାପନା କାର୍ଯ୍ୟ ବ୍ୟତୀତ ଓଡ଼ିଆ ବିଭାଗର ପ୍ରଧାନ ଆଭିମୁଖ୍ୟ ହେଲା ଓଡ଼ିଆ ଭାଷା ଓ ସାହିତ୍ୟ ସମ୍ବନ୍ଧୀୟ ବିଭିନ୍ନ ତଥ୍ୟ ସଂଗ୍ରହ ଓ ଗବେଷଣା, ଓଡ଼ିଆ ଭାଷା ଓ ସାହିତ୍ୟର ପୂର୍ଣ୍ଣାଙ୍ଗ ଇତିହାସ ସଂକଳନ, ବିଭିନ୍ନ ଅପ୍ରକାଶିତ ଗ୍ରନ୍ଥ ସଂକଳନ ଓ ସମ୍ପାଦନ, ବିଶ୍ୱବିଦ୍ୟାଳୟ ପାଣ୍ଡୁଲିପି ଗ୍ରନ୍ଥାଗାରର ବର୍ଣ୍ଣନାତ୍ମକ ଗ୍ରନ୍ଥସୂଚୀ ପ୍ରକାଶନ, ତୁଳନାତ୍ମକ ଓଡ଼ିଆ ବ୍ୟାକରଣ ଓ ଅଭିଧାନ ପ୍ରଣୟନ ତଥା ପ୍ରକାଶିତ ଓଡ଼ିଆ ପୁସ୍ତକର ସୂଚୀ-ଗ୍ରନ୍ଥ ସମ୍ପାଦନ ଇତ୍ୟାଦି । ତନ୍ମଧ୍ୟରୁ ପ୍ରଥମେ ପାଣ୍ଡୁଲିପି ଗ୍ରନ୍ଥାଗାରର ବର୍ଣ୍ଣନାତ୍ମକ ଗ୍ରନ୍ଥସୂଚୀ ସମ୍ପାଦନ ଓ ପ୍ରାଚୀନ ଗ୍ରନ୍ଥ ସମ୍ପାଦନ କାର୍ଯ୍ୟ ଆରମ୍ଭ ହୋଇଅଛି । ଏହି କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ନିମିତ୍ତ ଜଣେ ଗବେଷଣା-ସହକାରୀ ନିଯୁକ୍ତ ହୋଇଅଛନ୍ତି । ସ୍ନାତକୋତ୍ତର ଓଡ଼ିଆ ବିଭାଗର ଅଙ୍ଗ ରୂପେ ଏକ ଗବେଷଣା ବିଭାଗ ମଧ୍ୟ କ୍ରମେ ସୃଷ୍ଟିଲାଭ କରୁଅଛି ।

ଓଡ଼ିଆ ବିଭାଗର ଅନ୍ୟ ଏକ ଆଭିମୁଖ୍ୟ ହେଲା ପାଠଚକ୍ର ମାଧ୍ୟମରେ ଅଧ୍ୟାପକ ତଥା ଛାତ୍ରଛାତ୍ରୀମାନଙ୍କ ଗବେଷଣା-ମନୋବୃତ୍ତି ସମ୍ପନ୍ନ କରାଇବା । ଏହି ବିଭାଗର ପାଠଚକ୍ର ପ୍ରାୟ ପ୍ରତ୍ୟେକ ସପ୍ତାହରେ ଅନୁଷ୍ଠିତ ହୋଇଥାଏ ଏବଂ ତହିଁରେ ଅଧ୍ୟାପକ ତଥା ଛାତ୍ରଛାତ୍ରୀମାନେ ସାହିତ୍ୟକ ପ୍ରବନ୍ଧ ପାଠ ଏବଂ ଆଲୋଚନାରେ ଅଂଶ ଗ୍ରହଣ କରିଥାଆନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ଆର୍ଥିକ ଅନୁଦାନ ଫଳରେ ଅଧ୍ୟାପକ ତଥା ଛାତ୍ରଛାତ୍ରୀମାନଙ୍କର ଆଲୋଚନାମୂଳକ ସାହିତ୍ୟକ ପ୍ରବନ୍ଧଗୁଡ଼ିକ "ପାଠଚକ୍ର ପ୍ରବନ୍ଧାବଳୀ"ର ଦ୍ୱିତୀୟ ଖଣ୍ଡରେ ପ୍ରକାଶିତ ହେଉଅଛି ।

ପାଠଚକ୍ର ପ୍ରବନ୍ଧାବଳୀର ଦ୍ୱିତୀୟ ଖଣ୍ଡ ପ୍ରକାଶ ପାଇବା ଅବକାଶରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର୍ ରମାନାଥ ମହାନ୍ତି ତାଙ୍କର ଶୁଭେଚ୍ଛା ଜ୍ଞାପନ କରିଥିବାରୁ ଓଡ଼ିଆ ବିଭାଗ ତରଫରୁ ମୁଁ ତାଙ୍କୁ କୃତଜ୍ଞତା ଜ୍ଞାପନ କରୁଅଛି । ପ୍ରବନ୍ଧଗୁଡ଼ିକର ସଂକଳନ ନିମନ୍ତେ ମୋତେ ବିଭାଗୀୟ ଅଧ୍ୟାପକମାନେ ସାହାଯ୍ୟ କରିଥିବାରୁ ମୁଁ ସେମାନଙ୍କୁ ଧନ୍ୟବାଦ ପ୍ରଦାନ କରୁଅଛି ।

—ବଂଶୀଧର ମହାନ୍ତି

# ସୂଚୀପତ୍ର

# ରୁଦ୍ରସୁଧାନିଧିର ରଚନାକାଳ

ଡକ୍ଟର କୃଷ୍ଣଚରଣ ସାହୁ
ବାଣୀ ବିହାର

ରୁଦ୍ର ସୁଧାନିଧି ପ୍ରାଚୀନ ଓଡ଼ିଆ ସାହିତ୍ୟର ଆଦିମତମ କଥାଗ୍ରନ୍ଥ । ଓଡ଼ିଆ ଗଦ୍ୟ ସାହିତ୍ୟର ଉଦ୍ଭବ ଓ ବିକାଶର ଆଲୋଚନା ପାଇଁ ଏହାର ମୂଲ୍ୟ ଯଥେଷ୍ଟ । ତେବେବି ଏହାର ରଚନା କାଳ ଏ ପର୍ଯ୍ୟନ୍ତ ସଠିକ ଭାବେ ନିର୍ଦ୍ଧାରିତ ହୋଇ ପାରିନାହିଁ । ନିମ୍ନରେ ପ୍ରଚଳିତ ମତସବୁକୁ ବିଶ୍ଳେଷଣ କରି ନୂତନ ଉପାଦାନ ବଳରେ ଏହାର ରଚନାକାଳ ସ୍ଥିର କରିବା ପାଇଁ ପ୍ରଚେଷ୍ଟା ହୋଇଛି ।

୧୯୩୨ ମସିହାରେ ଡକ୍ଟର ଆର୍ତ୍ତବଲ୍ଲଭ ରୁଦ୍ରସୁଧାନିଧିରୁ କିଛି ଅଂଶ ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶର ଗଦ୍ୟଭାଗରେ ସଂଯୋଜିତ କରି ଏହି ଗ୍ରନ୍ଥପ୍ରତି ପ୍ରଥମ କରି ଓଡ଼ିଆ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରନ୍ତି । ତାଙ୍କ ସମ୍ପାଦିତ ଗ୍ରନ୍ଥର ସଂକ୍ଷିପ୍ତ ଇଂରାଜୀ ମୁଖବନ୍ଧରୁ ଏହି ଗ୍ରନ୍ଥର ରଚନାକାଳ ସମ୍ବନ୍ଧରେ ଦୁଇଟି ଅନୁମାନ ମିଳେ । ପ୍ରଥମ ଅନୁମାନର ଆଧାର ହେଉଛି, ରଚନାଶୈଳୀ ବା ଏଥିରେ ବ୍ୟବହୃତ ଛନ୍ଦ । ରୁଦ୍ରସୁଧାନିଧିର ରଚନାଶୈଳୀକୁ ସାରଳା ଦାସଙ୍କ ବ୍ୟବହୃତ ଦାଣ୍ଡିବୃତ୍ତର ପୂର୍ବରୂପ ରୂପେ ଗ୍ରହଣ କରି ସେ ଅନୁମାନ କରନ୍ତି ଯେ ଏହାର ରଚନାକାଳ, ତ୍ରୟୋଦଶ ବା ଚତୁର୍ଦ୍ଦଶ ଶତାବ୍ଦୀ । ଏହା ତାଙ୍କର ଅନୁମାନ (୧), ସ୍ୱୀକୃତ ମତ ନୁହେଁ । ଭାଷା, ବାକ୍ୟ ଗଠନ ରୀତି, ଶବ୍ଦ-ନିର୍ମାଣ ଓ ବ୍ୟବହାର ପ୍ରଭୃତିରୁ ସେ ଏହାକୁ ସପ୍ତଦଶ ଶତାବ୍ଦୀ ବା ତତ୍ପୂର୍ବ ରଚନା ରୂପେ ଗ୍ରହଣ କରିଛନ୍ତି ଓ ଏହି ଅନୁମାନଟି ତାଙ୍କ ମତ (୨) ।

ପରବର୍ତ୍ତୀ ଆଲୋଚକମାନେ ଡକ୍ଟର ଆର୍ତ୍ତବଲ୍ଲଭଙ୍କ ସୂଚନାରୁ ରୁଦ୍ରସୁଧାନିଧିକୁ କେତେବେଳେ ତ୍ରୟୋଦଶ ତ କେତେବେଳେ ସପ୍ତଦଶ ଶତାବ୍ଦୀରେ ରଚିତ ଗ୍ରନ୍ଥ ଭାବେ ଗ୍ରହଣ କରିଛନ୍ତି । ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କ (୧୯୪୦) (୧୯୫୧) (୧୯୬୩) (୩) ମତରେ ନାରାୟଣାନନ୍ଦ ଅବଧୂତ ସ୍ୱାମୀ ସାରଳା ଦାସଙ୍କ ପୂର୍ବର ଲେଖକ । ଏହି ସମସ୍ତ ପାଇଁ ସେ କୌଣସି କାରଣ ଦେଇ ନଥିଲେହେଁ, ତାଙ୍କ ଆଲୋଚନାରୁ ସେ ଶବ୍ଦ ଓ ପ୍ରୟୋଗର ପ୍ରାଚୀନତାକୁ ବିଶେଷ ମହତ୍ତ୍ୱ ଦେଇଥିବା ଅନୁମିତ ହୁଏ ।

---

୧—ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶର ମୁଖବନ୍ଧ ପୃ.୯
୨— ,, ,, ପୃ.୬୨
୩—ଓଡ଼ିଆ ସାହିତ୍ୟର ଇତିହାସ (୧୯୬୩), ପୃ.୨୨୫

ଅଧ୍ୟାପକ ଜାନକୀ ବଲ୍ଲଭ ମହାନ୍ତି (୧୯୫୬) (୪) ଓଡ଼ିଶାର ଶୈବଧର୍ମର ପ୍ରଚାର ଓ ପ୍ରସାରକୁ ରୁଦ୍ରସୁଧାନିଧି ରଚନାର ପ୍ରେରଣା ସ୍ରୋତ ଭାବି କୁହନ୍ତି ଯେ ଯେଉଁବେଳେ ଶୈବଧର୍ମ ଏ ଦେଶର ରାଜଧର୍ମ ଥିଲା ଅର୍ଥାତ୍ ଗଙ୍ଗବଂଶଙ୍କ ରାଜତ୍ୱ ସମୟରେ ଅର୍ଥାତ୍ ଷୋଡଶ ଶତାବ୍ଦୀ ପୂର୍ବରୁ ଏ ଗ୍ରନ୍ଥଟି ରଚିତ ହୋଇଥିବା ବିଶେଷ ସମ୍ଭବ । ତାଙ୍କ ତର୍କକୁ ଗୁରୁତ୍ୱ ଦେବାପାଇଁ ସେ ଏଥିରେ ଥିବା 'ତ' ପ୍ରୟୋଗର ଆଲୋଚନା କରିଛନ୍ତି ।

ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି (୧୯୬୨) (୫) ତାଙ୍କ ପୂର୍ବରୁ ପ୍ରଚଳିତ ଥିବା ତିନୋଟି ଲେଖକଙ୍କ ମତରେ ବିଶ୍ଳେଷଣ କରି ଅଷ୍ଟାଦଶ ଶତାବ୍ଦୀ ଠାରୁ ପ୍ରତିଲୋମ ଗତିରେ ଯାଇ ଶେଷରେ ଚତୁର୍ଦ୍ଦଶ ଶତାବ୍ଦୀକୁ ରୁଦ୍ରସୁଧାନିଧିର ରଚନାକାଳ ରୂପେ ଗ୍ରହଣ କରିଛନ୍ତି । ଗ୍ରନ୍ଥର ଭାଷା, ରଚନାଶୈଳୀ ତଥା ଓଡ଼ିଶାର ଧର୍ମବିକାଶର ଧାରା ତାଙ୍କୁ ପ୍ରମାଣ ଯୋଗାଇଛି । ତାଙ୍କ ମତରେ ଅଷ୍ଟାଦଶ ଶତାବ୍ଦୀର ମାଦଳା ପାଞ୍ଜି, ସପ୍ତଦଶ ଶତାବ୍ଦୀର ସୋମନାଥ ବ୍ରତ କଥା, ଷୋଡଶ ଓ ପଞ୍ଚଦଶ ଶତାବ୍ଦୀର ବୈଷ୍ଣବ ଲେଖକଙ୍କ ରଚନାବଳୀ ପୁଣି ପଞ୍ଚଦଶ ଶତାବ୍ଦୀର ସାରଳା ଦାସଙ୍କ ମହାଭାରତର ଭାଷା ସହ ରୁଦ୍ରସୁଧାନିଧି ଭାଷାର କୌଣସି ସାମଞ୍ଜସ୍ୟ ନାହିଁ । ଧର୍ମକୁ ମୁଖ୍ୟ କାରଣ ରୂପେ ଗ୍ରହଣ କରିବା ଅସମୀଚୀନ ହେଲେବି ଏହାକୁ ଗୌଣ ବା ସହାୟକ କାରଣ ଭାବେ ସ୍ୱୀକାର କରି ସେ ତାଙ୍କର ମତ ଦେଇଛନ୍ତି ।

ଶ୍ରୀ ସୁରେନ୍ଦ୍ର ମହାନ୍ତି (୧୯୬୩) (୬) ଶୈବଧର୍ମ, 'ପରାକୃତ ଭାଷା ହଂସୁଥାଇ' ପ୍ରଭୃତିରୁ ଏହାକୁ ସାରଳା ଦାସଙ୍କ ପୂର୍ବ ରଚନା ରୂପେ ଗ୍ରହଣ କରିବାକୁ ଭାବୁଥିଲେହେଁ 'ଭାଷାର ମାର୍ଜିତ ସୌକୁମାର୍ଯ୍ୟ, ଭାବରେ ଆଲଙ୍କାରିକ ଆଙ୍ଗିକ' ଦେଖି ସେ ଏଥିରେ 'ସାରଳାଙ୍କ ପରବର୍ତ୍ତୀକାଳୀନ ମଧ୍ୟଯୁଗୀୟ ଚରିତ'ର ଆଭାସ ପାଇଛନ୍ତି ।

୧୯୬୫ ମସିହାରେ ଡକ୍ଟର କରୁଣାକର କରଙ୍କ ସମ୍ପାଦନାରେ ଏହି ଗ୍ରନ୍ଥର ସମସ୍ତ (ଅସମ୍ପୂର୍ଣ୍ଣ) ପାଣ୍ଡୁଲିପି ପ୍ରକାଶିତ ହୁଏ । ମୁଖବନ୍ଧରେ (୭) ସେ ଏହାର ସମୟ ନିର୍ଦ୍ଧାରଣ ପାଇଁ ପ୍ରୟାସ କରିଛନ୍ତି । ସେ ଗ୍ରନ୍ଥମଧ୍ୟରୁ ଦ୍ୱିତୀୟା ବହୁବଚନରେ 'ନ୍ତି' 'ପ୍ରତ୍ୟୟ' ପଞ୍ଚମୀ ବିଭକ୍ତିର ଠାରୁ ବା ରୁ ଅର୍ଥରେ 'ତହିଁ' ପଦ, ପଞ୍ଚମୀ ବିଭକ୍ତିରେ 'ହୁଁ' ପ୍ରତ୍ୟୟ, ସପ୍ତମୀ ବିଭକ୍ତିରେ 'ହିଁ' ଏବଂ 'ତହିଁ' ପ୍ରତ୍ୟୟ ପୁଣି 'ଅମନାତ୍ୟ ପେଷିଲେ', 'ସ୍ରୋହେ', 'ପବନେ କରି', 'ମଦାଙ୍ଗ' ପ୍ରଭୃତି କେତେକ ପ୍ରାଚୀନ ଶବ୍ଦର ପ୍ରୟୋଗ ଦେଖି ଅବଧୂତ ନାରାୟଣାନନ୍ଦଙ୍କ 'ସାରଳା ଦାସ ଏବଂ ବଳରାମ ଦାସଙ୍କ ମଧ୍ୟବର୍ତ୍ତୀ, ଅର୍ଥାତ୍ ସାରଳା ଦାସଙ୍କ ପରବର୍ତ୍ତୀ ଏବଂ ବଳରାମ ଦାସଙ୍କ ପୂର୍ବବର୍ତ୍ତୀ ଅର୍ଥାତ ଚୈତନ୍ୟଙ୍କ ଆଗମନର ପୂର୍ବଲୋକ' ରୂପେ ଅନୁମାନ କରିଛନ୍ତି ।

---

୪—Oriya Literature, P. 13.
୫—ପ୍ରାଚୀନ ଓଡ଼ିଆ ସାହିତ୍ୟ, ପୃ.୬୩-୭୦ ।
୬—ଓଡ଼ିଆ ସାହିତ୍ୟର ଆଦିପର୍ବ, ପୃ.୧୧୫
୭—ରୁଦ୍ର ସୁଧାନିଧି, ମୁଖବନ୍ଧ, ପୃ. ୧୩-୧୪

ଡକ୍ଟର ମାୟାଧର ମାନସିଂହ (୧୯୬୭) (୮) ତାଙ୍କ ପୂର୍ବ ଅଲୋଚକମାନଙ୍କ ମତ ଉଦ୍ଧାର କରି କୁହନ୍ତି ଯେ 'ଓଡ଼ିଆ ସୁଧୀବର୍ଗ ଏହି ଗଦ୍ୟ ଗ୍ରନ୍ଥଟିକୁ ଯେ ତ୍ରୟୋଦଶ ଶତାବ୍ଦୀରେ ନେଇ ଯୋଉଛନ୍ତି, ତାହା ବିଶେଷ ଭାନ୍ତି ମୂଳକ ବୋଲି ମନେ ହୁଏ ନାହିଁ' । ଓଡ଼ିଆ ସୁଧୀବର୍ଗ କହିବା ବେଳେ ସେ କେଉଁ ଆଲୋଚକଙ୍କ କଥା କହୁଛନ୍ତି ତାହା ଜାଣି ହୁଏ ନାହିଁ । ତାଙ୍କ ପୂର୍ବରୁ ଯେତେ ଆଲୋଚନା ହୋଇଛି, ସେଥିରେ କେଉଁଠି ହେଲେ ତ୍ରୟୋଦଶ ଶତାବ୍ଦୀର ରଚନା ବୋଲି ନିର୍ଦ୍ଦିଷ୍ଟ କରି କୁହାଯାଇ ନାହିଁ ।

ଶ୍ରୀ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ (୧୯୬୯) (୯) ସ୍ୱର୍ଗତ ଆର୍ତ୍ତବଲ୍ଲଭ, ପଣ୍ଡିତ ସୂର୍ଯ୍ୟ-ନାରାୟଣ ଓ ଅଧ୍ୟାପକ ଜାନକୀ ବଲ୍ଲଭଙ୍କ ମତର ଆଲୋଚନା କରି ଏ ସବୁ ମତ 'ସତ୍ୟର ନିକଟବର୍ତ୍ତୀ ହେଲେ ମଧ୍ୟ ପ୍ରକୃତ ତଥ୍ୟ ଯୋଗାଇବାରେ ଅସମର୍ଥ ହୋଇଥିବା' କୁହନ୍ତି । ତାଙ୍କ ମତରେ 'ସାରଳା ରୁଦ୍ରସୁଧାନିଧିର ଉକ୍ତି ପଦ୍ୟାତ୍ମକ ପଦ୍ୟଶୈଳୀକୁ ଦାଣ୍ଡି ବୃତ୍ତିରେ ପକାଇଥିଲେ' । ତେଣୁ ଏହି ଗ୍ରନ୍ଥର ରଚନା କାଳ ୧୩୫୦ରୁ ୧୪୦୦ ମଧ୍ୟରେ ଅର୍ଥାତ ଚତୁର୍ଦ୍ଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବୋଲି ନିର୍ବିବାଦରେ କୁହାଯାଇ ପାରେ । ରୁଦ୍ର ସୁଧାନିଧିରୁ 'ପରାକୃତ ଭାଷା ହଂସୁଥାଇ' ଉକ୍ତିକୁ ସେ ତାଙ୍କ ମତର ପରିପୋଷକ ରୂପେ ଗ୍ରହଣ କରିଛନ୍ତି ।

ଡକ୍ଟର ବଂଶୀଧର ମହାନ୍ତି (୧୯୭୦) (୧୦) ରୁଦ୍ର ସୁଧାନିଧିକୁ ପଞ୍ଚଦଶ ଶତାବ୍ଦୀର ରଚନା ରୂପେ ଗ୍ରହଣ କରିଛନ୍ତି । ତାଙ୍କର ପ୍ରମାଣ ହେଉଛି, ଶିଶୁବେଦ ଓ ମୁଗଲ ଶବ୍ଦ । ଶିଶୁବେଦକୁ ଚତୁର୍ଦ୍ଦଶ ଶତାବ୍ଦୀର ରଚନା ରୂପେ ଗ୍ରହଣ କରି ସେ ରୁଦ୍ରସୁଧାନିଧିକୁ ଏହା ପରେ ଅର୍ଥାତ ପଞ୍ଚଦଶ ଶତାବ୍ଦୀ ବେଳକୁ ଏହା ରଚିତ ହୋଇଥିବା ଅନୁମାନ କରିଛନ୍ତି ।

ଶ୍ରୀ ବ୍ରଜମୋହନ ମହାନ୍ତି (୧୯୭୧) (୧୧), ଦାଣ୍ଡିବୃତ୍ତିର ବିକାଶ, କେତେକ ପ୍ରାଚୀନ ଶବ୍ଦ, ପୁଣି ଓଡ଼ିଶାରେ ମନ୍ତ୍ର, ତନ୍ତ୍ର, ଉଲ୍ଲୁକ, କୁହୁକ ବିଦ୍ୟାର ପ୍ରସାର ପ୍ରଭୃତିକୁ କାରଣ ରୂପେ ଗ୍ରହଣ କରି ଏହାକୁ ସାରଳା ଦାସଙ୍କ ପୂର୍ବ ରଚନା ରୂପେ ସ୍ଥିର କରିଛନ୍ତି ।

ଉପରେ ଗତ ପ୍ରାୟ ଷାଠିଏ ବର୍ଷ ଧରି ରୁଦ୍ରସୁଧାନିଧିର ରଚନାକାଳ ସମ୍ବନ୍ଧରେ ଯେଉଁ କଳ୍ପନା, ଜଳ୍ପନା, ଯେଉଁ ଅନୁମାନ, ବା ଯେଉଁ ଆଲୋଚନା ହୋଇଛି, ସେ ସବୁର ଏହି ସଂକ୍ଷିପ୍ତ ବିବରଣୀ ପ୍ରଦତ୍ତ ହେଲା । ଏ ସବୁ ପାଠକଲେ କବି ଦୀନକୃଷ୍ଣଙ୍କ 'ବୋହିତେ ଗଲା କରଟ' ଉପମାନଟି ମନକୁ ଆସେ । ବୋଇତରେ ଥିବା କାକ ନୂତନ ଆଶ୍ରୟସ୍ଥଳୀର ଅନ୍ୱେଷଣ କରିବା ଆଶାରେ ସମୁଦ୍ର ଗର୍ଭରେ ଏଣେତେଣେ ବୁଲି ଶେଷରେ ନିରାଶ ହୋଇ ବୋଇତକୁ ଫେରିଆସିବା ପରି ସମାଲୋଚକମାନେ ନୂତନ ମାର୍ଗ, ନୂତନ ପ୍ରମାଣ, ନୂତନ

---

୮—ଓଡ଼ିଆ ସାହିତ୍ୟର ଇତିହାସ, ପୃ.୭୮ ।
୯—ଓଡ଼ିଆ ସାହିତ୍ୟ ଇତିହାସ, ପୃ. ୧୯୯-୨୦୦
୧୦—ଓଡ଼ିଆ ସାହିତ୍ୟର ଇତିହାସ, ପୃ. ୨୦୦
୧୧—କ୍ଷୁଦ୍ର ଗଳ୍ପର ସୃଷ୍ଟି ଓ ସମୀକ୍ଷା, ପୃ. ୮୦

ବିଶ୍ଳେଷଣ ଦେବା ଲୋଭରେ ପୂର୍ବବର୍ତ୍ତୀ ଆଲୋଚନାକୁ ନିଷ୍ଠୁର ଭାବେ ପ୍ରତ୍ୟାଖ୍ୟାନ କରି, ପୁଣି ସେହିପରି ଆଉ ଗୋଟିଏ ନିରାଧାର କଳ୍ପନା ଉପସ୍ଥାପିତ କରିଛନ୍ତି । ଫଳରେ ରୁଦ୍ର-ସୁଧାନିଧିର ରଚନା କାଳର ଆଲୋଚନାରେ କୌଣସି ମହତ୍ତ୍ୱପୂର୍ଣ୍ଣ ପରିବର୍ତ୍ତନ ହୋଇ ନାହିଁ ।

ଏ ସବୁ ଆଲୋଚକଙ୍କ ମଧ୍ୟରୁ ଡକ୍ଟର କରୁଣାକର କର ଓ ଡକ୍ଟର ବଂଶୀଧର ମହାନ୍ତିଙ୍କ ଆଲୋଚନା କେବଳ ଗୋଟିଏ ଗୋଟିଏ ବ୍ୟତିକ୍ରମ । ଡକ୍ଟର କର, ଭାଷା-ପ୍ରୟୋଗର ଯେଉଁ ସବୁ ଉଦାହରଣ ଦେଇଛନ୍ତି, ସେ ସବୁ ବଳରେ ରୁଦ୍ରସୁଧାନିଧିକୁ ପଞ୍ଚଦଶ ବା ଷୋଡ଼ଶ ଶତାବ୍ଦୀର ରଚନା ରୂପେ ଗ୍ରହଣ କରିବା ସହଜ ହେଲେ ହେଁ, ସାରଳା ଓ ବଳରାମଙ୍କ ମଧ୍ୟବର୍ତ୍ତୀ ପୁଣି ଚୈତନ୍ୟଙ୍କ ପୂର୍ବ କହିବାରେ ସେ କେଉଁ ପ୍ରମାଣର ସାହାଯ୍ୟ ନେଇଛନ୍ତି, ତାହା ବୁଝିହୁଏ ନାହିଁ । ତାଙ୍କର ପ୍ରଦତ୍ତ ପ୍ରମାଣ ଦ୍ୱାରା ରୁଦ୍ରସୁଧା-ନିଧିକୁ ପଞ୍ଚଦଶ ଶତାବ୍ଦୀର କିଞ୍ଚିତ ପୂର୍ବ ପୁଣି ଷୋଡ଼ଶ ଶତାବ୍ଦୀର କିଞ୍ଚିତ ପରବର୍ତ୍ତୀ କହିବାରେ ହୁଏ ତ କୌଣସି ବାଧା ନାହିଁ । ଡକ୍ଟର ବଂଶୀଧର ମହାନ୍ତି, ଶିଶୁବେଦକୁ ପ୍ରମାଣ ରୂପେ ଗ୍ରହଣ କରି ଏହାକୁ ଚତୁର୍ଦ୍ଦଶ ଶତାବ୍ଦୀର ପରବର୍ତ୍ତୀ ଅର୍ଥାତ ପଞ୍ଚଦଶ ଶତାବ୍ଦୀର ରଚନା ରୂପେ ଗ୍ରହଣ କଲାବେଳେ ଷୋଡ଼ଶ ବା ସପ୍ତଦଶ ଶତାବ୍ଦୀର ସମ୍ଭାବନା ସମ୍ବନ୍ଧରେ କିଛି କହିନାହାନ୍ତି । ନିମ୍ନରେ ରୁଦ୍ରସୁଧାନିଧି ମଧ୍ୟରୁ କେତୋଟି ପ୍ରମାଣର ଉଲ୍ଲେଖ କରାଯାଉଛି ।

ରୁଦ୍ରସୁଧାନିଧିର ନାୟକ ଅଭିନବ ଚୈତନ୍ୟ ଯେଉଁସବୁ ଉପବ୍ୟାକରଣ ପାଠ କରିଥିଲେ, ସେଥି ମଧ୍ୟରେ କୌମୁଦୀ ଓ ଆଖ୍ୟାତ ଚନ୍ଦ୍ରିକାର ନାମ ମିଳେ । (୧୨) ଆଖ୍ୟାତ ଚନ୍ଦ୍ରିକାର ରଚନା କାଳ ଚତୁର୍ଦ୍ଦଶ ଶତାବ୍ଦୀ । (୧୩) ତେଣୁ ରୁଦ୍ରସୁଧାନିଧି ଏହାର ପରବର୍ତ୍ତୀ ।

କୌମୁଦୀ କହିଲେ ରାମଚନ୍ଦ୍ରାଚାର୍ଯ୍ୟଙ୍କ କୃତ ପ୍ରକ୍ରିୟା କୌମୁଦୀ ବା ଭଟ୍ଟୋଜୀ ଦୀକ୍ଷିତଙ୍କ 'ସିଦ୍ଧାନ୍ତ କୌମୁଦୀ' । ବ୍ୟାକରଣ ଭାବରେ ଉଭୟ ଗ୍ରନ୍ଥର ପ୍ରସିଦ୍ଧି ଅଛି ଓ ଓଡ଼ିଶାରେ ଉଭୟ ଗ୍ରନ୍ଥର ଆଦର ବି ରହିଛି । ପ୍ରକ୍ରିୟା କୌମୁଦୀର ରଚନା କାଳ ସମ୍ବନ୍ଧରେ ଦୁଇଟି ମତ ବିଦ୍ୟମାନ । ଯୁଧିଷ୍ଠିର ମୀମାଂସକଙ୍କ ମତରେ ଏହା ପ୍ରାୟ ସମ୍ବତ ୧୪୮୦ରେ ରଚିତ । (୧୪) ବରଦାଚାର୍ଯ୍ୟଙ୍କ ମତରେ ଏହାର ରଚନା କାଳ ପ୍ରାୟ ଖ୍ରୀ: ୧୪୫୦ । (୧୫) ଭଟ୍ଟୋଜୀ ଦୀକ୍ଷିତଙ୍କ ସମୟ ସମ୍ବନ୍ଧରେ ମଧ୍ୟ ଭିନ୍ନ ମତ ଅଛି । ଡକ୍ଟର ବେଲଭଲକରଙ୍କ ମତରେ ସେ ସନ ୧୬୦୦ରୁ ୧୬୫୦ ଅର୍ଥାତ ବି. ସ. ୧୬୫୭-

---

୧୨—ରୁଦ୍ରସୁଧାନିଧି-ପୃ. ୧୦୧. ଉତ୍କଳ ବିଶ୍ୱବିଦ୍ୟାଳୟର ପାଣ୍ଡୁଲିପିରେ 'ଅପ୍‌ପାସ୍ୱିକ ଚନ୍ଦ୍ରିକା' ପାଠ ଅଛି ।

୧୩—ସଂସ୍କୃତ ବ୍ୟାକରଣ ସାହିତ୍ୟକା ଇତିହାସ. ପ୍ରଥମ ଭାଗ ପୃ. ୪୪୦

୧୪—ସେହି ପୃ. ୪୪୧

୧୫—A History of the Sanskrut Literature P. 186.

୧୭୦୭ ମଧ୍ୟରେ ଜୀବିତ ଥିଲେ । କେହି କେହି ତାଙ୍କୁ ସ ୧୬୩୭ର ଲୋକ ଭାବେ ଗ୍ରହଣ କରନ୍ତି । ଯୁଧିଷ୍ଠିର ମୀମାଂସକଙ୍କ ମତରେ ତାଙ୍କ ସମୟ ହେଉଛି ସ ୧୫୧୦-୧୭୦୦ (୧୭)

ଯୁଧିଷ୍ଠିର ମୀମାଂସକଙ୍କ ମତକୁ ଗ୍ରହଣ କଲେ ଏ ଦୁଇ ଗ୍ରନ୍ଥର ରଚନା କାଳରେ ବିଶେଷ ବ୍ୟବଧାନ ନାହିଁ । ତେଣୁ ରୁଦ୍ରସୁଧାନିଧିରେ ଥିବା 'କୌମୁଦୀ'କୁ ନିଃସନ୍ଦେହରେ ସ ୧୪୮୦ରେ ରଚିତ 'ପ୍ରକ୍ରିୟା କୌମୁଦୀ' ବୁଝାଯାଇପାରେ । ତାହାହେଲେ ରୁଦ୍ର-ସୁଧାନିଧି ସ ୧୪୮୦ ବା ସନ ୧୪୨୩ର ପରବର୍ତ୍ତୀ କାଳରେ ରଚିତ ହୋଇଥିବା ଅନୁମେୟ । କୌଣସି ଗ୍ରନ୍ଥର ପ୍ରସିଦ୍ଧି ପାଇଁ ସମାଲୋଚକମାନେ ଅନ୍ୟୂନ ପଞ୍ଚାଶ ବର୍ଷ ସ୍ଥିର କରିଥାନ୍ତି । ଏ ଦୃଷ୍ଟିରୁ ରୁଦ୍ରସୁଧାନିଧି ସନ ୧୪୭୩ ବେଳକୁ ରଚିତ ହୋଇଥିବ । ଏହା ହେଉଛି, ରୁଦ୍ରସୁଧାନିଧି ରଚନା କାଳର ପ୍ରାଚୀନତମ ସମ୍ଭାବ୍ୟ ସୀମାରେଖା । ସପ୍ତଦଶ ବା ଅଷ୍ଟାଦଶ ଶତାବ୍ଦୀରେ ରଚିତ କୌଣସି ଗ୍ରନ୍ଥରେ 'କୌମୁଦୀ' ଗ୍ରନ୍ଥର ଉଲ୍ଲେଖ ହୋଇ-ପାରେ । କୌମୁଦୀ କହିବା ବେଳେ ସେ ସିଦ୍ଧାନ୍ତ କୌମୁଦୀକୁ କହି ପାରିଥାନ୍ତି । ପୁଣି ସିଦ୍ଧାନ୍ତ କୌମୁଦୀ ସପ୍ତଦଶ ଶତାବ୍ଦୀର ରଚନା ବି ହୋଇପାରେ । ଏ ସବୁର ଉତ୍ତର ପାଇଁ ପ୍ରାଚୀନ ଓଡ଼ିଆ ଭାଷାର ଶୈଳୀଗତ ବୈଶିଷ୍ଟ୍ୟ ବ୍ୟତୀତ ଅନ୍ୟ ପ୍ରମାଣ ଏ ପର୍ଯ୍ୟନ୍ତ ମିଳି-ନାହିଁ । ପ୍ରତ୍ୟକ୍ଷ ପ୍ରମାଣ ମିଳିବା ପର୍ଯ୍ୟନ୍ତ ଭାଷାକୁ ପରୋକ୍ଷ ପ୍ରମାଣ ରୂପେ ଗ୍ରହଣ କରି ପରବର୍ତ୍ତୀ ସୀମାରେଖା ସ୍ଥିର କରାଯାଇପାରେ ।

ତତ୍‌ପରେ କରୁଣାକର କରଙ୍କ ନିର୍ଦ୍ଦେଶିତ ପ୍ରାଚୀନ ପ୍ରୟୋଗ ସବୁ ସାରଳାଦାସଙ୍କ ମହାଭାରତ ଓ ଜଗମୋହନ ରାମାୟଣ ବ୍ୟତୀତ ୧୫୧୭ ଖ୍ରୀଷ୍ଟାବ୍ଦରେ ରଚିତ ଅଚ୍ୟୁତଙ୍କ ଗୁରୁଭକ୍ତି, ୧୫୨୫ରୁ ୧୫୩୦ ମଧ୍ୟରେ ରଚିତ ନରସିଂହ ସେଣଙ୍କ ପରିମଳା କାବ୍ୟରେ ଦେଖିବାକୁ ମିଳେ । ଉଦାହରଣ ପାଇଁ ପରିମଳା କାବ୍ୟରୁ କେତୋଟି ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

୧ । ଦ୍ୱିତୀୟା ବହୁବଚନରେ 'ନ୍ତ' ପ୍ରତ୍ୟୟ

(କ) ଦ୍ରବ୍ୟନ୍ତ ଦେଖିଣ ସେ ଯେ ତହିଂର କାମେନୀ । ପୃ. ୨୩୦

(ଖ) ତାହାନ୍ତ ମୁଚ୍ଛାଇଂ କରି କହିବ ଗୋ କଥା । ପୃ. ୨୩୮

୨ । ପଞ୍ଚମୀ ବିଭକ୍ତିରେ 'ତହୁଂ' ପଦ

(କ) କୁମରର ତହୁଂ ବାଳୀ ଛଡ଼ାଇଣ ନେଲା । ପୃ. ୭୪

(ଖ) ବେନି ତହୁଂ ବହେ ସେ ଲୋତକର ଜଳ । ପୃ. ୨୯

୩ । ପଞ୍ଚମୀ ବିଭକ୍ତିରେ 'ହୁଂ' ପ୍ରତ୍ୟୟ ।

(କ) ପୁତ୍ରହୁଂ ଅଧିକ ତୁ ମୋ ନନ୍ଦନୀ ବିଯୋଗେ ଦୂରେ ଦେଲି । ପୃ. ୫୫

(ଖ) ପବନହୁଂ ବେଗେ ତେଜୀ, ବାଛି ଦଶସହ୍ର ବାଜୀ । ପୃ. ୪୮

୪ । ସପ୍ତମୀ ବିଭକ୍ତିରେ 'ହିଂ' ଓ 'ତହିଂ' ପ୍ରତ୍ୟୟ ।

(କ) ଦେହି ଥିଲେ ତାହା ତହିଂ ମନ ଥିବ ମୋର ତହିଂ.
କୁଟୁଣୀ ବାଟ ଚଢ଼ାଇ ଯେହ୍ନେ ଚଳଇ ଯେ । ପୃ. ୧୧୧
'ହିଂ' ପ୍ରତ୍ୟୟର ବ୍ୟବହାର ନାହିଁ ।

---

୧୭—ସଂସ୍କୃତ ବ୍ୟାକରଣ ସାହିତ୍ୟକା ଇତିହାସ, ପ୍ରଥମ ଭାଗ ପୃ. ୪୪୭

ଏ ସବୁ ଉଦାହରଣ ରୁ ଦ୍ରସୁଧାନିଧିକୁ ଷୃଶଖାନ ବା ପରିମଳାର ସମସାମୟିକ ରଚନା ରୂପେ ପ୍ରମାଣିତ କରିବା ପାଇଁ ସାହାଯ୍ୟ କରୁଥିଲେ ହେଁ କୌଣସି ପ୍ରତ୍ୟୟର ବହୁଳତା ଓ ବିରଳତା ଗ୍ରନ୍ଥର ରଚନାକାଳ ନିର୍ଦ୍ଧାରଣ ପାଇଁ ନିର୍ଦ୍ଦିଷ୍ଟ ପ୍ରମାଣ ନୁହେଁ । ପରିମଳାର ପୂର୍ବରୁ ରଚିତ ରାମ ବିଭା କାବ୍ୟରେ 'ଋଷିମାନନ୍ତି' (୭-୨୮) ଦିଗପାଳନ୍ତି (୭-୨୯), ଚନ୍ଦନନ୍ତି (୭-୪୩), ତା ତହୁଁ (୧୨-୩୨), ଯାର ତହୁଁ (୧୧-୪୭) ଓ 'ଧନୁ-ଶାଳ ହୁଁ' ପ୍ରଭୃତିର ପ୍ରୟୋଗ ଦେଖିବାକୁ ମିଳୁଥିଲେ ହେଁ, 'ହିଁ' ଓ 'ତହିଁ' ନାହିଁ । ନରସିଂହ ସେଣଙ୍କ ଅନ୍ୟତମ ରଚନା ଗୋପ କାବ୍ୟରେ ମଧ୍ୟ 'ହିଁ' 'ହୁଁ' ଓ 'ତହୁଁ'ର ପ୍ରୟୋଗ ନାହିଁ । ତେବେ ଏ ସବୁ ପ୍ରୟୋଗକୁ ସହାୟକ ପ୍ରମାଣ ରୂପେ ଗ୍ରହଣ କରି ରୁଦ୍ର-ସୁଧାନିଧି ଖ୍ରୀ. ୧୪୭୩ରୁ ଖ୍ରୀ. ୧୫୫୦ ମଧ୍ୟରେ ରଚିତ ହୋଇଥିବା ଆପାତତଃ ଅନୁମାନ କରାଯାଇପାରେ ।

---

# କ୍ଷୁଦ୍ରଗଳ୍ପର କଳା ଓ କୌଶଳ

**ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀ**

କାହାଣୀ କହିବା ଓ ଶୁଣିବା ଏକ ବହୁ ପୁରାତନ ଶୈଶବ ପ୍ରବୃତ୍ତି । ପୁଣି ବୁଢ଼ୀମା ବା ବୟସ୍କ କଥକ ଠାରୁ ଚପଳ କିଶୋର ଓ ଶିଶୁ ପର୍ଯ୍ୟନ୍ତ ଏହି କାହାଣୀଗୁଡ଼ିକର ସିଧା ସଳଖ ଆବେଦନ ଏହାକୁ ଏକ ସାର୍ବଜନୀନ ଗଣତାନ୍ତ୍ରିକ କଳାରେ ପରିଣତ କରିଅଛି । ବୟସ ନିର୍ବିଶେଷରେ ଶ୍ରୋତା, ଶ୍ରୋତ୍ରୀ ଓ କଥକ—ସମସ୍ତେ ଏଥିରୁ ସମାନ ଭାବରେ ରସ (ଉତ୍ତେଜନା, ଉଦ୍ଦୀପନା ଓ ବିସ୍ମୟ) ଆହରଣ କରିବାରେ ସମର୍ଥ କିନ୍ତୁ ଆଧୁନିକ ଅର୍ଥରେ କ୍ଷୁଦ୍ରଗଳ୍ପ ଏହିପରି ପ୍ରାଚୀନ କାହାଣୀମାନଙ୍କର ସଂସ୍କାର ବା ଅପଭ୍ରଂଶ କହିଲେ ଠିକ୍ ହେବ ନାହିଁ । ଅବଶ୍ୟ ଯୁଗରୁଚି, ବୈଜ୍ଞାନିକ ପ୍ରଗତି, ସଭ୍ୟତାର ଅଗ୍ରଗତି ଆଦି ଯେଉଁ କେତୋଟି ମାନବୀୟ ଘଟଣାବଳି ଚଳିତ ଶତାବ୍ଦୀର ମନୀଷର ଆଧୁନିକ ମନ ଉପରେ ସଂଘାତ ଓ ସଂକ୍ରମଣ ଆଣି ପାରିଛି, ସେହି ସବୁ ପରିସ୍ଥିତି ହିଁ ଆଧୁନିକ ଗଳ୍ପ ସାହିତ୍ୟର ଜନ୍ମ ପାଇଁ ଅଧିକ ଦାୟୀ ବିବେଚିତ ହୋଇ ପାରିବେ । ତଥାପି ସମଗ୍ର ବିଶ୍ୱ ସାହିତ୍ୟରେ ଊନବିଂଶ ଶତାବ୍ଦୀର ଆଦ୍ୟ ଉନ୍ମେଷ ପର୍ଯ୍ୟନ୍ତ ଆଧୁନିକ ଅର୍ଥରେ କ୍ଷୁଦ୍ରଗଳ୍ପ ଯେ ସୃଷ୍ଟି ହୋଇପାରି ନଥିଲା—ଏହା ସ୍ୱୀକାର କରିବାକୁ ହେବ । ଏହା ଅର୍ଥ ନୁହେ ଯେ, ଅଷ୍ଟାଦଶ ଶତାବ୍ଦୀର ପୃଥିବୀ ଏକ ଉନ୍ନତ ସଭ୍ୟତା ପ୍ରତି ଆକାଙ୍‌କ୍ଷା ପ୍ରକାଶ କରି ନଥିଲା ବା ଏଥିପାଇଁ ଉଦ୍ୟମ ନଥିଲା । ଥିଲା—କିନ୍ତୁ ସାହିତ୍ୟ ରାଜ୍ୟରେ ଏହି ସୁକୁମାରତମ ଗାଳ୍ପିକ କୃଷ୍ଟି ପାଇଁ ପ୍ରକୃତରେ ବାତାବରଣ ସୃଷ୍ଟି ହୋଇ ନଥିଲା । ଏହା ଊନବିଂଶ ଶତାବ୍ଦୀ ଇଂରେଜୀ ସାହିତ୍ୟର "ଇମ୍ପ୍ରେସନିଜମ୍' ମଧ୍ୟରୁ ଜନ୍ମ ନେଇଛି । ଏହି ସାହିତ୍ୟରେ କିପ୍‌ଲିଙ୍ଗ କନରାଡ଼୍ ଗଲସ୍ ଓ୍ୱାର୍ଦ୍ଦି, ଓ୍ୱେଲସ୍, ଜର୍ଜମୁର, ଆରନୋଲ୍‌ଡ଼୍, ବେନେଟ୍ ଏବଂ ମମ୍ କ୍ଷୁଦ୍ରଗଳ୍ପର ଏହି ଆଧୁନିକ ଓ ମାର୍ମିକ ଆନ୍ଦୋଳନକୁ କରିଛନ୍ତି ଗତିଶୀଳ । ଏପରିକି ଚଳିତ ଶତାବ୍ଦୀର ବିଂଶତି ଓ ତ୍ରିଂଶତି ଦଶକରେ A. E. Coppard, Katherine Mansfield ପ୍ରଭୃତି ଲେଖକ ଲେଖିକାମାନେ ଇଂରେଜୀ କ୍ଷୁଦ୍ରଗଳ୍ପର ରୂପ ଓ ନିର୍ଯ୍ୟାସକୁ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଦେଇ ପାରିଛନ୍ତି । ଏବଂ ବର୍ତ୍ତମାନ ଇଂରେଜୀ ସାହିତ୍ୟରେ ସଂଖ୍ୟାଧିକ ନମ୍ବୁସ୍ୱ ଲେଖକମାନେ ଏ ଦିଗରେ ଲେଖନୀ ଚାଳନା କରି ଚାଲିଛନ୍ତି । ଶିକ୍ଷାର କ୍ରମିକ ପ୍ରସାର, ରୁଚିର ପରିବର୍ତ୍ତନ, ଚିନ୍ତା ଓ ବିଚାରରେ ଆନ୍ଦୋଳନ ତଥା ବହୁ ସଂଖ୍ୟାରେ ପତ୍ରପତ୍ରିକାର ପ୍ରକାଶନ ଏହି ସାହିତ୍ୟ-ବିଭାଗକୁ ପ୍ରଚୁର ଖୋରାକ୍ ଯୋଗାଇ ପାରିଛି ।

କ୍ଷୁଦ୍ରଗଳ୍ପ ସମ୍ପର୍କରେ ବହୁ ସଂଜ୍ଞା ନିର୍ଦ୍ଧାରିତ ହୋଇଥିଲେ ମଧ୍ୟ ମନେହୁଏ ତଥାପି ଯେପରି କିଛି ଅଛୁଆଁ ରହି ଯାଇଛି । ଭାରତୀୟ ଲେଖକ ରବୀନ୍ଦ୍ରନାଥଙ୍କ ଠାରୁ (୧) ଆମେରିକାର ଲେଖକ Edgar Allen Poe (୨)ଙ୍କ ପର୍ଯ୍ୟନ୍ତ ବହୁ ଲେଖକ ଓ ସମାଲୋଚକ ଗଳ୍ପର ବିଷୟବସ୍ତୁ ଆଭିମୁଖ୍ୟ ଓ ପରିସର ସମ୍ପର୍କରେ ବହୁ ମନ୍ତବ୍ୟ ଦେଇଛନ୍ତି । ଏପରିକି କ୍ଷୁଦ୍ରଗଳ୍ପ ଯେ ଉପନ୍ୟାସ ଓ କାହାଣୀ ଠାରୁ ତଫାତ୍, ଏ ସମ୍ପର୍କରେ ଆଜି ପାଠକର ଏକ ନିଶ୍ଚିତ ଧାରଣା ଆସିପାରିଛି । ସେଥିପାଇଁ ଫକୀର ମୋହନଙ୍କ ପରି ଏକ ପ୍ରତିଭାଦୀପ୍ତ ଶିଳ୍ପୀଙ୍କ କ୍ଷୁଦ୍ରଗଳ୍ପ ସମୂହକୁ ଉପନ୍ୟାସର ଦେହଳୀ ଓ କାହାଣୀର ଶେଷସ୍ୱପ୍ନ କହିବାକୁ ମଧ୍ୟ ସମାଲୋଚକର କୁଣ୍ଠା ନାହିଁ । କାରଣ ଆଧୁନିକ କ୍ଷୁଦ୍ର-ଗଳ୍ପର ଚେହେରା ପାଖରେ ଫକୀର ମୋହନଙ୍କ ପରି କ୍ଲାସିକ୍ ଶିଳ୍ପୀ ବି କ୍ରମେ ମଳିନ ହୋଇ ପଡ଼ୁଛନ୍ତି । 'ରେବତୀ'ଠାରୁ 'ମଙ୍ଗଳର ମୃତ୍ୟୁ' ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ କେତେ କାହାଣୀ, କେତେ ରୂପକ ଗଳ୍ପ, କେତେ କ୍ଷୁଦ୍ରଗଳ୍ପ ଲେଖା ଯାଇଛି ତାର ହିସାବ ନିକାଶ ମଧ୍ୟ କରାଯାଇ ପାରେ । (୩) ଏହିପରି ଏକ ବିବଦମାନ ବିଚିତ୍ର ସାହିତ୍ୟିକ ବିଭାଗ ବିଷୟରେ ସ୍ପଷ୍ଟ ଭାବରେ କିଛି କହିବା ସମ୍ଭବ ନୁହେଁ । ଏହା ପରୀକ୍ଷା ଓ ପ୍ରୟୋଗରେ ଏତେ ଦ୍ରୁତ ପରିବର୍ତ୍ତନଶୀଳ ଯେ, ଆମେ ଗୁରୁଜନମାନଙ୍କୁ ବାରମ୍ବାର କହୁଥିବା ଓ ଆମେ ପଢ଼ିଥିବା ସମସ୍ତ ସଂଜ୍ଞା ଆଧୁନିକ କ୍ଷୁଦ୍ରଗଳ୍ପର କଳାଗତ କୃଷ୍ଟି ପାଖରେ ଆଜି ଯେପରି ଚୁର୍‌ମାର୍ ହୋଇଯିବାକୁ ବସିଲାଣି । ଏକଦା Brander Matthews ଙ୍କ ସଂଜ୍ଞାକୁ ଆମେ ବେଦବାକ୍ୟ ବୋଲି ମାନି ନେଇ ମୁଖସ୍ଥ କରି ଦେଇଥିଲୁଁ—"A true short story differs from a novel chiefly in its essential unity of impression. A short story deals with a single character, a single event, a single emotion or a series of emotions called forth by a single situation." ପୁନଶ୍ଚ Maugham କ୍ଷୁଦ୍ରଗଳ୍ପ ସମ୍ପର୍କରେ 'dramatic unity' ବିଷୟ ଉତ୍ଥାପନ କରିଥିଲେ । ତାଙ୍କ ମତରେ—"The short story must have a definite design which includes a point of departure, a climax and a point of test ; in other words It must have a plot........ It exhibits life to us as it was under a microscope and enables us to view it most clearly than we can do in the raw." ସେତିକବେଳେ ଇଂରାଜୀ ସାହିତ୍ୟର ଜଣେ ବିଶିଷ୍ଟ କଥାକାର H. G. Wells କ୍ଷୁଦ୍ରଗଳ୍ପକୁ 'Jolly art' ବୋଲି ନାମାଙ୍କିତ କରି ଯେଉଁ ମନ୍ତବ୍ୟ ଦେଇଛନ୍ତି ସେଥିରେ ସେ କ୍ଷୁଦ୍ର ଗଳ୍ପର ପରିସରକୁ ପନ୍ଦରରୁ ପଚାଶ ମିନିଟ୍ ଦୀର୍ଘ ସମୟର ସୀମା ଭିତରେ ମାପିବାକୁ ଯାଇ ବରଂ ଅର୍ଥହୀନ ହୋଇ ପଡ଼ିଛନ୍ତି । କିନ୍ତୁ Hough

---

(୧) "ଛୋଟ ପ୍ରାନ୍ ଛୋଟ କଥା........ଇତ୍ୟାଦି 'ବର୍ଷାଯାପନ'—ରବୀନ୍ଦ୍ରନାଥ

(୨) "Story is a prose narrative requiring from an hour to two or three hours in its perusal"

(୩) 'ଆଜିର ଗଳ୍ପ'—'ଲେଖା'—୨ୟ ବର୍ଷ ୨ୟ ସଂଖ୍ୟା ପୃ ୩୪ ।

Walpoleଙ୍କ ମନ୍ତବ୍ୟ ଏ ଦିଗରେ ଅଧିକ ମନୋଜ୍ଞ ମନେ ହୁଏ । ତାଙ୍କ ମତରେ "A short story should be a story, a record of things happening, full of incident and accident, swift movement, unexpected development, leading through suspense to a climax and a satisfying denouncement" କିନ୍ତୁ ଏ ସମସ୍ତ ସଜ୍ଞା ଭିତରେ ରୁଷିଆର ଗଳ୍ପ ଲେଖକ Tchekhovଙ୍କ ମତାମତ ଅଧିକ ପ୍ରଗତିପନ୍ଥୀ ବୋଲି ମନେହୁଏ । ଯେତେଦୂର ମନେହୁଏ ଆଧୁନିକ କ୍ଷୁଦ୍ରଗଳ୍ପ ଭିତରେ ଚେଖଭ୍‌ଙ୍କ ଏହି ମନ୍ତବ୍ୟ—"କ୍ଷୁଦ୍ରଗଳ୍ପର କୌଣସି ନିର୍ଦ୍ଦିଷ୍ଟ ଆଦି ନାହିଁ ବା ଅନ୍ତ ନାହିଁ ; ଏହା ଜୀବନର ଏକ ଖଣ୍ଡିତ ଭଗ୍ନାଂଶ ମାତ୍ର । ଅତି ସୂଚନାତ୍ମକ ଭାବରେ ଏହା ଶିଳ୍ପୀର ଶୈଳୀ ନିକଟରେ ରସୋତ୍ତୀର୍ଣ୍ଣ"—ଏହି ମନ୍ତବ୍ୟ ଯେପରି ମନେ ହୁଏ ଆଧୁନିକ କ୍ଷୁଦ୍ରଗଳ୍ପର ଏକ ଅତି-ଅନୁଭୂତ ସଫଳ ସଜ୍ଞା ଯାହାକି Edgar Allenpoeଙ୍କ "A short story have a unity of impession and singleness of purpose" ଭିତରେ ମଧ୍ୟ ଖୋଜି ମିଳି ନ ଥିଲା । ପ୍ରକୃତରେ ଚେଖଭ୍ ହିଁ ଆଧୁନିକ କ୍ଷୁଦ୍ରଗଳ୍ପର ଜଣେ ବଳିଷ୍ଠ ନିର୍ମାତା (ବିଦ୍ଧାଣୀ) ଯାହାଙ୍କ ଲେଖନୀରେ ବହୁ ବାସ୍ତବବାଦୀ କ୍ଷୁଦ୍ରଗଳ୍ପ ଅତି ସାର୍ଥକତାର ସହିତ ଆତ୍ମପ୍ରକାଶ କରି ପାରିଛି । ଏ ସବୁ କ୍ଷୁଦ୍ରଗଳ୍ପରେ ବିଷୟବସ୍ତୁ ସ୍ୱାଭାବିକଭାବରେ ଗତିଶୀଳ ଓ ସେଥିପାଇଁ କୌଣସି ବାହ୍ୟ ପରିସ୍ଥିତି ବା ଆକସ୍ମିକତାର ପ୍ରଭାବ ସେ ସ୍ୱୀକାର କରିବାକୁ ସମ୍ପୂର୍ଣ୍ଣ ଅନିଚ୍ଛୁକ । ବସ୍ତୁତ Russian ସାହିତ୍ୟର ସମସ୍ତ କ୍ଷୁଦ୍ରଗଳ୍ପ ଏହି ବାବଦରେ ଆମେରିକୀୟ ଗଳ୍ପସାହିତ୍ୟଠାରୁ ଭିନ୍ନଭାବରେ ବାରି ହୋଇପଡ଼େ । Poeଙ୍କ ସଜ୍ଞା ପରେ ଆମେରିକାର ସମସ୍ତ କ୍ଷୁଦ୍ରଗଳ୍ପ ତଥାପି ଏକ ପାରଂପରିକ ଙ୍ଗରେ ବିଶ୍ୱାସୀ ଅର୍ଥାତ୍ ନାଟକୀୟ ଆରମ୍ଭ, କ୍ଷିପ୍ରଗତିଶୀଳତା ଓ ଆକସ୍ମିକ ଅବସାନ(Surprise-ending) । କିନ୍ତୁ ଚେଖଭ୍‌ଙ୍କ "Slice of life" ବା ଜୀବନର ରେଣୁରେଣୁ ଅନୁଭୂତି ଓ ଭଗ୍ନାଂଶର ଚିତ୍ର ଏଥିରେ କାହିଁ ? ଚେଖଭ୍ ସେଥିପାଇଁ କ୍ଷୁଦ୍ର ଗଳ୍ପର ପରିସମାପ୍ତିରେ ବିଶ୍ୱାସୀ ନୁହନ୍ତି । ତାଙ୍କର ଗଳ୍ପ ପାଠକର ସ୍ମୃତିରେ ଆଲମ୍ବହୀନ ଦୋଳାୟମାନ । ପାଠକ ହିଁ ସେ ସବୁ ଗଳ୍ପ ବିଷୟରେ ସମାଧାନ କରିବେ । ତାଙ୍କ ଗଳ୍ପ ତେଣୁ ଅସମାହିତ ଓ ନିରାଲମ୍ବ । "He suggests a situation and by the time we turn to him to know the conclusion he is going to arrive at we find that the narrater disappeared". (୪) (ସେ ଗୋଟିଏ ପରିସ୍ଥିତିର ସୂଚନା ଦେଇ ତାହାର ସମାଧାନ ଆଡ଼କୁ ପାଠକକୁ ଆଗେଇ ନିଅନ୍ତି; କିନ୍ତୁ ପାଠକ ସମାଧାନ ଲୋଡ଼ିଲାବେଳକୁ ସେ ପ୍ରାୟ ଅନ୍ତର୍ହିତ ହୋଇ ଯାଇଥାନ୍ତି ।) ଅବଶ୍ୟ ଚେଖଭ୍ ଗୋଗଲଙ୍କ ପାଖରେ ଗଳ୍ପ ସାହିତ୍ୟ ସୃଷ୍ଟି ପାଇଁ ଅନେକ ପରିମାଣରେ ଋଣୀ । ଏ ସମ୍ପର୍କରେ ମାକ୍ସିମ୍ ଗର୍କୀଙ୍କ ମନ୍ତବ୍ୟ "We all spring from Gogal's overcoat" ପ୍ରଣିଧାନ ଯୋଗ୍ୟ । ଗୋଗଲ୍ ଜୀବନର ବାସ୍ତବମୁଖୀ ଚିତ୍ର ସ୍ୱାଭାବିକ ଙ୍ଗରେ ଉପସ୍ଥାପନ କରି Russia ସାହିତ୍ୟରେ କ୍ଷୁଦ୍ରଗଳ୍ପର ଶୈଳୀର ଏକ

---

(୪) Advanced Literary Essays—Mundra and Sahni Page 126.

ବଳିଷ୍ଠ ଆଦର୍ଶ ସୃଷ୍ଟି କରିଥିଲେ । କେବଳ ଗର୍କି, ତୁର୍ଗେନେଭ୍ ଓ ଚେଖଭ୍ ନୁହନ୍ତି ବହୁ ବିଦେଶୀ କଥାକାର, କଥାକାର Coppard, Joice and Anderson ମଧ୍ୟ ବହୁଭାବରେ ଗୋଗଲ୍‌ଙ୍କଦ୍ୱାରା ପ୍ରଭାବିତ ହୋଇଥିଲେ ।

କିନ୍ତୁ ସେତିକିବେଳେ ଆମେରିକାର ଲେଖକମାନେ Edgar Allan Poeଙ୍କ ପଥଗ୍ରାହୀ । ଆକସ୍ମିକ ବାତାବରଣ, ସଂଶୟ, ରହସ୍ୟ ସୃଷ୍ଟିରେ 'Poe'ଙ୍କର ଅସାଧାରଣ କୃତିତ୍ୱ ଥିଲା । ସେଥିପାଇଁ ଭୂତ ପ୍ରେତ, ଅତିମାନୁଷିକତା ଓ ଆକସ୍ମିକତା ତାଙ୍କ ଗଳ୍ପରେ ପ୍ରାଧାନ୍ୟ ଲାଭ କରିଥିଲା । ଏପରିକି ତାଙ୍କର ଜଣେ ଶ୍ରେଷ୍ଠ ଶିଷ୍ୟ O' Heneryଙ୍କ ଲେଖାରେ ପାଠକର ମନ ଓ ଅନୁଚିନ୍ତାକୁ କେନ୍ଦ୍ରାଭିମୁଖୀ କରିବା ପାଇଁ ଏହି ଆକସ୍ମିକ ପରିସ୍ଥିତିର ଯଥେଚ୍ଛାଗ୍ରହ ଦେଖିବାକୁ ମିଳିଥାଏ, ଏବଂ ଅନେକ ସମୟରେ ଚରିତ୍ରଗୁଡ଼ିକ ଏହି ପରିସ୍ଥିତିର ସଞ୍ଚାର ପଥରେ ଭ୍ରମଣରତ ହେଉଥିବା ଦେଖାଯାଏ । ଆରମ୍ଭ ଓ ଶେଷକୁ ଅଧିକ ଆକର୍ଷଣୀୟ କରିବା ପାଇଁ O' Henery କ୍ଷୁଦ୍ରଗଳ୍ପର ନାଟକୀୟ ସଂଳାପ ଉପରେ ଅଧିକ ନିର୍ଭରଶୀଳ । କିନ୍ତୁ ଆଣ୍ଡରସନ୍ ଏବଂ ହେମିଙ୍ଗ୍‌ୱେ କେବଳ ବାତାବରଣ ସୃଷ୍ଟିରେ ଅଧିକ ଦକ୍ଷତା ଦେଖାଇ ଆମେରିକୀୟ କ୍ଷୁଦ୍ରଗଳ୍ପକୁ ଅଧିକ ନାଟକୀୟ କରି ପାରିଥିଲେ ।

କିନ୍ତୁ ଫ୍ରାନ୍ସର ବିଶିଷ୍ଟ କଥାକାର ବାଲ୍‌ଜାକ୍, ଫ୍ଲୁବେର୍ଟ, ଜୋଲା ଓ ମୋପାସାଁ ଗଳ୍ପ ରଚନାରେ ବିଷୟବସ୍ତୁ (Plot element) ଦିଗରେ ବହୁ ସ୍ମରଣୀୟ ପରିବର୍ତ୍ତନ ଆଣି ପାରିଥିଲେ । ବିଶେଷତଃ ମୋପାସାଁଙ୍କର ଗଳ୍ପରାଜି ଜୀବନର ବହୁମୁଖୀ ବାସ୍ତବ ପରିସ୍ଥିତିର ଘଟଣା ପ୍ରଧାନ ଗଳ୍ପ । ତାଙ୍କ ଗଳ୍ପରେ ଗୋଟାଏ ହେଲେ ଶବ୍ଦ ନିରର୍ଥକ ନୁହେଁ, ସହଜ ଓ ସ୍ୱାଭାବିକ ତାଙ୍କ ଗଳ୍ପର ଗତି-ପୁଣି ପରିଣତି ଅତି ଆକର୍ଷଣୀୟ । ପାଠକ ମନରେ ତାଙ୍କ ଗଳ୍ପର ସାମଗ୍ରିକତା (total effect) ବେଶ୍ ରେଖାପାତ କରେ । ମନସ୍ତାତ୍ତ୍ୱିକ ପରୀକ୍ଷା ଓ ବିଶ୍ଳେଷଣ ନ ଥିଲେ ମଧ୍ୟ ମନସ୍ତତ୍ତ୍ୱର ସ୍ୱାଭାବିକ ଅଭିନିବେଶ ଓ ପରିଚ୍ଛନ୍ନତା ରହିଛି ; ଜୀବନର ବହୁ ନିବିଡ଼ ଅନୁଭୂତିର ଚିତ୍ର ତାଙ୍କ ଗଳ୍ପଗୁଡ଼ିକରେ ଉଜ୍ଜୀବିତ । ତଥାପି ମୋପାସାଁ ଜଣେ ରକ୍ଷଣଶୀଳ ଘଟଣାଧର୍ମୀ ଗଳ୍ପ ଲେଖକ ଭାବରେ ସମାଲୋଚିତ । ଆଧୁନିକ କ୍ଷୁଦ୍ରଗଳ୍ପର କଳା ଓ କୌଶଳ ଦୃଷ୍ଟିରୁ ମୋପାସାଁ, ଫକୀର ମୋହନ, ପ୍ରେମଚନ୍ଦ ଓ ରବୀନ୍ଦ୍ରନାଥଙ୍କ ପରି ଗାଳ୍ପିକମାନେ ବିଗତ ଶତାବ୍ଦୀର ଶେଷ ସ୍ମୃତି ଭାବରେ ବରଣୀୟ । ଊନବିଂଶ ଶତାବ୍ଦୀର ଇଂରାଜୀ ଲେଖକମାନେ ଅଳ୍ପବହୁତେ ଏହି ରକ୍ଷଣଶୀଳତା ଦ୍ୱାରା ଆକ୍ରାନ୍ତ । Arnold, Bennett, Katherine Mansfield, Galsworthy ଓ Fosterଙ୍କ କ୍ଷୁଦ୍ରଗଳ୍ପ ଗୁଡ଼ିକ ସେଥିପାଇଁ ବୈଚିତ୍ର୍ୟ-ବିରହିତ ।

ବିଂଶ ଶତାବ୍ଦୀର ଉନ୍‌ମେଷ ସହିତ କ୍ଷୁଦ୍ରଗଳ୍ପ ରାଜ୍ୟରେ ଯେଉଁ ଋମୂଳ ପରିବର୍ତ୍ତନ ଘଟିଛି ସେଥିପାଇଁ ମନସ୍ତତ୍ତ୍ୱର ସମୀକ୍ଷାକାରୀ ଫ୍ରୟେଡ଼ଙ୍କୁ ହିଁ ଅଧିକ ପ୍ରଶଂସା ମିଳିଥାଏ । ମନରାଜ୍ୟର ସମସ୍ତ ବିପ୍ଳବ ଓ ଆଲୋଡ଼ନକୁ କ୍ଷୁଦ୍ରଗଳ୍ପର ସୀମିତ ପରିବେଶ ଭିତରେ ପରୀକ୍ଷା କରିବାରେ ଲରେନ୍ସ୍, ଜଏସ୍, ଓ ମମ୍ ଆଦି କଥାକାରମାନେ ବିଶେଷ ଆଗ୍ରହ ପ୍ରକାଶ କରିଥିଲେ । ସେହିପରି ମାର୍କସ୍‌ଙ୍କ ସାମ୍ୟବାଦୀଦର୍ଶନ ମଧ୍ୟ କ୍ଷୁଦ୍ରଗଳ୍ପର ଚରିତ୍ର-ମାନଙ୍କ ଉପରେ ଅଧିକ ଗୁରୁତ୍ୱ ଆରୋପ କରିବାକୁ ଲେଖକମାନଙ୍କୁ ଅନୁପ୍ରେରିତ

କରିଥିଲା । ଫଳରେ ଶ୍ରେଣୀ ସଂଘର୍ଷ, ସାଧାରଣ ମଣିଷର ହତାଶା, ଓ ହାହାକାର, ଯୁଦ୍ଧ ପରବର୍ତ୍ତୀ ଜୀବନର ଦୁରବସ୍ଥା, ବ୍ୟାପକ ଅର୍ଥନୀତିକ ଅସଙ୍ଗତି—ଏ ସବୁ କ୍ରମେ ଗଳ୍ପ ରାଜ୍ୟରେ ବଳିଷ୍ଠ ପ୍ରଭାବ ସୃଷ୍ଟି କରିଅଛି । ଏସବୁ ବ୍ୟାପକ ଜାତୀୟ ଓ ଆନ୍ତର୍ଜାତୀୟ ବିଷୟ-ବସ୍ତୁର ପ୍ରୟୋଗ ଆମ କଥା ସାହିତ୍ୟରେ ଫକୀର ମୋହନ କରି ନାହାନ୍ତି—କରିଛନ୍ତି କାଳିନ୍ଦୀ ଚରଣ, ସଚ୍ଚି ରାଉତରାୟ ଓ ସୁରେନ୍ଦ୍ର ମହାନ୍ତି । ଫକୀର ମୋହନଙ୍କ ଗଳ୍ପଗୁଡ଼ିକ ଘଟଣାରାଜିକୁ କେନ୍ଦ୍ର କରି ଚରିତ୍ରଠାରେ ଆରୋପିତ ହୋଇଥିଲା । କାଳିନ୍ଦୀ ବାବୁ ଓ ସଚ୍ଚି ରାଉତରାୟଙ୍କ ଗଳ୍ପରେ କିନ୍ତୁ ମଣିଷ ଓ ମଣିଷୋତ୍ତରର ମନସ୍ତତ୍ତ୍ୱ ଏକ ମାନବବାଦୀ ଦୃଷ୍ଟିଭଙ୍ଗୀ ନେଇ ପ୍ରକଟିତ । ସୁରେନ୍ଦ୍ର ବାବୁ ଓ ଗୋପୀ ବାବୁ କିନ୍ତୁ ଅଭିଜାତ ସହର-ଜୀବନ ଓ ଯୁଦ୍ଧ ପରବର୍ତ୍ତୀ ବ୍ୟାକୁଳ ମାନସିକ ପ୍ରତିକ୍ରିୟାର ଚିତ୍ର ନିଜର ବହୁ ଗଳ୍ପରେ ଅତି ଉନ୍ନତଶୈଳୀ ମାଧ୍ୟମରେ ପରିବେଷଣ କରି ଓଡ଼ିଆ ଗଳ୍ପ ରାଜ୍ୟରେ ନୂତନ ସ୍ୱାକ୍ଷର ଦେଇ ପାରିଛନ୍ତି ।

କିନ୍ତୁ ସାମ୍ପ୍ରତିକ ଗଳ୍ପ କ୍ରମଶଃ କଥାବସ୍ତୁହୀନ ହୋଇ ପଡ଼ୁଥିବା ସ୍ପଷ୍ଟ ଲକ୍ଷ୍ୟ କରାଯାଇ ପାରେ । ଚଳିତ ଶତାବ୍ଦୀର ଉତ୍ତର ତିରିଶରେ ଇଂରାଜୀ ଓ ଫରାସୀ କ୍ଷୁଦ୍ରଗଳ୍ପ ରାଜ୍ୟରେ ସ୍ଥିତିବାଦୀ ଦର୍ଶନର ଯେଉଁ ବିରାଟ ପ୍ରତିଘାତ (impact) ସୃଷ୍ଟି ହୋଇଛି—ତାହାହିଁ ଗଳ୍ପ ରାଜ୍ୟରେ ଏକ ଚମକ ପ୍ରଦ ଅଭିଯାନ । କଥାବସ୍ତୁ ହୀନ—ଅଥଚ ବେଶ୍ ବିସ୍ମୟକର, ଭାବଉଦ୍ଦୀପକ, ଚିନ୍ତା ପ୍ରସୂତ—ସମାଜ, ଧର୍ମ, ଜାତି ଓ ଗୋଷ୍ଠୀର ପରି-ପ୍ରେକ୍ଷିରେ ସାଧାରଣ ମଣିଷର ସର୍ବାଧୁନିକ ଜୀବନରେ ସ୍ଥିତିକୁ ଏସବୁ ଗଳ୍ପରେ ପରୀକ୍ଷା କରାଯାଇଛି । କାଫ୍‌କା, ସାର୍ତ୍ରେ ଓ କାମ୍ୟୁ ପ୍ରମୁଖ ଦାର୍ଶନିକମାନେ ଏସବୁ ଗଳ୍ପ ଲେଖାରେ ଯେଉଁ ନୂତନ ନେତୃତ୍ୱ ନେଇଛନ୍ତି ତାହାହିଁ ସମଗ୍ର ପୃଥିବୀର ଦୃଷ୍ଟି ଆକର୍ଷଣ କରି ପାରିଛି । ଓଡ଼ିଆ ସାହିତ୍ୟରେ ଏହିପରି ଗଳ୍ପ ରଚନାର ନେତୃତ୍ୱ ପ୍ରତିଷ୍ଠିତ ଲେଖକମାନେ ନେଇ ନାହାନ୍ତି—ନେଇଛନ୍ତି ଶାନ୍ତନୁକୁମାର, ହରପ୍ରସାଦ, ହରିହର ମିଶ୍ର, କୈଳାସ ଲେଙ୍କା ଓ କୃଷ୍ଣପ୍ରସାଦ ମିଶ୍ର ପ୍ରଭୃତି ତରୁଣ ଶିଳ୍ପୀ କେଇଜଣ । ସେମାନେ ଅଧିକ ଅବୋଧ ହୋଇପଡ଼ୁଥିବା ଅଭିଯୋଗକୁ ଆତ୍ମସାତ୍ କରି ଆଗେଇ ଚାଲିଛନ୍ତି ନିଜ ନିଜର ପରୀକ୍ଷାରେ । ସେମାନଙ୍କ ମତରେ ଅନେକ କଥା କୁହା ହେଲଣି—ଏଣିକି କିଛି ଅକଥା ବା ଅତିକଥା କହିବାକୁ ହେବ । ଏ ଦୃଷ୍ଟିରୁ ହରପ୍ରସାଦଙ୍କ ପରୀକ୍ଷାମୂଳକ ଗଳ୍ପ ଝିଙ୍କୁ ଓ ତୃତୀୟ ଶୂନ୍ୟତା 'ବର୍ଗାକାର ବୃତ୍ତାକାର', 'ଜୀବନ ମିଶ୍ର ଓ ଜହ୍ନ' ବେଶ୍ ପାଠକ ସମ୍ପ୍ରୀତି ଲାଭ କରିଅଛି । 'ବର୍ଗାକାର ଓ ବୃତ୍ତାକାର'ରେ ଜନ୍ମ, ଜୀବନ ଓ ସ୍ଥିତି ସମ୍ପର୍କରେ ଏକ ମନସ୍ତାତ୍ତ୍ୱିକ ସମୀକ୍ଷା ପ୍ରଦତ୍ତ ହୋଇଅଛି । ଜୀବନ ଓ ଯୌନତତ୍ତ୍ୱର ଆଲୋଚନାରେ ଏହି କ୍ରମାଭିଯାତ୍ରୀ ଗଳ୍ପଟିର ମନୋଜ୍ଞ ବିଶ୍ଳେଷଣ ସ୍ଥିତିବାଦୀ ଦର୍ଶନର ପୀଠିକା ଉପରେ ଦଣ୍ଡାୟ-ମାନ । 'ନୀଳ ଲୋହିତ' ଓ 'ବର୍ଣ୍ଣମାଳା'—ଏମାନେ ଏକ ଗତାନୁଗତିକ ସମାଜରୁ ଛିଟିକି ପଡ଼ିଥିବା ଦୁଇଟି ଜୀବ । ନିଜ ଚିନ୍ତା ଓ ରାସ୍ତାରେ ସେମାନେ ସମ୍ରାଟ ପରି ଉଦ୍ଧତ, ନିଜ ନିଜକୁ ପ୍ରତିଷ୍ଠା କରିବା ପାଇଁ ବ୍ୟାକୁଳ । ସେମାନେ ଅତୀତର ସମ୍ବାଦ ନୁହନ୍ତି, ବରଂ ବିସମ୍ବାଦ । ଫଳରେ ଅତୀତକୁ ଅସ୍ୱୀକାର କରି ବର୍ତ୍ତମାନକୁ ଆବିଷ୍କାର କରିବାରେ ସେମାନେ ଚେଷ୍ଟାଶୀଳ । ଅଧ୍ୟାପକ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ କ୍ଷୁଦ୍ରଗଳ୍ପ ଅନେକ ସମୟରେ କାଫ୍‌କାଙ୍କ କ୍ଷୁଦ୍ରଗଳ୍ପ ପର୍ଯ୍ୟାୟ ଧର୍ମୀ । ବିଶେଷତଃ କାଫ୍‌କାଙ୍କ 'ମେଟାମରଫସିସ୍' ଗଳ୍ପ

ସହିତ ଶ୍ରୀ ଆସ୍ତର୍ଫିଙ୍କର 'ଦୂର୍ବାର' ଗଳ୍ପର ଅଦ୍ଭୁତ ମାନସିକ ମେଳ ରହିଛି । ଏହି ତରୁଣ କଥାକାର ଗତାନୁଗତିକ ବିଷୟ ଓ ଶୈଳୀକୁ ପରିହାର କରି ନୂତନ କଥାବସ୍ତୁର ସନ୍ଧାନରେ ଏକ ସ୍ୱକୀୟତାର ପରିଚୟ ଦେଇଛନ୍ତି । ତାଙ୍କ ବିଷୟ-ବିଶ୍ଳେଷଣ ପଦ୍ଧତି ସହିତ ସ୍ଥିତିବାଦୀ କଥାକାରମାନଙ୍କ ପଦ୍ଧତିକୁ ତୁଳନା କରାଯାଇ ପାରେ । ନିଜ ପରିବେଶ, ସଂସ୍କାର, ସଂସ୍କୃତି, ପରମ୍ପରା ଓ ମୂଲ୍ୟବୋଧର ଅହଙ୍କାର ତାଙ୍କର ପ୍ରତ୍ୟେକ ଗଳ୍ପରେ ସ୍ପଷ୍ଟ ଅନୁଭୂତ ହୁଏ । ତାଙ୍କ ଭାଷା ଓ ଶୈଳୀ ସମ୍ପୂର୍ଣ୍ଣ ନିରାଭରଣ ଓ ଗ୍ରାମ୍ୟ,—ତେଣୁ କୃତ୍ରିମ ନୁହେଁ ।

ତଥାପି ମୋର ମନେହୁଏ ଯେପରି କ୍ଷୁଦ୍ରଗଳ୍ପର କଳା କୌଶଳ ଏକ ଗତାନୁଗତିକ ବିଷୟ ପରିହାର ବା ଶୈଳୀ ପରିବର୍ତ୍ତନରେ ନାହିଁ । ମୋଟ ଉପରେ କୁହାଯାଇ ପାରେ ଯେ, କ୍ଷୁଦ୍ରଗଳ୍ପ ପାଇଁ କୌଣସି ନିର୍ଦ୍ଦିଷ୍ଟ କଳାଗତ ମାନ ବା ମାପକ ନାହିଁ । ଏହାର କୃତିତ୍ୱ ଓ ତାତ୍ପର୍ଯ୍ୟ ଏହାର ଆବେଦନ ଉପରେ ନିଶ୍ଚିତ ନିର୍ଭରଶୀଳ । ସେହି ଦୃଷ୍ଟିରୁ ଓଡ଼ିଆ କଥା ସାହିତ୍ୟରେ (ମୋର ଯେପରି ମନେହୁଏ) ସ୍ଥିତିବାଦୀ ପରୀକ୍ଷା ତଥା **antimodern attitude** ସମ୍ବଳିତ ସମସ୍ତ କଥା ସାହିତ୍ୟ ଠାରୁ ସୁରେନ୍ଦ୍ରବାବୁ, ମନୋଜ ଦାସ, ଅଖିଳ ମୋହନ, କିଶୋରୀଚରଣ ଓ ବୀଣାପାଣି ମହାନ୍ତିଙ୍କ କଥା ସାହିତ୍ୟ ଅଧିକ ମୂଲ୍ୟବାନ୍ ବିବେଚିତ ହେବ । ଏହାର କାରଣ ସ୍ୱରୂପ ଆମ ସାମାଜିକ ଜୀବନ ଓ ଆମ ଚଳଣୀ ତଥା ଗୃହଦ୍ୱାର ନିଜସ୍ୱତାକୁ ପରିହାସ କରି ହେବ କି ? କାହାଣୀରୁ କ୍ଷୁଦ୍ରଗଳ୍ପ ପର୍ଯ୍ୟନ୍ତ ଏ ସାହିତ୍ୟର ଯେଉଁ ଅବିଶ୍ରାନ୍ତ ଗତି ହୋଇଛି ତା ସହିତ କେତେକ ବୌଦ୍ଧିକ ପାଠକଙ୍କୁ ଛାଡ଼ିଦେଲେ ଅବଶିଷ୍ଟ ଅଗଣିତ ପାଠକ ପାଦ ମିଳେଇ ଚାଲିପାରି ନାହାନ୍ତି । ଅବଶ୍ୟ ଜୀବନ ପରି ସାହିତ୍ୟରେ ପରୀକ୍ଷା ନିରୀକ୍ଷା ନିଶ୍ଚୟ ଦରକାର । କିନ୍ତୁ ପରୀକ୍ଷାର ଭାର-କେନ୍ଦ୍ରଟି ଜୀବନର ସଞ୍ଚାର ପଥରୁ ବହିର୍ଗାମୀ ହୋଇଗଲେ ସେ ପରୀକ୍ଷାର ଆଶୁ ଫଳପ୍ରସୂତା ସମାଜ ଉପଭୋଗ କରି ପାରିବନି । ମନୋଜ ଦାସଙ୍କ 'ଆରଣ୍ୟକ'ରେ ଜୀବନର ଯେଉଁ ବିପୁଳ ପର୍ଯ୍ୟବେକ୍ଷଣ ପରିଲକ୍ଷିତ ହୁଏ ତାହାର ପ୍ରଚ୍ଛନ୍ନ କାରୁଣ୍ୟ 'ଶେଷ ବସନ୍ତର ଚିଠି' ପର୍ଯ୍ୟନ୍ତ ସାର୍ଥକ ଭାବେ ପ୍ରଧାବିତ । ସୁରେନ୍ଦ୍ର ବାବୁଙ୍କ ମତରେ କଥା ସାହିତ୍ୟ ଏକ ସ୍ୱକୀୟ ଶୈଳୀ-ସମ୍ବଳିତ କଳା । ତେଣୁ ଚମତ୍କାର ଭାଷା ଓ ଭାବଗତ ଆଭିଜାତ୍ୟ ସହିତ ନୂତନ ବହି-ର୍ଜଗତର ବାସ୍ତବିକ ପରିସ୍ଥିତି ତଥା ଆନ୍ତର୍ଜଗତର ବିପୁଳ ଆଲୋଡ଼ନରେ ତାଙ୍କ କଥା ସାହିତ୍ୟ ଏ ଶତାବ୍ଦୀ ବ୍ୟାପୀ ସମୃଦ୍ଧ ମନେ ହୁଏ । ବୌଦ୍ଧ ଯୁଗରୁ ଆଧୁନିକ ଜୀବନ ପର୍ଯ୍ୟନ୍ତ ତାଙ୍କ କଥା ସାହିତ୍ୟ ବ୍ୟାପ୍ତ-ଭିତ୍ତିକ ଓ ଜୀବନର ଭାବ-ସମ୍ଭାବନା ଅନୁସନ୍ଧିତ୍ସା ସହିତ ଗଭୀର ଭାବେ ସମନ୍ୱିତ । କଥା ସାହିତ୍ୟରେ କାବ୍ୟିକ ରୂପ ଚେତନା ସୃଷ୍ଟି ତାଙ୍କ ଶୈଳୀର ଅନ୍ୟତମ ବୈଶିଷ୍ଟ୍ୟ । ତଥାପି ଏସବୁ କଥା ଭାବପ୍ରବଣତା ଉପରେ ଭିତ୍ତିଶୀଳ ବୋଲି ଆଧୁନିକ ସମାଲୋଚକେ ଏସବୁକୁ ଅଭିଜାତ ଗୋଷ୍ଠୀର ଚେତନା କହି ନୂତନ ବିସ୍ଫୋରଣ ଆଡ଼କୁ ଆଖି ପକେଇ ପାରେ । କାଫ୍‌କାଙ୍କ ପତଙ୍ଗ-ନାୟକ ଗ୍ରୀଗର, ଗଳ୍ପନାୟକ ନିଜକୁ ଚିହ୍ନୁଥିବା କୁକୁର ବା ଗାତଖୋଳୁଥିବା ଜନ୍ତୁ ଓ ସେମାନଙ୍କ ଜୀବନରେ ବଞ୍ଚିବା ପାଇଁ ସଂଗ୍ରାମର ଉଦ୍‌ଘୋଷଣା ଓଡ଼ିଆ କ୍ଷୁଦ୍ରଗଳ୍ପରେ ଏଯାବତ୍ ପ୍ରତିଧ୍ୱନିତ ହୋଇ ନାହିଁ । ମଣିଷ ଜୀବନର ସମସ୍ତ ସମସ୍ୟା ସହିତ ସମନ୍ୱୟ ସ୍ଥାପନ ଦିଗରେ ଗଳ୍ପ ସାହିତ୍ୟର ଏହି ରୂପକ ଚରିତ୍ରଗୁଡ଼ିକ ବିଭିନ୍ନ କାରଣରୁ ଅତି ଆବଶ୍ୟକ ମନେ ହୋଇଛନ୍ତି । କେବଳ କଥାଟିଏ କହିବାର

ପ୍ରଲୋଭନ ବା ଶୈଳୀଗତ କୃତିତ୍ୱ ଠାରୁ ଏସବୁ ଗଳ୍ପରେ ଆହୁରି ଅଧିକ କିଛି ରହିଛି ; ଯେଉଁଥିପାଇଁ ସମଗ୍ର ପୃଥିବୀ ଏ ଗଳ୍ପଗୁଡ଼ିକର କୃତିତ୍ୱ ଓ କାରୁକାର୍ଯ୍ୟ ପାଇଁ ପ୍ରଶଂସମାନ । ଏ ସବୁରେ ଗତାନୁଗତିକତାର ପରିହାର ମଧ୍ୟ ନବୀସ ଜୀବନ ପାଇଁ ପ୍ରଚ୍ଛନ୍ନ ସମ୍ବେଦନ ଓ ସୃଜନାତ୍ମକତା ପୂରି ରହିଛି । ପୁଣି କାବ୍ୟିକ ସଙ୍କେତ, ପ୍ରତୀକ ଓ ରୂପ ଚେତନା ଅତି ସହଜ ଓ ସ୍ୱାଭାବିକ ଭାବରେ ଏ ସବୁ ଗଳ୍ପଗୁଡ଼ିକରେ ପରୀକ୍ଷିତ । ସାଂପ୍ରତିକ ଜୀବନର ବାର୍ତ୍ତାବହ ଏହି ଗଳ୍ପଗୁଡ଼ିକ ପାଠକ ମନରେ ଚିନ୍ତାର ହାତୁଡ଼ି ପିଟି ପିଟି ତାର ସମସ୍ତ ସହଜ ଓ ସରଳ ଅବଧାରଣାକୁ ଚୁରମାର କରି ଦେଉଚି । ଲେଖକଙ୍କ "Slice of life" ବା ଜୀବନର ରେଣୁ ରେଣୁ ଭଗ୍ନ-ସମ୍ବିତ୍ ଓ ସାନୁଭୂତିର ଦୁଃଖ, ଯନ୍ତ୍ରଣା, କାତରତା, ଭୟ, ମନସ୍ତାପ ଓ ମନକଥାର ବଚିତ୍ର ବର୍ଣ୍ଣାଳୀ ଏହିପରି ବହୁ ସାମ୍ପ୍ରତିକ ଗଳ୍ପରେ ବେଶ୍ ପରିଲକ୍ଷିତ ହୁଏ । ଏହାକୁ ନିର୍ଦ୍ଦିଷ୍ଟ କୌଣସି କଳା କୌଶଳ ନ କହି ଆମେ ବରଂ ସମସ୍ତ ଓ ସମସ୍ୟା ସଚେତନତା, ବାସ୍ତବବାଦୀତା ତଥା ଆବେଗଶୀଳତାର ସମନ୍ୱୟ କହି ପାରିବା । "ପତଙ୍ଗ-ଜଗତ୍ ଯାହା ସୃଷ୍ଟିଛି କହି ପାରୁନି—କଲବଲ କରି ଅନେଇବାହିଁ ସାର ହେଉଛି । ସବୁଚ—ତା ଭଉଣୀ ତା କଥା ବୁଝିବ । କିଏ କାହାକୁ ବୁଝିବ ? ପ୍ରତ୍ୟେକ ଚରିତ୍ର ତ ଗୋଟିଏ ଗୋଟିଏ ସ୍ୱୟଂ ସମ୍ପୂର୍ଣ୍ଣ ଶୂନ୍ୟତା, ନିଜର ବ୍ୟକ୍ତିଗତ 'ନର୍କ' (ଦୁଃଖ, ଯନ୍ତ୍ରଣା, ବ୍ୟଥା, ବେଦନା)ରେ ଦଗ୍ଧୀଭୂତ ସନ୍ତାପକ୍ଲିଷ୍ଟ ଓ ଅଭିଶପ୍ତ" । ତଥାପି କାଫ୍‌କାଙ୍କର ଏହି ଚରିତ୍ର ଗୁଡ଼ିକରେ ଆତ୍ମପ୍ରବଞ୍ଚନା, ଆତ୍ମପ୍ରତାରଣା କିମ୍ବା ଛଳନାର ମୁଖା ନାହିଁ । କାମ୍ୟୁଙ୍କ ଚରିତ୍ର ଗୁଡ଼ିକ ପରି ଏ ଚରିତ୍ରଗୁଡ଼ିକ ନିଜକୁ ଦୟା କରେ ନା । ପରିସ୍ଥିତିକୁ ସାମ୍ନା କରେ । ଭାଷା ଓ ଶୈଳୀରେ ସଯତ୍ନ, ଅତି ସାଧାରଣ ଓ ଅଣନାଟକୀୟ ବ୍ୟକ୍ତିଗତ କଥାବାର୍ତ୍ତାର ଢଙ୍ଗ ଏବଂ ଅନାସକ୍ତ ଉଦାରତା (Non-Committed Sympathy) ଏହି ଗଳ୍ପଗୁଡ଼ିକରେ ବେଶ୍ ପ୍ରକଟିତ (*) । ତାଙ୍କ ଶୈଳୀଗତ ବୈଶିଷ୍ଟ୍ୟ ହେଉଛି ଆତ୍ମ ସଂଳାପ (Monologue) ଯାହା 'Investigation of a dog' ବିଷୟନିରେ ସ୍ପଷ୍ଟ ।

ସାଂପ୍ରତିକ ଓଡ଼ିଆ ଗଳ୍ପ ସାହିତ୍ୟରେ ସମ୍ପୂର୍ଣ୍ଣ କବିତା-ଧର୍ମୀ ମିନି-ଗଳ୍ପ ଓ ରୈଖିକ ଗଳ୍ପ (sketch) ର ପରିବର୍ତ୍ତନ କ୍ରମେ ଦ୍ରୁତତର ହେଉଥିବା ଲକ୍ଷ୍ୟ କରାଯାଉଛି । ଏପରିକି ଅନେକ ମିନି-ଗଳ୍ପ କବିତା ପରି ଦୁର୍ବୋଧ ଭାବଧାରା ଓ ଆଙ୍ଗିକ ଭିତରେ ଆତ୍ମ-ପ୍ରକାଶ କରୁଛନ୍ତି । ଏହା ଗଳ୍ପପରି ଏକ ସମୃଦ୍ଧ ଓ ଗଣତାନ୍ତ୍ରିକ କଳା ପ୍ରତି ଅବମାନନା ଓ ଏକ ସ୍ୱେଚ୍ଛାଚାର ବୁଝାଯାଇପାରେ । ଆଧୁନିକ କବିତା ଅବୋଧ ଓ କବିର ମାନସିକ ବିମନ୍ଥନ ତଥା ଖଣ୍ଡିତ ଚିନ୍ତାର ଇତସ୍ତତଃ ପ୍ରକାଶ ବୋଲି କ୍ରମାଗତ ଅଭିଯୋଗ ହେଉ-ଥିଲାବେଳେ ମିନି ଗଳ୍ପରେ ସେଇ ଅବୋଧତା ଓ ଅସ୍ପଷ୍ଟତା ପାଠକ ପ୍ରତି ଏକ ଉପେକ୍ଷା ଓ ପ୍ରତାରଣା ବୁଝାଯାଇପାରେ । ଆମେରିକା, ଇଂଲଣ୍ଡ ଓ ଫ୍ରାନ୍ସ ପରି ବଡ଼ ବଡ଼ ଶିଳ୍ପସମୃଦ୍ଧ ଅଞ୍ଚଳମାନଙ୍କରେ ବିଶୃଙ୍ଖଳିତ ମନର ସାମୟିକ ଉଚ୍ଛ୍ୱାସ ଭାବରେ ସମୟର ସୀମିତତାକୁ ଆଖି ଆଗରେ ରଖି Wall magazine ର ପ୍ରଚଳନ ପରିଲକ୍ଷିତ ହେଉଛି । Wall magazine ର ପରିସର ଦୃଷ୍ଟିରୁ ସେଠାରେ ଗଳ୍ପ ସଂକ୍ଷିପ୍ତ ବା ମିନି ହେବାକୁ ବାଧ୍ୟ । କିନ୍ତୁ ଏହି ମିନି ଗଳ୍ପ ପାଠକ ମନରେ ନିର୍ଦ୍ଦିଷ୍ଟ ରେଖାପାତ କରିପାରୁଛି କି ? କେବଳ

(*) 'ଗଳ୍ପ' ୫ମ ସଂକଳନ—କାଫ୍‌କାଙ୍କ କ୍ଷୁଦ୍ର ଗଳ୍ପର ଅଧ୍ୟୟନ—
ଶ୍ରୀ ସୀତାକାନ୍ତ ମହାପାତ୍ର

ଲେଖକର ଶ୍ରମକୁ ଏହା ଲାଘବ କରିପାରିଛି । ନଚେତ୍ ଏହା ସମ୍ପୂର୍ଣ୍ଣ ଉଦ୍ଦେଶ୍ୟହୀନ ଓ ବେଳେବେଳେ ଅତି ଉଦ୍ଭଟ ପରି ମନେହୁଏ ।

ଏଠାରେ ଉଦାହରଣ ସ୍ୱରୂପ ସାଂପ୍ରତିକ ଓଡ଼ିଆ କଥା-ସାହିତ୍ୟର ଜଣେ ପ୍ରତିଷ୍ଠିତ ଲେଖିକା ବୀଣାପାଣି ମହାନ୍ତିଙ୍କ ମିନିଗଳ୍ପ 'ବୁଲେଟ୍' ସମ୍ପର୍କରେ ଉଲ୍ଲେଖ କରାଯାଇପାରେ (୬) । ପ୍ରତୀକ ଓ ରୂପକଳ୍ପ ପ୍ରୟୋଗରେ ଏହି ୬ଟି ବାକ୍ୟବିଶିଷ୍ଟ ମିନି ଗଳ୍ପଟି ଅଧିକ କବିତାଧର୍ମୀ । କବିତା ଆକାରରେ ସଜ୍ଜିତ ଭାବଧାରା ପ୍ରକାଶିତ ହୋଇଥିଲେ ଅଧିକ ପ୍ରଭାବଶାଳୀ ହୋଇ ପାରିଥାନ୍ତା । ତଥାପି ମୁଁ ଏହାକୁ ଏକ ଗଦ୍ୟଧର୍ମୀ ଆଧୁନିକ କବିତା ଆଖ୍ୟା ଦେବି ଏବଂ ଏକ ସାର୍ଥକ ଭାବସାନ୍ଦ୍ର କବିତା ପର୍ଯ୍ୟାୟଭୁକ୍ତ କରିବି । କବିତା ଓ ମିନି-ଗଳ୍ପ ଭିତରେ ଯଦି ଶୈଳୀଗତ ଦୂରତା ବାରି ନ ହୁଏ ତେବେ କ୍ରମେ ପରୀକ୍ଷା ଓ ପ୍ରୟୋଗ-ଉନ୍ମୁଖ ମିନିଗଳ୍ପ ଆଧୁନିକ କବିତା ଦ୍ୱାରା ସମ୍ପୂର୍ଣ୍ଣ ଗ୍ରସ୍ତ (eclipsed) ହୋଇପଡ଼ିବ —ଏଥିରେ ସନ୍ଦେହ ନାହିଁ ।

କେବଳ ଏହି ମିନି-ଅଙ୍ଗସଜ୍ଜା ନୁହେଁ ଚିନ୍ତା ଓ ଚୈତନ୍ୟରେ କେହି କେହି ଗଳ୍ପ ଲେଖକ ଆଜି ଖୁବ୍ ବେଶୀ କାମ୍ୟୁ, ସାର୍ତ୍ରେ, ଷ୍ଟେନ୍ ବେକ୍, ହେମିଙ୍ଗ୍ୱେ କିମ୍ବା ଆମେରିକାର **anti-story movement** କୁ ଅନୁକରଣ କରୁଥିବା ଓଡ଼ିଆ ଗଳ୍ପ-ରାଜ୍ୟରେ ସ୍ପଷ୍ଟ ପରିଲକ୍ଷିତ ହେଉଛି । ଏହାଦ୍ୱାରା ଆମ ଗଳ୍ପରେ ଆମ ପରମ୍ପରା ଓ ସଂସ୍କୃତିର ପ୍ରତିଶ୍ରୁତି ମିଳୁନାହିଁ, ଯୋଗସୂତ୍ର ବି ରହୁନାହିଁ । ପ୍ରତ୍ୟେକ ସଫଳ ଲେଖକ ନିଜ ଜୀବନର ଅଭିଜ୍ଞତାରୁ ତାର ଦର୍ଶନ ଠିକଣା କରିଥାଏ, ଅଭିଜ୍ଞତା ଭିତରେ ନିଜର ଟ୍ରାଡ଼ିସନ୍ ପରିବେଶ, ଇତିହାସ-ବୋଧ, ଚାଳିପବନ ବହୁ ଅଂଶ ଥାଏ । ଭାରତୀୟ ଦର୍ଶନ ସଂସ୍କୃତି ଓ ଐତିହ୍ୟ ମହାମେରୁ ପରି ସ୍ଥିର, ଅବିଚଳ ଓ ବିରାଟ । ଏଥିରେ ହଜାର ହଜାର ବର୍ଷର ସାଂସ୍କୃତିକ ଅନୁଚିନ୍ତାର ଅଖଣ୍ଡ ସ୍ରୋତ ମିଶି ରହିଛି । ମଣିଷ ପୂର୍ଣ୍ଣତାକୁ ଖୋଜୁଛି, ଶାନ୍ତି ଓ ଆନନ୍ଦ ଖୋଜୁଛି । ଗଳ୍ପ ସେଥିପାଇଁ ଯଥେଷ୍ଟ ସମ୍ଭାବନା ସୃଷ୍ଟି କରିଥାଏ । କିନ୍ତୁ ଗଳ୍ପ ଯଦି ଅନୁଭୂତି ଲବ୍ଧ ନ ହୋଇ କେବଳ ଆହରଣସର୍ବସ୍ୱ ହୁଏ, ତେବେ ତାହା ଯେପରି ଆଙ୍ଗିକ ଓ ଭାଷା ବୈଦଗ୍ଧରେ ରଚିତ ହେଉନା କାହିଁକି ହୃଦୟ ସ୍ପର୍ଶ କରି ପାରିବ ନାହିଁ । (୭) କାଫ୍‌କା ଯେପରି ଯକ୍ଷ୍ମା ଓ୍ୱାର୍ଡ଼ରେ ଦୀର୍ଘ ସମୟ କଟେଇ ଅନୁଭୂତି ସଂଗ୍ରହ କରିଥିଲେ, ଫକୀରମୋହନ ସେହିପରି ଦୀର୍ଘ ୫୦ ବର୍ଷ କାଳ ଜୀବନକୁ ବହୁକ୍ଷେତ୍ରରେ ପର୍ଯ୍ୟବେକ୍ଷଣ କରି ତା'ପରେ ଗଳ୍ପ ଲେଖାରେ ହାତ ଦେଇଥିଲେ । ତେଣୁ ସେମାନଙ୍କ ଗଳ୍ପରେ ଜୀବନର ବ୍ୟାପକ ଓ ସୂକ୍ଷ୍ମାତିସୂକ୍ଷ୍ମ ଅନୁଭୂତିର ଚିତ୍ର ଉଜ୍ଜ୍ୱଳ ଓ ଯୁଗାତୀତ ହୋଇ ପାରିଛି । ତେଣୁ ଅନୁଭୂତି ଓ ତାର ଯଥାଯଥ କଳାଗତ ରୂପାୟନ କ୍ଷୁଦ୍ରଗଳ୍ପର ସଫଳତାର ଶ୍ରେଷ୍ଠ କାହାଣୀ —କେବଳ ଆଜି ନୁହେଁ, ଯୁଗେ ଯୁଗେ ଏହାହିଁ ଯେ କୌଣସି କୃତିର ନିର୍ଭୁଲ ମାପକ ହୋଇ ରହିବ ।

---

(୬) 'ବୁଲେଟ୍'—ସାମୟିକ କୁନାପତି (୪ର୍ଥ ସଂଖ୍ୟା) ପୃ ୧—
ଅଧ୍ୟାପିକା ବୀଣାପାଣି ମହାନ୍ତି

(୭) 'ସାକ୍ଷାତକାର'—'ଗଳ୍ପ' ୩ୟ ସଂଖ୍ୟା ପୃ ୧୧୭—ସୁରେନ୍ଦ୍ର ମହାନ୍ତି

ପୁଣି କେହି କେହି ଗାଲ୍‌ଟିକ ଭାଷାକୁ ଏକ କଳାଗତ କୌଶଳ ରୂପେ ଗଳ୍ପରେ ପ୍ରୟୋଗ କରିଥାନ୍ତି । ଉଦାହରଣ ସ୍ୱରୂପ କଥାକାର ସୁରେନ୍ଦ୍ର ମହାନ୍ତିଙ୍କ ଭାଷା ଓ ଗୋପୀନାଥ ମହାନ୍ତିଙ୍କ ଭାଷା ଦୁଇଟି ନିର୍ଦ୍ଦିଷ୍ଟ ଦିଗନ୍ତର ସ୍ପଷ୍ଟ ସୂଚନା ଦିଏ । ପ୍ରତୀକ ଓ ଚିତ୍ରକ ପରିପୂର୍ଣ୍ଣ ଉପସର୍ଗ ଅନୁଯୋଜିତ ଶବ୍ଦସମ୍ଭାର ପୂର୍ଣ୍ଣ ଭାଷାରେ ଭାବକୁ ପ୍ରକାଶ କରିବା ପାଇଁ ସୁରେନ୍ଦ୍ର ବାବୁ ଉଦ୍ୟମଶୀଳ ; କିନ୍ତୁ ଗୋପୀବାବୁଙ୍କ ଭାଷା ସରଳ ଓ ଗ୍ରାମ୍ୟ ଶବ୍ଦ ବହୁଳ । ଏପରି ନିରୋଳା କଥିତ ଓଡ଼ିଆ ଭାଷା ପ୍ରଚଳନରେ ତାଙ୍କର ଥିଲି ଆୟର୍ଲାଣ୍ଡର 'celtic revival'ର ପ୍ରେରଣା । ଆଇରିସ୍ ଲୋକଙ୍କ କଥିତ ଭାଷା Erseକୁ ଇଂରାଜୀ ଭାଷାଠାରୁ ଅଲଗା କରି ଏକ ସ୍ୱତନ୍ତ୍ର ଭାଷା ପ୍ରବର୍ତ୍ତନ କରିବା ପାଇଁ Synge, Barrie ପ୍ରଭୃତି ଲେଖକମାନେ ଯେଉଁ ଉଦ୍ୟମ କରିଥିଲେ ·ତାହା ପରେ Yeats ଓ Shawଙ୍କ ପରି ପ୍ରଖ୍ୟାତ ସାହିତ୍ୟିକମାନଙ୍କୁ ପ୍ରଭାବିତ କରିଥିଲି (୮) । ପୁଣି ଓଡ଼ିଆ ସାହିତ୍ୟରେ ଫକୀର ମୋହନଙ୍କ ଭାଷା ଏକ ଶକ୍ତିଶାଳୀ ଉତ୍ସ ଜଗନ୍ନାଥ–ଗୋପାଳକୃଷ୍ଣ ଭାଷା ସ୍ରୋତର ସାର୍ଥକ ଅନୁଶୀଳନ ବୋଲି କୁହାଯାଇପାରେ । ଏ ଉଭୟ ଭାଷା-ମାଧ୍ୟମ କ୍ଷୁଦ୍ରଗଳ୍ପ ପାଇଁ ଉପଯୋଗୀ । ତଥାପି ଶାନ୍ତନୁକୁମାର ଓ କୃଷ୍ଣପ୍ରସାଦ ମିଶ୍ରଙ୍କ ଭାଷା ସୁରେନ୍ଦ୍ର-ଗୋପୀନାଥ-ଅଖିଳମୋହନ ଭାଷାବିନ୍ୟାସ ଶୈଳୀଠାରୁ ବ୍ୟତିକ୍ରମ ମନେହୁଏ । ଏ ଦୁଇ ତରୁଣ କଥାକାର ବହୁ ମୌଳିକ ଓ ଅପ୍ରଚଳିତ ଭାଷା ପ୍ରୟୋଗରେ ବିଶ୍ୱାସୀ । ଅନେକ ସମୟରେ ଏମାନଙ୍କ ଭାଷାର ଟିପିକାଲିଟି ଏମାନଙ୍କ ଗଳ୍ପକୁ ଏକ ସ୍ୱତନ୍ତ୍ର ଓ ଅନନ୍ୟଶୈଳୀ ପ୍ରଦାନ କରିପାରିଛି । ସେତିକିବେଳେ ଶ୍ରୀ ରାଜକିଶୋର ରାୟଙ୍କ ଭାଷା କୃତ୍ରିମ ଓ ଖୁବ୍ ଆଡ଼ମ୍ବରପୂର୍ଣ୍ଣ ହେଲେ ମଧ୍ୟ ପାଠକ ମନରେ ସେ ଭାଷା ବଳିଷ୍ଠ ପ୍ରଭାବ ସୃଷ୍ଟି କରିବାକୁ ଅକ୍ଷମ । ଉପସଂହାରରେ ଏତିକି କୁହାଯାଇପାରେ ଯେ ଭାଷା-ସମ୍ଭାର ବ୍ୟତୀତ ଗଳ୍ପ ମାଧ୍ୟମରେ ନିର୍ଦ୍ଦିଷ୍ଟ ଏକ ଆବେଦନ ସୃଷ୍ଟି କରିବା କଷ୍ଟ ସାପେକ୍ଷ ।

ପରିସର ଦୃଷ୍ଟିରୁ ଏ ଆଲୋଚନାକୁ ସୀମିତ କରିବାକୁ ହେବ । ଓଡ଼ିଆ କ୍ଷୁଦ୍ରଗଳ୍ପର ବିପୁଳାୟତନକୁ ଲକ୍ଷ୍ୟ କଲେ ସ୍ପଷ୍ଟ ଅବବୋଧ କରିହେବ ଯେ ଗଳ୍ପ କ୍ରମେ ଫକୀରମୋହନ-ଗୋଦାବରୀଶ-ଲକ୍ଷ୍ମୀକାନ୍ତ-କାଳନ୍ଦୀଚରଣ-ଗୋଦାବରୀଶ ମହାପାତ୍ର ଘଟଣାଧର୍ମୀତାକୁ ପରିହାର କରି ନିତ୍ୟାନନ୍ଦ-ସଚ୍ଚିଦାନନ୍ଦଙ୍କ ହାତରେ ମାନସିକ ସମୀକ୍ଷାକୁ ଅଧିକ ଗୁରୁତ୍ୱ ଦେଇଥିଲି । ଗୋପୀବାବୁ-ପ୍ରାଣବନ୍ଧୁ-ସୁରେନ୍ଦ୍ର-ଅଖିଳମୋହନ କାଳରେ ଗଳ୍ପ ରାଜନୈତିକ ଓ ଆର୍ଥନୀତିକ ବ୍ୟଞ୍ଜନା ଉପରେ ସ୍ୱକୀୟ ଶୈଳୀର ପ୍ରଚୁର ଉତ୍ତାପ ନେଇ ବେଶ୍ ଶାଣିତ ଓ ଓଜନଦାର ଭାବରେ ଆତ୍ମପ୍ରକାଶ କଲି । କିଶୋରୀଚରଣ, ନୀଳମଣି, ମନୋଜ ଓ ବୀଣାପାଣି ସମାଜ, ମନସ୍ତତ୍ତ୍ୱ, ବ୍ୟକ୍ତିହୃଦର ନିଃସଙ୍ଗତା ଓ ପାରିବାରିକ ଗଳ୍ପସାହିତ୍ୟକୁ ଅଧିକ ପ୍ରଭାବଶାଳୀ କରିପାରିଥିଲାବେଳେ କୃଷ୍ଣପ୍ରସାଦ, ଶାନ୍ତନୁକୁମାର ଓ ହରପ୍ରସାଦ ସମ୍ପୂର୍ଣ୍ଣରୂପେ ପ୍ରୟୋଗବାଦୀ ଦୃଷ୍ଟିଭଙ୍ଗୀର ପରିପୋଷକତା କରି ଗଳ୍ପସାହିତ୍ୟକୁ ଅଧିକରୁ ଅଧିକ ଆନ୍ତର୍ଜାତିକ ମାନଚିତ୍ର ଆଡ଼କୁ ପ୍ରଧାବିତ କରିପାରିଛନ୍ତି । ଏମାନେ ସ୍ୱକୀୟ ଶୈଳୀର ଚମତ୍କାର ରୂପାୟନରେ ଗଳ୍ପ କଳାକୁ ପାରମ୍ପରିକ ଗୁଳାରୁ ଖସେଇ ଦେଇପାରିଛନ୍ତି ଓ ନିଜ ନିଜର ବ୍ୟକ୍ତିମୁଖୀ ଶୈଳୀର

---

(୮) 'ସାକ୍ଷାତକାର'—'ଗଳ୍ପ'—ଗୋପିନାଥ ମହାନ୍ତି

ଅନୁବର୍ତ୍ତନରେ ଗଳ୍ପସାହିତ୍ୟକୁ ଏକ ନୂତନ ଦିଗନ୍ତର ସନ୍ଧାନ ଦେଇଛନ୍ତି । ଏମାନେ କେନ୍ଦ୍ର ହେଲେ ଟ୍ରାଡ଼ିସନାଲ୍ କଳାଗତ କୌଶଳରେ ନିର୍ଭରଶୀଳ ନୁହନ୍ତି । ଚେତନାର ନିର୍ଦ୍ଦିଷ୍ଟ କେନ୍ଦ୍ରବିନ୍ଦୁକୁ ନେଇ ଏମାନଙ୍କ ଗଳ୍ପ ରଚିତ ଓ ସେଇ ଚେତନାର ସଞ୍ଚାର ପଥରେ ସ୍ୱକୀୟ ଶୈଳୀର ବିଚିତ୍ର ବୃତ୍ତରେ ସେମାନଙ୍କ କଥାସାହିତ୍ୟ ଭ୍ରମଣରତ ।

---

# ଓଡ଼ିଆ ଭାଷାର ଶବ୍ଦ ଭଣ୍ଡାର

ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି

ଭାରତୀୟ ଭାଷାର ବୈୟାକରଣିକମାନେ କୌଣସି ଏକ ପ୍ରାଦେଶିକ ଭାଷାର ଶବ୍ଦ ଭଣ୍ଡାର ବିଷୟରେ ଆଲୋଚନା କରିବା ସମୟରେ ତାହାକୁ ମୁଖ୍ୟତଃ ତିନିଭାଗରେ ବିଭକ୍ତ କରିଥାଆନ୍ତି । ଏହି ତିନିଗୋଟି ବିଭାଗ ହେଉଛି ତତ୍ସମ, ତଦ୍‌ଭବ ଓ ଦେଶୀ । ଭାରତୀୟ ଆର୍ଯ୍ୟଭାଷାର ଶବ୍ଦଭଣ୍ଡାର ବିଷୟରେ ମତ ପ୍ରକାଶ କରିବାକୁ ଯାଇ ବିଖ୍ୟାତ ଭାଷାତତ୍ତ୍ୱବିଦ୍ ଡକ୍ଟର ଆର. ଏଲ. ଟର୍ନର ନିମ୍ନମତେ ବିଭାଗୀକରଣ କରିଅଛନ୍ତି ।

"(1) Words of original Sanskrit or Indo-Aryan origin comming through a slow process of linguistic evolution through the M. I. A. stage.

(2) Words common to many N. I. A. languages but not traceable to that earlier source.

(3) Words borrowed at one time or another from other N. I. A. dialects.

(4) Words of Non-Aryan origin.

(5) A certain number of English and other European words.

(6) Sanskrit words either in original or in modified forms to suit the genices or phonological peculia-rities of any particular language." (୧)

ଆସାମୀୟା ଭାଷାର ଉତ୍ପତ୍ତି ଓ କ୍ରମବିକାଶ ବିଷୟକ ଆଲୋଚନାରେ ଡକ୍ଟର ବାଣୀକାନ୍ତ କାକତି ଟର୍ନର ସାହେବଙ୍କର ଏହି ବିଭାଗୀକରଣକୁ ଗ୍ରହଣ କରିଅଛନ୍ତି (୨) । ଭାରତର ଅନ୍ୟତମ ପ୍ରଖ୍ୟାତନାମା ଭାଷାତତ୍ତ୍ୱବିଦ୍ ଡକ୍ଟର ସୁନୀତି କୁମାର ଚାଟର୍ଜୀ ବ...

(୧) Introduction to the Nepali Dictionary—pp—— ——

(୨) Assamese, Its Formation and Developm

ଭାଷାର ଉତ୍ପତ୍ତି ଓ କ୍ରମବିକାଶ ବିଷୟକ ଆଲୋଚନାରେ ନିମ୍ନମତେ ଶବ୍ଦଭଣ୍ଡାରର ବିଭାଗୀ-କରଣ କରି ଅଛନ୍ତି ।

"Following the terminology of the Indian grammarians and slightly extending it, the vocabulary of N.I.A. language can be said to consist of four elemants : (1) tat-sama, (2) tadbhava, (3) desi and (4) videsi." (୩)

ଓଡ଼ିଆ ଭାଷାର ଶବ୍ଦଭଣ୍ଡାର ବିଷୟକ ଆଲୋଚନାରେ ସାଧାରଣତଃ ତତ୍ସମ, ତଦ୍ଭବ ଓ ଦେଶଜ,—ଏହି ତିନିଗୋଟି ବିଭାଗକୁ ମୁଖ୍ୟଭାବରେ ଗ୍ରହଣ କରାଯାଏ । ସମଯ୍ସ୍ରୋତର ଗତିରେ ଓଡ଼ିଆ ଭାଷା ଉପରେ ବିଦେଶୀ ଭାଷାମାନଙ୍କର ପ୍ରଭାବ ପଡ଼ିବା ଫଳରେ ଯେଉଁ କେତେକ ପ୍ରଭାବିତ ଶବ୍ଦ ସୃଷ୍ଟି ହୋଇଅଛି ସେଗୁଡ଼ିକୁ ଯାବନିକ ଶବ୍ଦ ପର୍ଯ୍ୟାୟଭୁକ୍ତ କରାଯାଇଅଛି । କୌଣସି ଭାରତୀୟ ଭାଷାର ଶବ୍ଦଭଣ୍ଡାର ବିଷୟରେ ଆଲୋଚନା କରିବା ସମୟରେ ଡକ୍ଟର ସୁନୀତି କୁମାର ଚାଟାର୍ଜୀଙ୍କ ମତକୁ ଗ୍ରହଣ କରିବାହିଁ ସମୀଚୀନ ।

ଓଡ଼ିଆ ଭାଷାରେ ତତ୍ସମ ଓ ତଦ୍ଭବ ଶବ୍ଦ ସମୂହର ବିଚାର ପ୍ରସଙ୍ଗରେ ପଣ୍ଡିତ ଗୋପୀନାଥ ନନ୍ଦଙ୍କର ମତକୁ ସ୍ମରଣ କରିବାକୁ ପଡ଼ିବ । ସେ ଲେଖିଛନ୍ତି, "ଓଡ଼ିଆ ଭାଷା ସଂସ୍କୃତ ଓ ପ୍ରାକୃତ ଭାଷାରୁ ଉତ୍ପନ୍ନ ବୋଲି ଯେପରି ଦ୍ୱୈମାତୁର ଅନ୍ୟାନ୍ୟ କେତେକ ଦେଶୀୟ ଭାଷା ମଧ୍ୟ ସେହିପରି ହୋଇପାରନ୍ତି, କିନ୍ତୁ ଓଡ଼ିଆ ଭାଷା ସହିତ ସଂସ୍କୃତ ଆଉ ପ୍ରାକୃତର ଘନିଷ୍ଠ ସମ୍ବନ୍ଧ ଏବଂ ଓଡ଼ିଆ ଭାଷା ସମଧିକତଃ ପ୍ରାକୃତ ଲକ୍ଷଣକୁ ଅନୁସରି ଥାଏ । ସଂସ୍କୃତରୁ ବିକୃତପ୍ରାପ୍ତ ପ୍ରାକୃତ ଶବ୍ଦାଦି ଓଡ଼ିଆରେ ଯେତେ ସମଧିକ ବ୍ୟବହୃତ ଅନ୍ୟ କେତେକ ଭାଷାରେ ତେତେ ଦେଖିବାକୁ ମିଳେ ନାହିଁ ଏବଂ ପ୍ରାକୃତ ବ୍ୟାକରଣ ଲକ୍ଷଣମାନ ଓଡ଼ିଆ ଭାଷାରେ ଯେତେ ପରିମାଣରେ ଅନୁସୃତ ଅନ୍ୟ ଭାଷାମାନଙ୍କରେ ସମ୍ଭବତଃ ତେତେ ନୁହେଁ । ଅତଏବ ଓଡ଼ିଆଭାଷା ଦ୍ୱୈମାତୁର ହେଲେ ସୁଦ୍ଧା କେତେକ ବିଷୟରେ ସଂସ୍କୃତ ଅପେକ୍ଷା ପ୍ରାକୃତର ଅତି ସନ୍ନିହିତ" (୪) ।

ଓଡ଼ିଆ ଭାଷାର ଶବ୍ଦ ଭଣ୍ଡାରକୁ ଆଧୁନିକ କାଳରେ ପରୀକ୍ଷା କଲେ ଉପର୍ଯ୍ୟୁକ୍ତ ବିଭାଗ ବ୍ୟତୀତ ଓଡ଼ିଆ ଭାଷା ଉପରେ ବିଭିନ୍ନ ସମୟରେ ପଡ଼ିଥିବା ଦେଶୀ ଓ ବିଦେଶୀ ବହୁଭାଷାର ପ୍ରଭାବ ଲକ୍ଷ୍ୟ କରାଯାଇ ପାରେ । ମୁସଲମାନ ରାଜତ୍ୱ ସମୟରେ ବହୁ ପାର୍ସୀ ଓ ଆରବୀ ଶବ୍ଦ ଓଡ଼ିଆଭାଷାର ଶବ୍ଦ ଭଣ୍ଡାରକୁ ପଶିଆସିଛି । ବହୁ ବିଦେଶୀ ପରିବ୍ରାଜକ ତଥା ବଣିକମାନଙ୍କର ଆଗମନ ଫଳରେ ଓଡ଼ିଆ ଭାଷା ଉପରେ ପର୍ତ୍ତୁଗୀଜ, ଡଚ୍ ପ୍ରଭୃତି ଇଉରୋପୀୟ ଭାଷାଗୁଡ଼ିକର ପ୍ରଭାବ ପଡ଼ିଅଛି । ଦୀର୍ଘକାଳ ଧରି ଭାରତରେ

---

[illegible]The Origin and Development of the Bangali [illegible]uage—pp. 189.

[illegible]ତତ୍ତ୍ୱ—ପୃ ୧୪୩

ଇଂରେଜ ଶାସନର ପ୍ରତିଷ୍ଠା ଯୋଗୁଁ ଏବଂ ଏକ ବିଶ୍ୱବିଖ୍ୟାତ ଭାଷା ଭାବରେ ଇଂରେଜୀ ଭାଷାର ପ୍ରଭାବ ଆମ ଭାଷା ଉପରେ ଲକ୍ଷ୍ୟ କରିବାର କଥା । ପାର୍ଶୀ, ଆରବୀ, ପର୍ତ୍ତୁଗୀଜ, ଡଚ୍ ଓ ଇଂରେଜୀ ଭାଷାର ଯେଉଁସବୁ ଶବ୍ଦ ଆମ ଭାଷା ଭଣ୍ଡାରରେ ସ୍ଥାନ ପାଇଅଛି ସେସବୁକୁ "ବିଦେଶୀ" ପର୍ଯ୍ୟାୟଭୁକ୍ତ କରାଯିବାର କଥା ।

ଓଡ଼ିଆ ଭାଷାରେ ଯେଉଁ ତତ୍ସମ ଶବ୍ଦଗୁଡ଼ିକ ବ୍ୟବହୃତ ହୁଏ, ସେଗୁଡ଼ିକ ସିଧା-ସଳଖ ସଂସ୍କୃତ ଭାଷାରୁ ଆସିଅଛି । ମାତ୍ର ସେଗୁଡ଼ିକ ଯେପରି ଭାବରେ ବ୍ୟବହୃତ ହୁଏ, ଓଡ଼ିଆ ଭାଷାରେ ସେପରି ନ ହୋଇ କେତେକାଂଶରେ ବିକୃତ ରୂପ ଗ୍ରହଣ କରିବାର ଦେଖାଯାଏ । ଲୋକମାନଙ୍କର ବ୍ୟବହାରରେ ଉଚ୍ଚାରଣଗତ ପାର୍ଥକ୍ୟ ଏହି କ୍ଷେତ୍ରରେ ବିଶେଷ ଭାବରେ ପରିଲକ୍ଷିତ ହୋଇଥାଏ । ଆମର ଉଚ୍ଚାରଣ ପଦ୍ଧତି ଏପରି ସ୍ୱାଭାବିକ ଯେ, ଆମେ ନଦୀ, ବଧୂ, ଗୋଧୂଳି, ଗମ୍ଭୀର, ଶରୀର ପ୍ରଭୃତି ଶବ୍ଦ ଉଚ୍ଚାରଣ କରିବା ସମୟରେ ଦୀର୍ଘ ସ୍ଥାନରେ ହ୍ରସ୍ୱ ଉଚ୍ଚାରଣ କରିଥାଉଁ । ଓଡ଼ିଆ ଭାଷାରେ ତତ୍ସମ ଶବ୍ଦର ପ୍ରଚଳନ କଥିତ ଅପେକ୍ଷା ଲିଖିତ ଭାଷାରେ ଅଧିକ । କେବଳ ଉଚ୍ଚାରଣ କ୍ଷେତ୍ରରେ ନୁହେଁ, ଲିଖିତ ରୂପରେ ଆମେ କେତେକ ତତ୍ସମ ଶବ୍ଦକୁ ପରିବର୍ତ୍ତିତ ରୂପ ଦେଇଥାଉଁ, ଯଥା :— ରଜକୀ ସ୍ଥାନରେ ରଜକନୀ; ପାଶ୍ଚାତ୍ତ୍ୟ ସ୍ଥାନରେ ପାଶ୍ଚାତ୍ୟ; ମାତାପିତୃହୀନ ସ୍ଥାନରେ ପିତୃମାତୃହୀନ । ଏ ପ୍ରକାର ବ୍ୟବହାର ଅଶୁଦ୍ଧ, ମାତ୍ର ଆମେ ଏହାକୁ ଅଭ୍ୟାସଗତ କରିନେଇଛୁ ।

ଓଡ଼ିଆ ଭାଷାରେ ତଦ୍‌ଭବ ଶବ୍ଦର ସଂଖ୍ୟା ତତ୍ସମ ଅପେକ୍ଷା ଅଧିକ । ଗ୍ରୀୟର୍‌ସନ୍ ଓ ଅନ୍ୟ କେତେକ ଇଉରୋପୀୟ ପଣ୍ଡିତ ତଦ୍‌ଭବ ଶବ୍ଦ ବିଚାରରେ ଅର୍ଦ୍ଧତତ୍ସମ (Semitatsama) ନାମରେ ଯେଉଁ ବିଭାଗ ସୃଷ୍ଟି କରିଅଛନ୍ତି ତାହା ଓଡ଼ିଆରେ ତଦ୍‌ଭବ ଶ୍ରେଣୀଭୁକ୍ତ ହେବା କଥା । ତଦ୍‌ଭବ ଶବ୍ଦଗୁଡ଼ିକ ପରିବର୍ତ୍ତନ ମଧ୍ୟ ଦେଇ ସଂସ୍କୃତରୁ ଆସିଥିଲେ ହେଁ ଅଧିକାଂଶ ସ୍ଥଳରେ ସେଗୁଡ଼ିକ ପ୍ରାକୃତିକ ବୈୟାକରଣିକଙ୍କ ମତରେ "ଦେଶୀ" ବିଭାଗର ଅନ୍ତର୍ଗତ । ଓଡ଼ିଶାରେ ଆର୍ଯ୍ୟଭାଷାର ପ୍ରସାର ପୂର୍ବରୁ ଯେଉଁ ସବୁ ଶବ୍ଦ ପ୍ରଚଳିତ ଥିଲା ସେସବୁକୁ "ଦେଶୀ" ରୂପରେ ଗ୍ରହଣ କରାଯାଇଥାଏ । କାରଣ, ସେସବୁ ଶବ୍ଦର ମୂଳ ସଂସ୍କୃତରେ ଉପଲଭ୍ୟ ନୁହେଁ । ସେସବୁ ଶବ୍ଦ ମଧ୍ୟରେ ବହୁ ଦ୍ରାବିଡ଼ ଓ ଆଦିବାସୀ ଭାଷାର ଶବ୍ଦ ରହିଅଛି । ତଦ୍‌ଭବ ଶବ୍ଦ ସହିତ ଦେଶୀ ଶବ୍ଦର ସମ୍ପର୍କ ଏତେ ନିବିଡ଼ ଯେ ଅନେକ କ୍ଷେତ୍ରରେ ଏହି ଦୁଇଟି ବିଭାଗକୁ ଏକ ପର୍ଯ୍ୟାୟଭୁକ୍ତ କରାଯାଇପାରେ । ଏ ବିଷୟରେ ଡ଼କ୍ଟର ସୁନୀତି କୁମାର ଚାଟାର୍ଜୀ ମତପ୍ରଦାନ କରି ଲେଖିଛନ୍ତି, "It would be convinient to treat that the desi words along with the tadbhava ones in discussing these elements in a N. I. A. speech, since they form part of the same inheri-tted stratum." (୫) ଓଡ଼ିଆ ଭାଷାରେ ତଦ୍‌ଭବ ଶବ୍ଦ ଓ ଦେଶୀ ଶବ୍ଦର ଦୃଷ୍ଟିରୁ ବିଚାର ଯୋଗ୍ୟ । ଆମର ଦୈନନ୍ଦିନ ଜୀବନରେ ଆମେ ହିନ୍ଦୀ, ... ...ର୍ସିକ, ତୁର୍କୀ,

(୫) The Origin and Development of the B... ...
Lan...

ପରିମାଣରେ ତଦ୍‌ଭବ ଶବ୍ଦ ବ୍ୟବହାର କରିଥାଉଁ । ଏହି ଶବ୍ଦଗୁଡ଼ିକ କାଳକ୍ରମେ ଧ୍ୱନିଗତ ପରିବର୍ତ୍ତନ ମଧ୍ୟ ଦେଇ ଆଧୁନିକ କାଳରେ ଓଡ଼ିଆ ଶବ୍ଦରେ ପରିଣତ ହୋଇଅଛି । ଓଡ଼ିଆ ଭାଷାରେ ତଦ୍‌ଭବ ଶବ୍ଦର ପରିବର୍ତ୍ତନ ଧ୍ୱନିଗତ ଓ ଉଚ୍ଚାରଣ ଭେଦରେ ୧୭୪ ଭାଗରେ ବିଭକ୍ତ କରାଯାଇପାରେ ।

ଓଡ଼ିଆ ଭାଷାରେ କେତେକ ଦ୍ରାବିଡ଼ ଶବ୍ଦ ସ୍ଥାନ ପାଇ ସମୟ କ୍ରମେ ପରିବର୍ତ୍ତିତ ରୂପ ଗ୍ରହଣ କରିଅଛି । ଓଡ଼ିଶାର ଲୋକମାନଙ୍କର ବ୍ୟବହାର, ଚାଲିଚଳନରୁ ଏବେ ମଧ୍ୟ ଓଡ଼ିଶାର ସାଧାରଣ ଜୀବନ ଉପରେ ଦକ୍ଷିଣ ଭାରତୀୟ ଜୀବନର ପ୍ରଭାବ ପରିଲକ୍ଷିତ ହୋଇ-ଥାଏ । ଇଂରେଜ ଶାସନ ପରେ ଓଡ଼ିଶାର ଲୋକମାନେ ପଡ଼ୋଶୀ ବଙ୍ଗୀୟ ପ୍ରଭାବକୁ କେତେକାଂଶରେ ଗ୍ରହଣ କରିଥିଲେ ହେଁ, ଓଡ଼ିଶା ସହିତ ଦାକ୍ଷିଣାତ୍ୟର ସମ୍ପର୍କ ଅତି ପ୍ରାଚୀନ । ପ୍ରାଚୀନ କାଳରୁ ଓଡ଼ିଆ ଭାଷାରେ ଦ୍ରାବିଡ଼ ଭାଷାର ବହୁ ଶବ୍ଦ ପ୍ରବେଶ କରିବା ନିତାନ୍ତ ସ୍ୱାଭାବିକ । ଗୁଣ, ବଳିବା, କାଡ଼ିଆ, ଭେଣ୍ଡା, କୁନି, ପଟ୍ଟ, ଅଟେଇ, ଆଡ଼ଖୁରି, ଗିନା, ଚୁଲେଇବା, ଅଡ଼େଇବା, ପାଗ, କସ୍ତୁଁ। ପ୍ରଭୃତି ବହୁ ଶବ୍ଦ ଦ୍ରାବିଡ଼ ଭାଷାରୁ ଆସି ଓଡ଼ିଆ ଭାଷାରେ ନିର୍ଦ୍ଦିଷ୍ଟ ରୂପ ଗ୍ରହଣ କରିଅଛି ।

ଓଡ଼ିଆ ଭାଷାରେ ବହୁ ଯୁଗ୍ମ ଶବ୍ଦର ବ୍ୟବହାର ଦେଖାଯାଏ । ଏହିସବୁ ଶବ୍ଦକୁ ଚାରିଭାଗରେ ବିଭକ୍ତ କରାଯାଇପାରେ, ଯଥା :—(୧) ପୂର୍ବପଦ ଅର୍ଥହୀନ—ପନିପରିବା, ଆଖପାଖ, ଅଙ୍କାବଙ୍କା, ଅନ୍ଧସନ୍ଧ ; (୨) ପରଶବ୍ଦ ଅର୍ଥହୀନ—କନ୍ଦାକଟା, ଧରାପରା, ଭୁଖା-ସୁଖା, ହସାବପନ ; (୩) ପୁନରୁକ୍ତ—ଅଧାଅଧି, ପାଖାପାଖି, ପୋଛାପୋଛି, ଲଗାଲଗି ; ଓ (୪) ବିପରୀତଧର୍ମୀ—ବସାଉଠା, ସାରଅସାର, ଭଲମନ୍ଦ, ଊଣାଅଧିକ । ଯୁଗ୍ମ ଶବ୍ଦ ମଧ୍ୟରେ ଅନେକ ସ୍ଥଳରେ ଅଣଓଡ଼ିଆ ଶବ୍ଦର ବ୍ୟବହାର ମଧ୍ୟ ଦେଖାଯାଏ ।

ଓଡ଼ିଆ ଭାଷାର ଶବ୍ଦଭଣ୍ଡାରକୁ ଅଷ୍ଟାଦଶ ଶତାବ୍ଦୀଠାରୁ ପାରସୀ ଓ ଆରବୀୟ ଶବ୍ଦ-ସମୂହ ପ୍ରବେଶଲାଭ କରିଥିବାର ଜଣାଯାଇଅଛି । ସାରଳାଦାସଙ୍କ ରଚନାରେ "ସୁରତାଣ" ଶବ୍ଦକୁ ଲକ୍ଷ୍ୟକରି ସେହି ସମୟରୁ ଓଡ଼ିଆ ଭାଷାରେ ପାରସୀ ଓ ଆରବୀୟ ଶବ୍ଦସମୂହର ପ୍ରବେଶକୁ ସ୍ୱୀକାର କରାଗଲେହେଁ ସେ ସମୟରେ ଯଥାର୍ଥରେ ଏସବୁ ଶବ୍ଦ ଅତ୍ୟନ୍ତ ଧୀର ମନ୍ଥର ଭାବରେ ଓଡ଼ିଆ ଭାଷାରେ ସ୍ଥାନ ପାଇଥିଲା (୭) । ପାରସୀ ଓ ଆରବୀୟ ଶବ୍ଦ ଆମ ଭାଷାରେ ଏତେ ପରିମାଣରେ ମିଶିଯାଇଛି ଯେ, ଆମେ କଥା କହିବା ସମୟରେ ପ୍ରାୟ ଏକ ଚତୁର୍ଥାଂଶ ସେହି ଶବ୍ଦ ବ୍ୟବହାର କରିଥାଉଁ । ଆମେ ଯେତେବେଳେ ସେହିସବୁ ଶବ୍ଦ ବ୍ୟବହାର କରୁ ସେତେବେଳେ ଆମେ ଜାଣି ନଥାଉ ଯେ, ସେଗୁଡ଼ିକ ପାରସୀ ବା ଆରବୀୟ ଶବ୍ଦ । ଆମର ଶବ୍ଦଭଣ୍ଡାରରେ ପ୍ରାୟ ୪୩୦ ପାରସୀ ଶବ୍ଦ ଏବଂ ୪୬୩ ଆରବୀୟ ଶବ୍ଦ ଅତି ସାଧାରଣ ଭାବରେ ବ୍ୟବହୃତ ହୋଇଥାଏ । ପାରସୀ ଏବଂ ଆରବୀୟ ଶବ୍ଦ ଆମ [illegible]ର ଲୋକମାନଙ୍କ ମୁଖରେ ଏତେ ବ୍ୟାପକ ହୋଇପଡ଼ିଥିଲା ଯେ, ମୁସଲମାନ ଶାସନର

The [illegible] Arabic Influence on Oriya— [illegible]uage [illegible]hanty and Dr. K. B. Tripathy—O.H.R.J. [illegible] Nos. 1 and 2.

ପରବର୍ତ୍ତୀ କାଳରେ ଯେତେବେଳେ ଏ ଦେଶରେ ଇଂରେଜ ରାଜତ୍ୱ ପ୍ରତିଷ୍ଠିତ ହେଲା ଓ ଇଂରେଜୀ ଭାଷା ପ୍ରସାରଲାଭ କଲା ସେତେବେଳେ ମଧ୍ୟ ଅଧିକାଂଶ ପାରସ୍ୟ ଓ ଆରବୀୟ ଶବ୍ଦ କୋର୍ଟକଚେରୀରେ, ସୈନ୍ୟବାହିନୀରେ ଓ ସାଧାରଣ ଜୀବନରେ ପ୍ରତିପତ୍ତି ବିସ୍ତାର କରିଥିଲା । ଏବେ ମଧ୍ୟ ସେହି ଶବ୍ଦଗୁଡ଼ିକ ଆମ ଭାଷାରାଜ୍ୟରେ ଅପ୍ରତିହତ ପ୍ରଭାବ ବିସ୍ତାର କରିଥିବାର ଦେଖାଯାଏ । ପାରସ୍ୟ ଭାଷା ଭାରତରେ ତୁର୍କୀମାନଙ୍କଦ୍ୱାରା ପ୍ରଚଳିତ ହୋଇଥିଲେ ହେଁ କେତେକ ସ୍ଥଳରେ ତୁର୍କୀ ଭାଷାର ଶବ୍ଦ ଆମେ ବ୍ୟବହାର କରିଥାଉ । ଓଡ଼ିଆ ଭାଷାରେ ତୁର୍କୀ ଶବ୍ଦର ପରିମାଣ ଯଥେଷ୍ଟ କମ୍ । ଉର୍ଦ୍ଦୁ (ବଜାର), କୁଲି, କଇଞ୍ଚି, ବନ୍ଧୁକ, ବାରୁଦ୍ (ବାରୁଦ) ବୁଗ୍‌ଚ୍ (ବୁକୁଚ୍) ବବର୍ଚ୍ଚି, ସୁରାଗ୍ (ସୁରାକ) ଭଳି କେତେକ ତୁର୍କୀ ଶବ୍ଦ ଆମେ ବ୍ୟବହାର କରିଥାଉ ।

ଓଡ଼ିଆ ଭାଷାରେ ପର୍ତ୍ତୁଗୀଜ, ଫରାସୀ ଓ ଡଚ୍ ଶବ୍ଦର ପ୍ରଚଳନ ଅତି କମ୍ । ବାଣିଜ୍ୟ ଉଦ୍ଦେଶ୍ୟରେ ଆସିଥିବା ଏହି ଭାଷାଭାଷୀ ବଣିକମାନେ ଓଡ଼ିଶାରେ ସେମାନଙ୍କର କେତେକ ଶବ୍ଦକୁ ଛାଡ଼ିଦେଇ ଯାଇଥିବାର ଜଣାଯାଏ । ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳ ବ୍ୟତୀତ ଅନ୍ୟ ଅଂଶରେ ଏହି ଶବ୍ଦର ପ୍ରଚଳନ ଦେଖାଯାଏ ନାହିଁ ବୋଲି କୁହାଯାଇ ପାରେ । ୧୫୧୪ ସାଲରେ ପର୍ତ୍ତୁଗୀଜମାନେ ସୁବର୍ଣ୍ଣରେଖା ନଦୀର ମୁହାଣରେ ପିପିଲି ନିକଟରେ ସେମାନଙ୍କର ବାଣିଜ୍ୟକେନ୍ଦ୍ର ପ୍ରତିଷ୍ଠା କରିଥିଲେ । ବାଲେଶ୍ୱରଠାରୁ କୁଜଙ୍ଗ, ହରିଶପୁର ଓ ମରିଚପୁର ପର୍ଯ୍ୟନ୍ତ ଉପକୂଳ ଅଞ୍ଚଳରେ ପର୍ତ୍ତୁଗୀଜ ବଣିକମାନେ ଚଳପ୍ରଚଳ ହେଉଥିଲେ । ସେମାନେ ଓଡ଼ିଶାର ଉପକୂଳ ଅଞ୍ଚଳରେ ଏପରି ପ୍ରଭାବ ବିସ୍ତାର କରିଥିଲେ ଯେ, ୧୬୩୩ ସାଲରେ ଇଂରେଜମାନେ ଯେତେବେଳେ କୁଜଙ୍ଗ ବାଟେ ଓଡ଼ିଶାକୁ ପ୍ରବେଶ କରିବାର ଉଦ୍ୟମ କରିଥିଲେ ସେତେବେଳେ ପର୍ତ୍ତୁଗୀଜମାନେ ସେମାନଙ୍କୁ ବାଧା ଦେଇ-ଥିଲେ (୭) । ଓଡ଼ିଆ ଭାଷାରେ ୧୧୭ ଗୋଟି ପର୍ତ୍ତୁଗୀଜ ଶବ୍ଦ ରହିଅଛି ବୋଲି ଅଧ୍ୟାପକ ଖଗେଶ୍ୱର ମହାପାତ୍ର ଆଲୋଚନା କରି ଦେଖାଇ ଦେଇଅଛନ୍ତି (୮) ।

ଓଡ଼ିଆ ଭାଷାରେ ଫରାସୀ ଶବ୍ଦର ବହୁଳ ପ୍ରଚଳନ ନାହିଁ । ଡକ୍ଟର ସୁନୀତି କୁମାର ଚାଟାର୍ଜୀଙ୍କ ମତାନୁସାରେ କାର୍ତ୍ତୁଜ, କୁପନ ଓ ଅଂଗ୍ରେଜ ପ୍ରଭୃତି ଫରାସୀ ଶବ୍ଦ ବଙ୍ଗଳା ଭାଷାରେ ପ୍ରଚଳିତ (୯) । ଏହି ଶବ୍ଦଗୁଡ଼ିକ ମଧ୍ୟ ଓଡ଼ିଆ ଭାଷାରେ ବ୍ୟବହୃତ ହେବାର ଦେଖାଯାଏ । ଓଡ଼ିଆ ଭାଷାରେ ଡଚ୍ ଶବ୍ଦଭାବରେ ଇସ୍କାପାନ, ଚିଡ଼ିତନ୍, ରୁହିତନ୍ ଓ ତୁରୁଫ୍ ପ୍ରଭୃତି ଶବ୍ଦ ବ୍ୟବହୃତ ହେବାର ଦେଖାଯାଏ । ଏହି ଶବ୍ଦଗୁଡ଼ିକ ମଧ୍ୟ ବଙ୍ଗଳା ଭାଷାରେ ବ୍ୟବହୃତ ହେବା ବିଷୟ ଡକ୍ଟର ଚାଟାର୍ଜୀ ପ୍ରକାଶ କରିଅଛନ୍ତି ।

---

(୭) ଓଡ଼ିଆ ଭାଷାର ଉତ୍ପତ୍ତି ଓ କ୍ରମବିକାଶ—ଡକ୍ଟର ବଂଶୀଧର ମହାନ୍ତି ୪ ଓ ୫ ପୃ । ଏହାର

(୮) ଓଡ଼ିଆ ଭାଷାରେ ପର୍ତ୍ତୁଗୀଜ ପ୍ରଭାବ—କୋଣାର୍କ—ତୃତୀୟ ବର୍ଷ ଶବ୍ଦ ୫୩%, —୧ମ ଓ ୨ୟ ଷଣ୍ମାସିକ, ତୁର୍କୀ,

(୯) The Origin and Development of the ___ I(୯)

ଇଂରେଜମାନେ ଊନବିଂଶ ଶତାବ୍ଦୀର ଆରମ୍ଭରେ ଓଡ଼ିଶା ଅଧିକାର କରିଥିଲେ । ଓଡ଼ିଶାରେ ଇଂରେଜ ଶାସନ ଓ ଇଂରେଜୀ ଶିକ୍ଷାର ପ୍ରବର୍ତ୍ତନ ଫଳରେ ଇଂରେଜୀ ଭାଷା ପ୍ରସାରଲାଭ କରିଅଛି । ଇଂରେଜୀ ଭାଷା ଏକ ବିଶ୍ୱବିଖ୍ୟାତ ଭାଷା ଭାବରେ ନିଜର ପ୍ରଭାବ ଏ ଦେଶରେ ବିସ୍ତାର କରିଅଛି । ଓଡ଼ିଶାର ଲୋକମାନେ ଇଂରେଜୀ ଭାଷା ସହିତ ଏପରି ଭାବରେ ଜଡ଼ିତ ହୋଇ ପଡ଼ିଅଛନ୍ତି ଯେ, ସେମାନଙ୍କର ଦୈନନ୍ଦିନ ଜୀବନରେ ସେମାନେ ଅଧିକାଂଶ ସ୍ଥଳରେ ଇଂରେଜୀ ଶବ୍ଦ ବ୍ୟବହାର କରିବାର ଦେଖାଯାଏ । କେତେକ ଇଂରେଜୀ ଶବ୍ଦ ଆମର ଶବ୍ଦଭଣ୍ଡାରରେ ପ୍ରବେଶ କରିବା ଫଳରେ ସେଗୁଡ଼ିକ ପରିବର୍ତ୍ତିତ ରୂପ ନେଇଅଛି । ୧୮୦୩ ସାଲରେ ଏ ଦେଶରେ ଇଂରେଜ ଶାସନ ପ୍ରତିଷ୍ଠିତ ହେଲେହେଁ ୧୮୪୩ ସାଲରେ ଇଂରେଜୀ କୋର୍ଟ କଚେରୀର ଭାଷା ଭାବରେ ସ୍ୱୀକୃତିଲାଭ କଲା । ୧୮୬୦ ସାଲ ବେଳକୁ ଓଡ଼ିଶାରେ ଇଂରେଜୀ ଭାଷାର ପ୍ରଭାବ ଦୃଷ୍ଟିଗୋଚର ହେଲା । ସେହି ସମୟରୁ ଇଂରେଜୀ ଭାଷା ଓଡ଼ିଆ ଭାଷାକୁ ପ୍ରଭାବିତ କରିବାପାଇଁ ସମର୍ଥ ହେଲା । ଇଂରେଜୀ ଭାଷାର ଆଭିଜାତ୍ୟ ଓ ସରକାରୀ ଭାଷାର ସମ୍ମାନ ଦୃଷ୍ଟିରୁ ଓଡ଼ିଆଭାଷୀମାନେ ସେମାନଙ୍କର କଥାଭାଷାରେ ଇଂରେଜୀ ଶବ୍ଦ ବ୍ୟବହାର କଲେ । ଏହା ଫଳରେ ବହୁ ଇଂରେଜୀ ଶବ୍ଦ ଅପଭ୍ରଷ୍ଟ ହୋଇ ବର୍ତ୍ତମାନ ପର୍ଯ୍ୟନ୍ତ ପ୍ରଚଳିତ ହେଉଅଛି (୧୦) ।

ଓଡ଼ିଆ ଭାଷାର ଶବ୍ଦଭଣ୍ଡାର ବିଷୟରେ ଏହାହିଁ ଏକ ସଂକ୍ଷିପ୍ତ ବିବରଣୀ । ଓଡ଼ିଆ ଭାଷାର ଶବ୍ଦାବଳୀର ରୂପ ବିଶ୍ଳେଷଣ ଏପର୍ଯ୍ୟନ୍ତ ସ୍ୱତନ୍ତ୍ର ଭାବରେ କରାଯାଇ ନାହିଁ ବା ଓଡ଼ିଆ ଭାଷାର ଏକ ଅଭିଧାନ (Standard Dictionary) ଏପର୍ଯ୍ୟନ୍ତ ସଂକଳିତ ହୋଇନାହିଁ । ଓଡ଼ିଆ ଭାଷାତତ୍ତ୍ୱ ଆଲୋଚନା ସମ୍ପର୍କରେ ଏପ୍ରକାର ଏକ ଅଭିଧାନର ଆବଶ୍ୟକତା ଅପରିହାର୍ଯ୍ୟ ମନେହୁଏ ।

ଭାଷାତତ୍ତ୍ୱବିଦ୍ ପଣ୍ଡିତମାନେ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳ ବା କଟକ ଜିଲାର ଆଖପାଖ ଅଞ୍ଚଳରେ ବ୍ୟବହୃତ ଭାଷାକୁ ସାଧୁଭାଷା (Standard Oriya) ଭାବରେ ଗ୍ରହଣ କରିଥାଆନ୍ତି । ଓଡ଼ିଶାର ପଶ୍ଚିମାଞ୍ଚଳ, ଦକ୍ଷିଣାଞ୍ଚଳ ଓ ଉତ୍ତର ପୂର୍ବାଞ୍ଚଳର କଥିତ ଭାଷା ସାଧୁଭାଷାଠାରୁ ବହୁଗୁଣରେ ପୃଥକ । ପଶ୍ଚିମାଞ୍ଚଳର କଥିତ ଭାଷା ସମ୍ବଲପୁରୀ ଓ ଲରିଆ । ଦକ୍ଷିଣାଞ୍ଚଳର କଥିତ ଭାଷା ଦକ୍ଷିଣଭାରତୀୟ ଭାଷାଦ୍ୱାରା ପ୍ରଭାବିତ । ଦକ୍ଷିଣ ପଶ୍ଚିମାଞ୍ଚଳର ଭାଷା ଭତ୍ରୀ ଓ ଝରିଆ । ଉତ୍ତର ପୂର୍ବାଞ୍ଚଳର କଥିତ ଭାଷା ବଙ୍ଗଳା ଭାଷାଦ୍ୱାରା ପ୍ରଭାବିତ । ଏହିସବୁ ଅଞ୍ଚଳର କଥିତ ଭାଷାରେ ବହୁ ଅଣଓଡ଼ିଆ ଶବ୍ଦ ଓଡ଼ିଆ ଶବ୍ଦ ଭାବରେ ବ୍ୟବହୃତ ହୋଇଥାଏ । ଏହିସବୁ ଶବ୍ଦଗୁଡ଼ିକୁ ପରୀକ୍ଷା କରାଯିବାର ଆବଶ୍ୟକତା ରହିଛି ।

---

Loan-words in Oriya—D. N. Mohanty—
Vol VIII parts 3 and 4, Oct. 1958 and

# ଓଡ଼ିଆ ଭାଷାରେ ପ୍ରଚଳିତ କେତେକ ବିଦେଶୀ ଶବ୍ଦର ବ୍ୟୁତ୍ପତ୍ତିକ୍ରମ

(ଇଂରେଜୀ, ଆରବିକ, ପାରସିକ, ତୁର୍କୀ ଓ ପର୍ତ୍ତୁଗୀଜ ବ୍ୟତୀତ)

**ଅଧ୍ୟାପକ ବାସୁଦେବ ସାହୁ**
ସ୍ନାତକୋତ୍ତର ଓଡ଼ିଆ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର

ପୃଥିବୀରେ ଯେତେ ଭାଷା ଅଛି, ସେ ସବୁର ତାତ୍ତ୍ୱିକ ଓ ଐତିହାସିକ ଅନୁଶୀଳନ ବାସ୍ତବରେ ଯେତିକି କଷ୍ଟସାଧ୍ୟ, ସେତିକି ଚିତ୍ତାକର୍ଷକ ଓ ମନୋରଞ୍ଜକ । ଗୋଟିଏ ଭାଷାରେ ପ୍ରଚଳିତ ଓ ସେହି ଭାଷାର ମୌଳିକ ବିଭବରୂପେ ବିବେଚିତ ବହୁ ଶବ୍ଦ ଯେ ବୈଦେଶିକ, ତାହା ହିଁ ଭାଷାରେ ଏକ ବିସ୍ମୟକର ଓ କୌତୂହଳଉଦ୍ଦୀପକ ବିଭବ । ଶବ୍ଦର ଜନନୀ ସିନା ଗୋଟିଏ ଭାଷା, ତାର ଧାତ୍ରୀ କିନ୍ତୁ ଅନେକ ଭାଷା । ଗୋଟିଏ ଭାଷାର ଶବ୍ଦ ଅସଂଖ୍ୟ ଭାଷା ପରିବାରରେ ତାର ମୈତ୍ରୀ ସ୍ଥାପନ କରି ଅତି ଆପଣାର ହୋଇଯାଏ; ସମସ୍ତଙ୍କର 'ସ୍ୱ' ରୂପେ ହୋଇଯାଏ ସ୍ୱାଗତଯୋଗ୍ୟ ।

ଗୋଟିଏ ଜାତି ଉପରେ ବୈଦେଶିକ ଜାତି ବା ଜାତିମାନଙ୍କର ଆକ୍ରମଣ ବା ଶାସନ ଫଳରେ ଦେଖାଦିଏ ରାଜନୀତିକ, ସାମାଜିକ, ଧାର୍ମିକ ଓ ଭାଷାଗତ ପରିବର୍ତ୍ତନ । ରାଜନୀତିକ, ସାମାଜିକ ଓ ଧାର୍ମିକ ପରିବର୍ତ୍ତନ ଜାତିର ଆତ୍ମା ଉପରେ ଯେତିକି ପ୍ରଭାବ ବିସ୍ତାର ନ କରେ, ତତୋଧିକ ପ୍ରଭାବ ବିସ୍ତାର କରେ ଭାଷାଗତ ପରିବର୍ତ୍ତନ । ଭାରତବର୍ଷରେ ଏହି କାରଣରୁ ଭାଷାରାଜ୍ୟରେ ବହୁ ପରିବର୍ତ୍ତନ ଘଟିଯାଇଛି ଓ ଭାରତୀୟ ଆତ୍ମାର ସ୍ୱରୂପକୁ ବଦଳାଇ ଦେଇଛି । ଭିନ୍ନ ଭିନ୍ନ ଜାତି ସହିତ ସମ୍ପର୍କ ଓ ସଂସର୍ଗ ଫଳରେ ସ୍ୱଭାବ ସହିତ ଭାଷାର ଆଦାନ ପ୍ରଦାନ ହୁଏ । ବିଜେତା ଓ ବିଜିତ ଉଭୟ ପରସ୍ପରର ଭାଷାଦ୍ୱାରା ପ୍ରଭାବିତ ହୁଅନ୍ତି, ଯଦିଓ ବିଜିତ ଉପରେ ବିଜେତାର ଏ ପ୍ରଭାବ ଅନେକାଂଶରେ ବେଶୀ । ଭାଷାରେ ନିରନ୍ତର ଏଇ ନେ'ଣ ଦେ'ଣ ଫଳରେ ଭାଷା ଯେତିକି ଜଟିଳ ହୁଏ, ସେତିକି ବିଚିତ୍ର ଓ ସମୃଦ୍ଧ ହୁଏ । ବର୍ତ୍ତମାନ ବିଶ୍ୱର ସର୍ବସମୃଦ୍ଧ ଇଂରେଜୀ [illegible] ଆହରଣରେ ଶ୍ରେଷ୍ଠ । ଏହାର ଶବ୍ଦ-ଭଣ୍ଡାରର ଅଧିକାଂଶ ଭାଗ ବୈଦେଶିକ । ଇଂରେଜୀ ଭାଷାରେ ଫରାସୀ ଶବ୍ଦ ୪୦%, ଟ୍ୟୁଟନିକ ୩୧% ଓ ଗ୍ରୀକ୍ ୧୦% । (୧) ଡାଟ୍ୟ୍, ଫରାସୀ, ଆରବିକ, ପାରସିକ, ତୁର୍କୀ,

---

(୧) ମଣିପୁର ଭାଷା—ଗୋଲକେ ବିହାରୀ ଧଳ (ପୃ ୧୬ ଓ ୫୯)

ସ୍ପେନୀୟ, ଓଲନ୍ଦାଜ, ଚୀନା, ଭାରତୀୟ ଏପରିକି ଅନେକ ଓଡ଼ିଆ ଶବ୍ଦ ମଧ୍ୟ ଇଂରେଜୀ ଭାଷାରେ ସାଦର ସ୍ଥାନ ପାଇପାରିଛି । ଇଂରେଜୀ ଭାଷା କ୍ଷେତ୍ରରେ କେବଳ ନୁହେଁ, ପୃଥିବୀର ଯେ କୌଣସି ସଚେତନ, ସଜୀବ ଓ ଚଳମାନ ଭାଷା କ୍ଷେତ୍ରରେ ମଧ୍ୟ ଏହା ଏକ ନିର୍ଦ୍ଦିଷ୍ଟ ସତ୍ୟ, ଯଦ୍ୟପି ପରିମାଣରେ ତାରତମ୍ୟ ଦୃଷ୍ଟିଗୋଚର ହୁଏ ।

ଓଡ଼ିଶା ଯୁଗେ ଯୁଗେ ବିବିଧ କାରଣରୁ ଗ୍ରୀକ୍, ଆରବିକ, ପାରସିକ, ତୁର୍କୀ, ପର୍ତ୍ତୁଗୀଜ, ଓଲନ୍ଦାଜ, ଫରାସୀ, ଇଂରେଜୀ ପ୍ରଭୃତି ଜାତିମାନଙ୍କର ସଂସ୍ପର୍ଶରେ ଆସିଛି ଓ ଫଳତଃ ଓଡ଼ିଆ ଭାଷା ସେହିସବୁ ଜାତିର ଭାଷାମାନଙ୍କଦ୍ୱାରା ଊଣାଅଧିକେ ପ୍ରଭାବିତ ହୋଇଛି । କେଉଁ ଭାଷାର ଶାବ୍ଦିକ, ରୂପଗତ, ଅର୍ଥଗତ, ଧ୍ୱନିଗତ ଓ ବ୍ୟାକରଣଗତ ପ୍ରଭାବକୁ ସ୍ୱୀକାର କରିଛି ତ କେଉଁ ଭାଷାର ଏଥିମଧ୍ୟରୁ ଏକ ବା ଏକାଧିକ ପ୍ରଭାବକୁ ମାନି ନେଇଛି । ଉପର୍ଯ୍ୟୁକ୍ତ ଜାତିମାନଙ୍କ ଜରିଆରେ ସେମାନଙ୍କ ଭାଷା ବ୍ୟତୀତ ପୃଥିବୀର ଅନ୍ୟାନ୍ୟ ଭାଷାର ଏକ ବା ଅନେକ ଶବ୍ଦ ମଧ୍ୟ ଓଡ଼ିଆ ଭାଷାରେ ଅନୁପ୍ରବେଶ କରିଅଛି । ଏହିସବୁ ଭାଷାର ପ୍ରଭାବ ଏକ ବିରାଟ ଗବେଷଣାର ଉପଜୀବ୍ୟ ବିଷୟ ।

ଓଡ଼ିଆ ଭାଷାରେ ଯାବନିକ (ଆରବିକ, ପାରସିକ, ତୁର୍କୀ, ପଠାଣ) ଭାଷାର ଶାବ୍ଦିକ ପ୍ରଭାବ ସର୍ବାଧିକ ଓ ଇଂରେଜୀ ଭାଷାର ଆର୍ଥିକ ପ୍ରଭାବ ସର୍ବାଧିକ । ଯାବନିକ ଭାଷାର ପ୍ରାୟ ଛଅହଜାର ଶବ୍ଦ ଓ ଇଂରେଜୀ ଭାଷାର ଅନ୍ୟୂନ ତିନିହଜାର ଶବ୍ଦ ଓଡ଼ିଆ ଭାଷାରେ ପ୍ରଚଳିତ । ଇଂରେଜୀ ଓ ଯାବନିକ ଭାଷାକୁ ଛାଡ଼ିଦେଲେ ଓଡ଼ିଆ ଶବ୍ଦଭଣ୍ଡାରକୁ ପର୍ତ୍ତୁଗୀଜ ଭାଷାର ଅବଦାନ ଉଲ୍ଲେଖଯୋଗ୍ୟ । ଏହି ଭାଷାର ଶତାଧିକ ଶବ୍ଦ ଓଡ଼ିଆ ଭାଷାରେ ସ୍ୱଚ୍ଛନ୍ଦରେ ପ୍ରଚଳିତ ହୋଇପାରିଛି । ଓଡ଼ିଆ ଭାଷାରେ ଏହି ତିନି ଭାଷାର ପ୍ରଭାବ ସମ୍ପର୍କରେ ଏ ଲେଖକର ତିନୋଟି ପ୍ରବନ୍ଧରେ ଆଲୋଚିତ ହୋଇଛି । (୨) ଏହି ତିନୋଟି ଭାଷାର ଶାବ୍ଦିକ ପ୍ରଭାବ ବ୍ୟତୀତ ପୃଥିବୀର ଅନ୍ୟାନ୍ୟ ଭାଷାମାନଙ୍କର ଯେଉଁ ଶାବ୍ଦିକ ପ୍ରଭାବ ଓଡ଼ିଆ ଭାଷାକୁ ବିଭବାନ୍ୱିତ କରିଛି ତାହାର ଉପରେ ସଂକ୍ଷିପ୍ତ ଆଲୋକପାତ କରିବା ଏ ପ୍ରବନ୍ଧର ଲକ୍ଷ୍ୟ ।

ଏ କଥା ଆମକୁ ନିଶ୍ଚୟ ସ୍ୱୀକାର କରିବାକୁ ପଡ଼ିବ ଯେ ଏ ପ୍ରକାର ବିଦେଶୀ ଶବ୍ଦ ଓଡ଼ିଆ ଭାଷାକୁ ପ୍ରତ୍ୟକ୍ଷ ଭାବରେ ଯେତିକି ପରିମାଣରେ ନ ଆସିଛି, ତାହାଠାରୁ ଅଧିକ ପରିମାଣରେ ଆସିଛି ପରୋକ୍ଷ ଭାବରେ । ଅଧିକାଂଶ ଶବ୍ଦ ସଂସ୍କୃତ ମାଧ୍ୟମରେ ଓଡ଼ିଆ ଭାଷାରେ ପ୍ରଚଳିତ ହୋଇଛି, କ୍ୱଚିତ୍ ପ୍ରାନ୍ତୀୟ ଭାଷାମାନଙ୍କ ମାଧ୍ୟମରେ ଓ କେତେକ

---

(୨) (କ) ଓଡ଼ିଆ ଭାଷାରେ ବିଦେଶୀ ଭାଷାର ପ୍ରଭାବ (କେବଳ ଯାବନିକ)—ପାଠଚକ୍ର ପ୍ରବନ୍ଧାବଳୀ, ୧୯୭୦, ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ ।

(ଖ) ଓଡ଼ିଆ ଭାଷାରେ ବିଦେଶୀ ଭାଷାର ପ୍ରଭାବ (ପର୍ତ୍ତୁଗୀଜ ଶବ୍ଦ—ଡଗର, ମେ, ୧୯୭୦ ।

(ଗ) ଓଡ଼ିଆ ଭାଷାରେ ବିଦେଶୀ ଭାଷାର ପ୍ରଭାବ (ଇଂରେଜୀ ସହ ଅନ୍ୟାନ୍ୟ)—ଉତ୍କଳ ସାହିତ୍ୟ ସମାଜ, ହୀରକ ଜୟନ୍ତୀ ସ୍ମରଣିକା ।

ପ୍ରତ୍ୟକ୍ଷ ଭାବରେ ଓଡ଼ିଆ ଭାଷାକୁ ଆସିଛି । ଅନେକ ଶବ୍ଦ ଇଂରେଜୀ, ପର୍ତ୍ତୁଗୀଜ ଅଥବା ଯାବନିକ ଭାଷା ମାଧ୍ୟମରେ ମଧ୍ୟ ଓଡ଼ିଆ ଭାଷାରେ ସ୍ଥାନ ପାଇଛି । ଓଡ଼ିଆ ଭାଷା କେତେକ କ୍ଷେତ୍ରରେ ଏଗୁଡ଼ିକର ସଂସ୍କୃତ, ଇଂରେଜୀ ଆଦି ରୂପାନ୍ତରକୁ ଗ୍ରହଣ କରିଛି ତ କେତେକ କ୍ଷେତ୍ରରେ ନିଜ ରୂପରେ ସେଗୁଡ଼ିକୁ ପ୍ରଭାବିତ କରିଛି । ଅନେକ ବିଦେଶୀ ଶବ୍ଦ ଭାରୋପୀୟ ଭାଷା ପରିବାରର ମୂଳନିବାସୀ ହୋଇଥିବାରୁ ଏହି ପରିବାରର ଏକାଧିକ ଭାଷାରେ ଏହାର ରୂପ ରୂପାନ୍ତର ଦୃଷ୍ଟିପଥାରୂଢ଼ ହୁଏ, ଯଥା :—ସଂସ୍କୃତ ଭାର, ଆଇରିସ୍ ଫେର, ଲାଟିନ୍ ଭିଇର, ଜର୍ମାନ୍ ବେର ଇତ୍ୟାଦି ।

## ଓଡ଼ିଆ ଭାଷାରେ ସୁମେରୀୟ ଶବ୍ଦ :—

ସୁମେରୀୟମାନେ ହେଉଛନ୍ତି ପୃଥିବୀର ଅନ୍ୟତମ ପ୍ରାଚୀନତମ ସଭ୍ୟଜାତି । ଖ୍ରୀଷ୍ଟ-ପୂର୍ବ ୭୦୦୦ ବର୍ଷ ପୂର୍ବେ ଏମାନଙ୍କ ସଭ୍ୟତାର ଅଭ୍ୟୁଦୟ ଦେଖାଦେଇଥିଲା । (୩) ଭାରୋପୀୟମାନେ ଏମାନଙ୍କ ସମ୍ପର୍କରେ ଆସିବା ଫଳରେ ଏମାନଙ୍କର ସଭ୍ୟତା ଓ ଭାଷା-ଦ୍ୱାରା ଅନେକ ପରିମାଣରେ ପ୍ରଭାବିତ ହେଲେ । ସୁମେରୀୟମାନେ ଗୋ-ପାଳନ କରୁଥିଲେ । ଭାରୋପୀୟମାନେ ଏମାନଙ୍କ ସମ୍ପର୍କରେ ଆସି ଗୋଗୋଷ୍ଠ ସହିତ ପରିଚିତ ହେଲେ ଓ ଏହାର ଉପଯୋଗ ଶିକ୍ଷା କଲେ । ସ୍ୱଭାବତଃ ଗାଈ, ବଳଦ ଇତ୍ୟାଦିର ଦ୍ୟୋତକ ଶବ୍ଦ ଭାରତୀୟମାନେ ସୁମେରୀୟମାନଙ୍କଠାରୁ ଗ୍ରହଣ କରିଛନ୍ତି । ଗାଈ, ବଳଦ ପାଇଁ ପ୍ରାଚୀନ ସୁମେରୀୟ ଶବ୍ଦ ଥିଲା **ଗୁଦ୍** । ପରବର୍ତ୍ତୀ କାଳରେ 'ଦ୍' ଧ୍ୱନି ଲୋପ ପାଇବାରୁ 'ଗୁ' ରହିଲା । ଏହି ଶବ୍ଦ ମୂଳ ଭାରୋପୀୟ ଭାଷାକୁ ଆସି **ଗ୍ୱାଉ** ରୂପ ଧାରଣ କଲା ଯହିଁରୁ ବ୍ୟୁତ୍ପନ୍ନ ହେଲା ସଂସ୍କୃତ **ଗୌ**, ଗ୍ରୀକ୍ **ବାଉସ୍**, ଲାଟିନ୍ **ବୋସ୍**, କେଲ୍ଟିକ୍ **ବୋ**, ପ୍ରାଚୀନ ଉଚ୍ଚ ଜର୍ମାନ୍ **କୁବୋ**, ଇଂରାଜୀ **କାଓ**, ଆର୍ମେନିୟନ୍ **କୋଉ**, ପ୍ରାଚୀନ ରୁଷୀ **ଗୋଓ୍ୱ**, ଫାରସୀ **ଗାଓ୍ୱ**, ଲେଟିସ୍ **ଗୁଓଉସ୍** । ଓଡ଼ିଆ **ଗୋ, ଗୋରୁ**, ସଂସ୍କୃତ **'ଗୌ'**ରୁ ଜନ୍ମଲାଭ କରିଥିଲେ ମଧ୍ୟ ଏହାର ଆଦିମତମ ବ୍ୟୁତ୍ପତ୍ତିଉତ୍ସ ହେଉଛି ସୁମେରୀୟ **ଗୁଦ୍** ।

ଓଡ଼ିଆ **ପରଶୁ** ବା **ଫାର୍ସା** ସଂସ୍କୃତ **'ପରଶୁ'**ରୁ ଆସିଛି ବୋଲି ଗୃହୀତ ହୋଇଥିଲେ ହେଁ ସୁମେରୀୟ ଭାଷାରେ ଏହାର ମୂଳ ଉତ୍ସ ନିହିତ ରହିଛି । ମୂଳ ଶବ୍ଦଟି ହେଉଛି ସୁମେରୀୟ **ବଲଗ** (ଅର୍ଥ—କୁରାଢ଼ି) । ଏହା ଅକ୍କାଦୀ ଭାଷାକୁ ଆସିଲାବେଳେ ବ ଓ ଗ ଅଘୋଷୀକୃତ ହୋଇ ଯଥାକ୍ରମେ ପ ଓ କ ରୂପ ଧାରଣ କଲା ଓ ଫଳରେ ବଲଗ>ପିଲକ୍କୁ । ଅକ୍କାଦୀରୁ ଭାରୋପୀୟ ମୂଳ ଭାଷାକୁ ଆସିଲାବେଳେ ସମ୍ଭବତଃ ଏହାର ରୂପ ଥିଲା **ପେଲେକୁ** । ଗ୍ରୀକ୍‌ରେ ଏହାର ରୂପ ହୋଇଛି **ପେଲେକୁସ୍** ଏବଂ ସଂସ୍କୃତରେ ଏହାର ରୂପ ହୋଇଛି **ପରଶୁ** (ଲ>ର, ରଲୟୋରଭେଦଃ; କ>ଶ, ଯଥା :—ଲାଟିନ୍ କେଣ୍ଟୁମ୍>ସଂସ୍କୃତ ଶତମ୍) ।

---

(୩) The Encyclopaedia Americana, 1944, Volume 25, Page 12.

ଓଡ଼ିଆ ଲୁହା, ସଂସ୍କୃତ **ଲୋହା** ବା **ଲୋହ**ରୁ ସୃଷ୍ଟ ହୋଇଥିଲେ ହେଁ ମୂଳତଃ ଏହା ଏକ ସୁମେରୀୟ ଶବ୍ଦ । ସୁମେରୀୟ ଶବ୍ଦ **ଉରୁଦୁ**ର ଅର୍ଥ ହେଉଛି ତମ୍ବା । ଯୁରୋପୀୟମାନେ ସୁମେରୀୟମାନଙ୍କର ସମ୍ପର୍କରେ ଆସିବା ପୂର୍ବରୁ ତମ୍ବାର ବ୍ୟବହାର ସମ୍ପର୍କରେ ଅପରିଚିତ ଥିଲେ । ଏମାନେ ଏହି ଶବ୍ଦକୁ ଗ୍ରହଣ କରିବା ପରେ ଏହାର ରୂପ ସମ୍ଭବତଃ ଥିବ ✳ **ଉରୁଧ,** କ୍ରମେ ଏହାର ବ୍ୟୁତ୍ପତ୍ତିକ୍ରମ ହୋଇଥିବ—✳ ରଉଧ୍ (ବର୍ଣ୍ଣବିପର୍ଯ୍ୟୟ ଓ ସ୍ୱରସମୀଭବନ)>✳ ରୋଧୁ (ସନ୍ଧି)>✳ ରୋଧ (ପ୍ରାନ୍ତ 'ଉ'ର ଲୋପ) । ଏହାର ଅର୍ଥ ପ୍ରଥମେ ତମ୍ବା ଥିଲେ ହେଁ ଅର୍ଥ-ପ୍ରସାର ଘଟି ଏହା ତମ୍ବା ରଙ୍ଗ, ଲାଲ, ଲାଲ ବସ୍ତୁ ଇତ୍ୟାଦିକୁ ବୁଝାଇଲା । ଇଂରାଜୀ ରେଡ୍, ଜର୍ମାନ ରୋଟ୍, ଡଚ୍ ରୁଡ୍ ଏବଂ ସଂସ୍କୃତ ରୁଧିର ଏହି ରୋଧ ଶବ୍ଦରୁ ବିକଶିତ ହୋଇଅଛି । ଯୁରୋପୀୟ ଭାଷାରୁ ସଂସ୍କୃତ ଭାଷାକୁ ଏହାର ବିକାଶ-କ୍ରମ ଏହିପରି ହୋଇପାରେ :—

✳ ରୋଧୁକ (ସ୍ୱାର୍ଥେ 'କ' ପ୍ରତ୍ୟୟ)>✳ ଲୋଧୁକ (ରଲୟୋରଭେଦଃ)> ଲୋହୁକ (ଧ>ହ ଯଥା—ମଧୁ>ମହୁ, ଦଧି>ଦହି)>ଲୋହୁଅ>ଲୋହୁ>ଲୋହ ବା ଲୋହା ।

ସଂସ୍କୃତ ଲୋହା>ଓଡ଼ିଆ ଲୁହା (ଓ>ଉ, ଯଥା—ଗୋଶାଳା>ଗୁହାଳ, ସ୍ରୋତ—ସୁଅ)

ସେହିପରି ଓଡ଼ିଆ **ତାରା** (ସଂ. ତାରା) ଶବ୍ଦର ମୂଳ ସୁମେରୀୟ ଭାଷାରେ ଅନୁସନ୍ଧେୟ । ସୁମେରୀୟ ଶବ୍ଦଟି ହେଉଛି **ଅସ୍ତେର୍** । ସୁମେରୀୟମାନେ ଜ୍ୟୋତିଷଶାସ୍ତ୍ରରେ ଅତୀବ ପାରଙ୍ଗମ ଥିଲେ ଓ ଏ କ୍ଷେତ୍ରରେ ବିଶ୍ୱର ଅନେକ ସଂସ୍କୃତିକୁ ପ୍ରଭାବିତ କରିଥିଲେ । ଏହି ପ୍ରଭାବର ଫଳସ୍ୱରୂପ ସୁମେରୀୟ **ଅସ୍ତେର୍** ଶବ୍ଦ ଭାରୋପୀୟ ଭାଷାମାନଙ୍କ ମଧ୍ୟରେ ପ୍ରବେଶଲାଭ କରିଅଛି ଓ ଇଂରେଜୀ ଷ୍ଟାର୍, ଲାଟିନ୍ ସ୍ତେଲ୍ଲା, ଜର୍ମାନ୍ ଷ୍ଟର୍ନ, ଆଙ୍ଗ୍ଲୋ-ସାକ୍ସନ ଷ୍ଟେଓର୍, ଫାରସୀ ସିତାରଃ ଏବଂ ସଂସ୍କୃତ ତାରାରେ ପରିଣତ ହୋଇଅଛି ।

**ଓଡ଼ିଆ ଭାଷାରେ ଗ୍ରୀକ୍ ଶବ୍ଦ :—**

ଗ୍ରୀକ୍‌ମାନେ ଖ୍ରୀଷ୍ଟପୂର୍ବ ସହସ୍ର ବର୍ଷ ପୂର୍ବେ ଏକ ବୀରଜାତିରୂପେ ପରିଚିତ ଥିଲେ । ଦିଗ୍‌ବିଜୟୀ ଗ୍ରୀକ୍ ସମ୍ରାଟ୍ ଆଲେକ୍‌ଜାଣ୍ଡର୍ ଖ୍ରୀଷ୍ଟପୂର୍ବ ୩୨୬ ମସିହାରେ ଭାରତ ଆକ୍ରମଣ କରିଥିଲେ । ସେହି ସମୟରୁ କ୍ରମେ ଦୁଇ ଦେଶ ମଧ୍ୟରେ କଳା, ବିଜ୍ଞାନ, ଶିଳ୍ପ, ସ୍ଥାପତ୍ୟ, ସଭ୍ୟତା ଓ ସଂସ୍କୃତିର ଆଦାନ ପ୍ରଦାନ ହୋଇଥିଲା । ଆଦାନ ପ୍ରଦାନର ଏହି ପ୍ରବାହରେ ଉଭୟ ଦେଶର ଭାଷା କେତେକ ଶାବ୍ଦିକ ବିଭବ ବିନିମୟରେ ପରସ୍ପରକୁ ସମୃଦ୍ଧ କରିଛନ୍ତି ।

ଗ୍ରୀକ୍‌ମାନଙ୍କ ମଧ୍ୟରେ ଡ୍ରାଖ୍ମେ (drachme) ଶବ୍ଦ ମୁଦ୍ରାର ଏକକ ରୂପେ ପ୍ରଚଳିତ ଥିଲା । ଗ୍ରୀକ୍‌ମାନଙ୍କ ସହିତ ଭାରତୀୟମାନଙ୍କର ବାଣିଜ୍ୟ ସମ୍ବନ୍ଧ ସ୍ଥାପିତ ହେବାରୁ ସଂସ୍କୃତରେ ଏହା ପ୍ରବେଶ ଲାଭକରି ଦ୍ରମ୍ୟ ଓ ଦ୍ରମ୍ମ ରୂପ ପରିଗ୍ରହ କଲା । ପ୍ରାକୃତରେ ଏହାର ରୂପ ହେଲା ଦମ୍ମ ଓ ଆଧୁନିକ **ଭାରତୀୟ** ଭାଷାମାନଙ୍କରେ **ଦାମ ଓ ଦାମ୍** । ଏହି

ବୌଦ୍ଧିକ ବିପରଣାମରେ ଶବ୍ଦଟିର ଅର୍ଥ କିଞ୍ଚିତ୍ ପରିମାଣରେ ବଦଳି ଯାଇଛି; ସଂସ୍କୃତରେ ଏହାର ଅର୍ଥ ହୋଇଛି ମୁଦ୍ରା ଓ ଓଡ଼ିଆରେ ଅର୍ଥ ହୋଇଛି ମୂଲ୍ୟ । ଏହି ଶବ୍ଦ ଯାବନିକ ଭାଷାର ଦର୍ ଶବ୍ଦ ସହିତ ମିଳିତ ହେବା ଫଳରେ ଓଡ଼ିଆରେ ଦରଦାମ୍ ଶବ୍ଦର ସୃଷ୍ଟି ହୋଇଅଛି ।

ଓଡ଼ିଆ **ସିମେଇ** ବା **ସେମେଇ** ଶବ୍ଦର ଜନ୍ମସ୍ଥାନ ମଧ୍ୟ ଗ୍ରୀସ୍ । ଗ୍ରୀକ୍ **'ସେମିଦାଲିସ୍'** ଶବ୍ଦର ଅର୍ଥ ହେଲା ମଇଦା । ସଂସ୍କୃତରେ ଏହାର ରୂପ ହେଲା **ସମିତା** ଓ ଅର୍ଥ ହେଲା ମଇଦାଜାତ ଯେ କୌଣସି ବସ୍ତୁ । ଓଡ଼ିଆରେ ଏହାର ରୂପ ହେଲା ସେମେଇ ବା ସିମେଇ ଏବଂ ଅର୍ଥ ହେଲା ମଇଦାରୁ ଜାତ ଏକ ନିର୍ଦ୍ଦିଷ୍ଟ ଖାଦ୍ୟ ପଦାର୍ଥ । ଗ୍ରୀକ୍ ଭାଷାରୁ ସଂସ୍କୃତକୁ ଆସିଲାବେଳେ ଏହାର ଅର୍ଥପ୍ରସାର ଘଟି ଓଡ଼ିଆକୁ ଆଗମନବେଳେ ପୁନର୍ବାର ଅର୍ଥସଂକୋଚ ସଂଘଟିତ ହୋଇଅଛି ।

ସଂସ୍କୃତ ସୁରଙ୍ଗ ଗ୍ରୀକ୍ ଉତ୍ସରୁ ଆଭ୍ୟନ୍ତରୀଣ ବର୍ତ୍ମ (tunnel) ଅର୍ଥରେ (୪) ଉଦ୍ଧାରିତ ହୋଇ ଓଡ଼ିଆରେ ସୁଡ଼ଙ୍ଗ ଶବ୍ଦରେ ପରିଣତ ହୋଇଅଛି । (ର—ଡ଼ ଯଥା ବର—ବଡ଼) । ସେହିପରି ଗ୍ରୀକ୍ ହୋର୍ (hora) ଶବ୍ଦ ଜାତକଚକ୍ର ଓ ଘଣ୍ଟା ଅର୍ଥରେ ସଂସ୍କୃତରେ ବ୍ୟବହୃତ ହୋଇ (୫) କାଳକ୍ରମେ ଓଡ଼ିଆରେ ଜାତକଚକ୍ର ଓ ଜ୍ୟୋତିଷକର୍ମ ଅର୍ଥରେ ପ୍ରଚଳିତ ।

ମୁସଲମାନ୍ ଜାତି ଅର୍ଥରେ ଓଡ଼ିଆରେ ବ୍ୟବହୃତ **ଯବନ** ଶବ୍ଦର ମୂଳ ହେଉଛି Ionian ଅର୍ଥାତ୍ Ionian ଦେଶର ଅଧିବାସୀ । ଗ୍ରୀକ୍‌ମାନଙ୍କର ନାମ ଅନୁସାରେ Ionian ଶବ୍ଦରୁ ଯବନ ଶବ୍ଦର ଉଦ୍ଭବ କିନ୍ତୁ ଅର୍ଥ ପ୍ରସାର ଫଳରେ ଏହି ଶବ୍ଦଟି ସାଧାରଣତଃ ଅପରଧର୍ମାବଲମ୍ବୀ ଯେ କୌଣସି ବିଦେଶୀ ଅର୍ଥରେ ପ୍ରଯୁକ୍ତ ହେଲା । କାଳକ୍ରମେ ଅର୍ଥର ସଂକୋଚ ଘଟି ଏହା କେବଳ ମୁସଲମାନ ଜାତିକୁ ବୁଝାଇଲା ।

ଓଡ଼ିଆ ଭାଷାରେ ପ୍ରଚଳିତ drama ର ଅର୍ଥ ଇଂରେଜୀ ଅର୍ଥର ଅନୁସରଣରେ ନାଟକ ହେଲେହେଁ ଓ ଶବ୍ଦଟି ଇଂରେଜୀ ଶବ୍ଦ ରୂପେ ପ୍ରତିଷ୍ଠିତ ହେଲେହେଁ ଗ୍ରୀକ୍ ଭାଷାରେ drama ର ଅର୍ଥ ହେଉଛି କାର୍ଯ୍ୟ ଏବଂ ଏହା ମୂଳତଃ ଗ୍ରୀକ୍ ଶବ୍ଦ । ଗ୍ରୀସ୍‌ରେ ପୂର୍ବକାଳରେ drama ରେ କଥା ଅପେକ୍ଷା କାର୍ଯ୍ୟ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ତେଣୁ ନାଟକର ନାମ ଥିଲା drama ।

ଟ୍ରାଜେଡ଼ି (tragedy) ଓ କମେଡ଼ି (comedy) ଇଂରେଜୀରୁ ଓଡ଼ିଆ ଭାଷାରେ ଉଦ୍ଧୃତ ବୋଲି ପ୍ରତୀୟମାନ ହେଲେହେଁ ଉଭୟେ ଗ୍ରୀକ୍ । ଗ୍ରୀକ୍ ଭାଷାରେ tragos ଶବ୍ଦର ଅର୍ଥ ହେଲା ଛାଗ ଓ tragedy ଶବ୍ଦର ଅର୍ଥ ହେଲା ଛାଗଗୀତି ବା ଛାଗନୃତ୍ୟ । ପ୍ରକୃତିର ପ୍ରଜନନ ଶକ୍ତିର ପ୍ରତୀକ । କୃଷି ଓ ଶସ୍ୟର ଦେବତା ଡାୟୋନିସିସ୍ ଗ୍ରୀସ୍‌ରେ ଆପୋଲୋଙ୍କ ପରି ସଙ୍ଗୀତ ଓ କାବ୍ୟର ଦେବତାରୂପେ ମଧ୍ୟ ପୂଜା ପାଉଥିଲେ । ଗ୍ରୀକ୍

(୪), (୫) The History of Bengali Language—
B. C. Mazumdar.

ନାଟକର ଜନ୍ମଭୂମି ଆଟିକ୍ ପ୍ରଦେଶରେ ଡାୟୋନିସିସ୍‌ଙ୍କର ପୂଜୋତ୍ସବ ବର୍ଷରେ ଦୁଇଥର (ବସନ୍ତ ଓ ଶୀତ ଋତୁରେ) ମହାସମାରୋହରେ ପାଳିତ ହେଉଥିଲା । ତାଙ୍କର ସନ୍ତୋଷ ବିଧାନ ସକାଶେ ବିପୁଳ ଜନସମାଗମରେ ଭକ୍ତମାନେ ଛାଗବଳି ପ୍ରଦାନ କରୁଥିଲେ । ଯଥାବିଧି ଦେବତାଙ୍କ ଉଦ୍ଦେଶ୍ୟରେ ନୈବେଦ୍ୟ ଅର୍ପିତ ହେଲାପରେ ଦେବତାଙ୍କର ଅଧିକ ସନ୍ତୋଷ ବିଧାନ ସକାଶେ ଗୀତ ଓ ଅଭିନୟର ବ୍ୟବସ୍ଥା ଥିଲା । ଗାୟକ ଓ ଅଭିନେତାମାନେ ଡାୟୋନିସିସ୍‌ଙ୍କର ଅନୁଚର (satyr)ମାନଙ୍କର ଅର୍ଦ୍ଧମାନବ-ଅର୍ଦ୍ଧପଶୁ ଆକୃତି-ଅନୁରୂପ ବେଶ ଧାରଣ କରି ନିଜର କୃତିତ୍ୱ ପ୍ରଦର୍ଶନ କରୁଥିଲେ । ଏହି ଛାଗନୃତ୍ୟ ବା ଛାଗଗୀତ (tragedy) ଆରମ୍ଭରୁ କାରୁଣ୍ୟ ଉଦ୍ଦୀପକ ନ ହୋଇ ଆନନ୍ଦ-ଉଦ୍ଦୀପକ ଥିଲେହେଁ ପରବର୍ତ୍ତୀକାଳରେ ଏ ଗୁଡ଼ିକରୁ ହିଁ ଦୁଃଖାନ୍ତକ ନାଟକର ଉନ୍ମେଷ ହୋଇଥିଲା, କାରଣ ଡାୟୋନିସିସ୍‌ଙ୍କର ଜୀବନର ଅନେକ ଅଶ୍ରୁଳ ମୁହୂର୍ତ୍ତ ହିଁ ଛାଗନୃତ୍ୟ ବା ଛାଗଗୀତରେ ସର୍ବାଧିକ ଦୃଷ୍ଟି ଆକର୍ଷଣ କରୁଥିଲା । (୬)

କମେଡ଼ି (comedy)ର ମୂଳ ଉତ୍ସ ସେହିପରି ଗ୍ରୀକ୍‌ର କୋମସ୍ (comos) ଭିତରେ ନିହିତ । ଡାୟୋନିସିସ୍‌ଙ୍କର ବସନ୍ତୋତ୍ସବରୁ ଯେପରି tragedyର ସୃଷ୍ଟି ଶୀତୋତ୍ସବରୁ ସେହିପରି comedy ର ସୃଷ୍ଟି । ଏହି ଉତ୍ସବରେ ଭକ୍ତମାନେ ପୁରୁଷ-ଜନନେନ୍ଦ୍ରିୟର ଚିହ୍ନ ବହନ କରି ଗୀତ ଗାଇ ଓ ନୃତ୍ୟ କରି ଡାୟୋନିସିସ୍‌ଙ୍କର ସ୍ତୁତିପାଠ କରୁଥିଲେ । ଜନନେନ୍ଦ୍ରିୟର ପ୍ରଶଂସା-ସୂଚକ ହାସ୍ୟରସ-ସମ୍ବଳିତ ଅଶ୍ଳୀଳ ଗୀତଗାଇ ଓ ଅଶ୍ଳୀଳ କଥୋପକଥନ କରି ଭକ୍ତମାନେ ଶୋଭାଯାତ୍ରୀମାନଙ୍କର ମନୋରଞ୍ଜନ କରୁଥିଲେ । ଏହି ଗାୟକ ଓ ଅଭିନେତାଙ୍କୁ comos କୁହାଯାଉଥିଲା । ଏମାନଙ୍କର ହାସ୍ୟୋଚ୍ଛଳ ଗୀତ ଓ ସଂଳାପରୁ ଗ୍ରୀକ୍ comedy ର ସୃଷ୍ଟି । (୭)

ଗ୍ରୀକ୍ ଥିଏଟରରେ କୋରସ୍ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ବୃତ୍ତାକାରରେ ଗାୟକମାନେ ଦଣ୍ଡାୟମାନ ହୋଇ ଏକ ସ୍ୱରରେ ଗାଉଥିବା ସମୂହ ସଙ୍ଗୀତକୁ **କୋରସ୍** କୁହାଯାଉଥିଲା । ଏହି କୋରସ୍ ପାଇଁ ଯେଉଁ ବୃତ୍ତାକାର ସ୍ଥାନ ନିର୍ଦ୍ଦିଷ୍ଟ ଥିଲା ତାହାକୁ **ଅର୍କେଷ୍ଟ୍ରା** କୁହାଯାଉଥିଲା । ଆଜିକାଲି ଓଡ଼ିଆରେ ବ୍ୟବହୃତ ଅର୍କେଷ୍ଟ୍ରା ଶବ୍ଦ ଏହି ଶବ୍ଦରୁ ଆନୀତ ଓ ଏହାର ଅର୍ଥ ବୃତ୍ତାକାର ବା ଅର୍ଦ୍ଧବୃତ୍ତାକାରରେ ଦଣ୍ଡାୟମାନ ବାଦ୍ୟଶିଳ୍ପୀମାନଙ୍କର ସମୂହ ବାଦ୍ୟ-ବାଦନ ବା ଐକତାନ । ଅର୍କେଷ୍ଟ୍ରା ଦଳରେ ୬୦ରୁ ୧୦୦ ପର୍ଯ୍ୟନ୍ତ ବାଦ୍ୟଶିଳ୍ପୀ ରହି ପାରିବେ ବୋଲି ନିର୍ଦ୍ଦିଷ୍ଟ ଥିଲା । ବର୍ତ୍ତମାନ ଏ ସଂଖ୍ୟା ଅନିର୍ଦ୍ଦିଷ୍ଟ । (୮)

**ଆଟ୍‌ଲସ୍** ଏକ ଗ୍ରୀକ୍ ଶବ୍ଦ । ଗ୍ରୀକ୍‌ମାନଙ୍କର କିମ୍ବଦନ୍ତୀ କହେ ଆଟଲସ୍ ନାମରେ ଜଣେ ଦୁର୍ଦ୍ଦାନ୍ତ ଦୈତ୍ୟ ଜୁପିଟରର ଦେବତାଙ୍କୁ ବାଧା ଦେବା ଫଳରେ ସେ ତାହାକୁ ଅଭିଶାପ ଦେଲେ । ସେହି ଦିନୁ ସେ ପୃଥିବୀକୁ କାନ୍ଧେଇଛି ଓ ଏଥିପାଇଁ ପୃଥିବୀର ମାନଚିତ୍ର ବହିର ନାମ ଆଟଲସ୍ ରଖାଯାଇଛି । (୯)

---

(୬), (୭) ନାଟକ ବିଚାର—ସର୍ବେଶ୍ୱର ଦାଶ
(୮), (୯) ବିଶ୍ୱ ପରିଚୟ—ରାମକୃଷ୍ଣ ନନ୍ଦ

ଏହା ବ୍ୟତୀତ dialogue, concert, analysis, physics, anthropology, automobiles, hydro-electricity, ଆଖ୍‌ରୋଟ୍ (ପାର୍ବତ୍ୟ ବୃକ୍ଷ ବିଶେଷ), ଅଲିଭ୍ (ବୃକ୍ଷ ବିଶେଷ), ଅଲମ୍ପିକ ପ୍ରଭୃତି ଗ୍ରୀକ୍ ଶବ୍ଦଗୁଡ଼ିକ ଇଂରାଜୀ ମାଧ୍ୟମରେ ବା ଐତିହାସିକ ସୂତ୍ରରେ ଓଡ଼ିଆ ଭାଷାରେ ପ୍ରଚଳିତ ହୋଇଯାଇଛି ।

## ଓଡ଼ିଆ ଭାଷାରେ ଏଜିଅନ୍ ଶବ୍ଦ :—

ପ୍ରାଚୀନ କାଳରେ ଏଜିଅନ୍ ସଂସ୍କୃତି ଥିଲା ୟୁରୋପର ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ସଂସ୍କୃତି । କ୍ରୀଟ୍ ଥିଲା ଏହାର କେନ୍ଦ୍ରସ୍ଥଳୀ । ଭାରତରେ ଅଷ୍ଟ୍ରିକ୍ ସଂସ୍କୃତି ପରି ୟୁରୋପରେ ଏହି ସଂସ୍କୃତିର ଥିଲା ଏକ ବ୍ୟାପକ ଗୁରୁତ୍ୱପୂର୍ଣ୍ଣ ଭୂମିକା । ଏହି ସଂସ୍କୃତିର ବ୍ୟାପ୍ତିକାଳ ଖ୍ରୀଷ୍ଟପୂର୍ବ ୩୦୦୦ରୁ ଖ୍ରୀଷ୍ଟପୂର୍ବ ୧୧୦୦ ମସିହା ବୋଲି ଅନୁମାନ କରାଯାଇପାରେ । ମୂଳ ଭାରୋପୀୟ ଭାଷା ଏହି ଭାଷାରୁ କେତେକ ଶବ୍ଦ ଆହରଣ କରିଛି ଓ ଏହି ଶବ୍ଦ କାଳକ୍ରମେ ଓଡ଼ିଆ ପରି ଅନ୍ୟାନ୍ୟ ଆଧୁନିକ ଭାରତୀୟ ଆର୍ଯ୍ୟଭାଷାରେ ଗୃହୀତ ହୋଇଛି ।

ଏଜିଅନ୍ ମୂଳ ଶବ୍ଦ **ଅଲସ୍ୟ**ରୁ ମୂଳ ଭାରୋପୀୟ * ଅୟୋସ୍ ବା * ଅୟେସ୍ ବା * ଅୟସ୍, ସଂସ୍କୃତ ଅୟସ୍, ଆବେସ୍ତା, ଅୟହ୍, ଲାଟିନ୍, ଅୟେସ୍, ଗାଁଥିକ୍ ଅଇଜ୍ ଆଦି ଆହୃତ ହୋଇଅଛି । ପ୍ରାରମ୍ଭ କାଳରେ ସଂସ୍କୃତରେ ଏହାର ଅର୍ଥ ଥିଲା ତମ୍ବା, ପରେ ଏହା ଲୁହା ଏବଂ ଉତ୍ତମ ଲୁହା ବା ଇସ୍ପାତ ଅର୍ଥରେ ପ୍ରଯୁକ୍ତ ହେଲା । ଓଡ଼ିଆରେ ଏହା ଲୁହା ଅର୍ଥରେ ବ୍ୟବହୃତ । ଏଜିଅନ୍‌ର ଏକ ଅଂଶ ବିଶେଷର ନାମ ଥିଲା ଅଲସ୍ୟ । ଏହା ତମ୍ବା ଉତ୍ପାଦନର ଥିଲା ଏକ ପ୍ରଧାନ କେନ୍ଦ୍ର । କାର୍ପେଣ୍ଟିଅର (୧୦) ଏବଂ ପୋକୋର୍ନି (୧୧) ଅନୁମାନ କରିଛନ୍ତି ଯେ ସାଇପ୍ରସ୍‌ର ପ୍ରାଚୀନ ନାମ ଥିଲା ଅଲସ୍ୟ । ଯେପରି ମିଶରର ଆଧାର ଉପରେ ମିଶ୍ରୀ, ବାହ୍ଲୀକ, ପଞ୍ଜାବ, ମନ୍ତ୍ରିବାନ୍, ସିନ୍ଧୁ, କଣମିସ୍ ପ୍ରଭୃତିର ଆଧାର ଉପରେ ଯଥାକ୍ରମେ ବାତାପି, ପଞ୍ଜାବୀ, ମନ୍ତ୍ରିବାନ୍, ସୈନ୍ଧବ (ଲବଣ ଓ ଘୋଟକ), କଣ୍‌ମିସ୍ ଆଦି ଶବ୍ଦର ସୃଷ୍ଟି ଅଲସ୍ୟର ଆଧାର ଉପରେ ଅଲସ୍ୟ ଶବ୍ଦର ସୃଷ୍ଟି ହୋଇଥିଲା ।

## ୟୁରାଲୀ ଭାଷା ପରିବାରର ଶବ୍ଦ :—

ଭାରୋପୀୟ ପରିବାରର ପୂର୍ବଶାଖା ଭାରତ-ଇରାନୀ ସହିତ ୟୁରାଲୀ ଭାଷା ପରିବାରର କେତେକ ସମ୍ପର୍କ ରହିଛି । ଏହି ଦୁଇ ପରିବାର ମଧ୍ୟରେ ଅନେକ ଶବ୍ଦର ଆଦାନ ପ୍ରଦାନ ଫଳରେ ଅନେକ ଉଲ୍ଲେଖଯୋଗ୍ୟ ସମାନ ଶବ୍ଦ ଦୃଷ୍ଟିଗୋଚର ହୁଏ । ଯଥା :—

| ୟୁରାଲୀ | ଭାରୋପୀୟ |
| --- | --- |
| ୧ । ଫିନିଶ୍ 'ମେତେ' | ୧ । ସ. ମଧୁ, ଗ୍ରୀକ୍ 'ମେଥୁ' ରୁଷି ମ୍ୟୋଡ୍ |
| ୨ । ଫିନିଶ୍ 'ତୋରନ୍' | ୨ । ସ. ତୃଣ |

(୧୦) Bulletin of the school of Oriental studies, London Institute, vol. IV page 156.
(୧୧) Child—The Aryans, 1st Edition, page 87

| ୟୁରାଲୀ | ଇଉରୋପୀୟ |
|---|---|
| ୩ । ସତ, ସାତ, ଶଦୋ, ସୋ, ସୁ, ଶୁ ଆଦି | ୩ । ସଂ. ଶତ, ଫା-ସଦ, ରୁଷୀ ସ୍ତୋ |
| ୪ । ମଗିୟାର୍ 'ଆବ' (ପରିତ୍ୟକ୍ତ ଶିଶୁ) | ୪ । ସଂ. ଅର୍ଭ |
| ୫ । ମଗିୟାର୍ 'ହବ୍' | ୫ । ସଂ-କଫ ଫା-କଫ୍ ଇଂ-କଫ୍ |
| ୬ । ଫିନିଶ୍ 'କୁଓପପ୍' | ୬ । ସଂ-କୂପ |
| ୭ । ମଗିୟାର୍ 'ଅରଣ୍ୟ' (ସୁବର୍ଣ୍ଣ) | ୭ । ସଂ-ହିରଣ୍ୟ, ଆଭେସ୍ତା-ଅରଣ୍ୟ |
| ୮ । ମଗିୟାର୍ 'ସ୍‌ଜଲଙ୍କ', ଫିନିଶ୍ 'ସଲେ' | ୮ । ସଂ-ଶଲାକା |
| ୯ । ମୋର୍ଦ୍‌ୱିନ୍ 'ଅଜୋର୍' (ବଡ଼) ଇସ୍ତୋନିୟନ୍ 'ସୁର', ବୋଟିୟକ୍ 'ଝକର୍' | ୯ । ସଂ. ଅସୁର, ଆଭେସ୍ତା-ଅହୁର |
| ୧୦ । ଫିନିଶ୍ 'ବସର୍' | ୧୦ । ସଂ-ବଜ୍ର, ଅଭେସ୍ତା-ବଜର |
| ୧୧ । ଫିନିଶ୍ 'ଓରସ୍' | ୧୧ । ସଂ-ବାରାହ, ଆଭେସ୍ତା-ବରାଜ । |
| ୧୨ । ମଗିୟାର୍ 'ଓସ୍ତୋର୍' | ୧୨ । ସଂ-ଅଷ୍ଟ |
| ୧୩ । ମଗିୟାର୍ 'ସୋର' | ୧୩ । ସଂ-ସୁରା, ଆଭେସ୍ତ-ହୁରା |
| ୧୪ । ମୋର୍ଦ୍‌ୱିନ୍ 'ମେକ୍‌ଶ' (ମଧୁମକ୍ଷିକା) ଇସ୍ତୋନିୟନ୍ 'ମେସି' | ୧୪ । ସଂ-ମକ୍ଷିକା |
| ୧୫ । ଇସ୍ତୋନିୟନ୍ 'ସୋକକ୍' | ୧୫ । ସଂ-ଛାଗ |
| ୧୬ । ଫିନିଶ 'ସିଇକ୍-ନେନ' ମୋର୍ଦ୍‌ୱିନ୍-ଶୁଓ୍ୱ | ୧୬ । ସଂ-ଶୁକ |

କେଉଁ ଭାଷା-ପରିବାରର ଶବ୍ଦ କେଉଁ ଭାଷାପରିବାରକୁ ପ୍ରଭାବିତ କରିଛି ଅନୁମାନ କରିବା କଷ୍ଟକର ବ୍ୟାପାର, କିନ୍ତୁ ଉପର୍ଯ୍ୟୁକ୍ତ ଉଦାହରଣ ମଧ୍ୟରୁ **ମକ୍ଷିକା, ଶୁକ, ଛାଗ, କଫ, କୂପ, ଶଲାକା, ଦୁଣ, ହିରଣ୍ୟ** ଏବଂ **ବାରାହ** ମୂଳତଃ ୟୁରାଲି-ପରିବାରର ଶବ୍ଦ ଏବଂ କାଳକ୍ରମେ ସଂସ୍କୃତ ଆଦି ଇଉରୋପୀୟ ପରିବାରକୁ ଆସିଅଛି ।

**ଆସିରୀୟ ଶବ୍ଦ :—**

ଗହମର ସଂସ୍କୃତ ପ୍ରତିଶବ୍ଦରୂପେ ଗୋଧୂମ ବିବେଚିତ ହେଲେହେଁ ଶବ୍ଦଟି ସଂସ୍କୃତ ଭାଷାର ମୌଳିକ ଶବ୍ଦ ନୁହେଁ । ଆସିରୀୟମାନଙ୍କର ସଂସ୍ପର୍ଶରେ ଆସିବା ପରେ ଭାରତୀୟ ଆର୍ଯ୍ୟମାନେ ଗହମ ସହିତ ପରିଚିତ ହୋଇଥିଲେ । ଆସିରୀୟ ଭାଷାରେ ଗହମକୁ କୁହାଯାଏ 'ଶେଭମ' । ସମ୍ଭବତଃ ସଂ-ଗୋଧୂମ ଓ ଆଭେସ୍ତା ଗନ୍ଦୁମ୍ ଏହି 'ଶେଭମ' ଶବ୍ଦରୁ ଉତ୍ପାଦିତ । କେହି କେହି ଅନୁମାନ କରନ୍ତି ଯେ ସମ୍ଭବତଃ ଭାରତୀୟ-ଇରାନୀମାନେ ଜଙ୍ଗଲି ଗହମକୁ ଘାସରୂପରେ ସଂଗ୍ରହ କରୁଥିଲେ ଓ ଶୁଖାଇ ରଖୁଥିଲେ । ମଶା ଡାଉଁଶମାନଙ୍କଠାରୁ ଗୋଧନକୁ ରକ୍ଷା କରିବା ଲାଗି ଏହି ଶୁଖିଲା ଗହମ ଗଛକୁ ଜାଳି ଧୂଆଁ ସୃଷ୍ଟି କରାଯାଉଥିଲା ଓ ଏହି କାରଣରୁ ଏହାକୁ ଗୋଧୂମ କୁହାଯାଉଥିଲା । ପାଣିନୀୟ ପଣ୍ଡିତ ଏହାକୁ ଗୁଧ୍+ଉମ୍>ଗୋଧୂମ ବୋଲି ନିର୍ଣ୍ଣୟ କରିଛନ୍ତି । ଗୁଧ୍ ଧାତୁର ଅର୍ଥ ହେଲା ଅବରୋଧ କରିବା, ଖେଳିବା, ଘେରିବା ଇତ୍ୟାଦି । ଏହି ବ୍ୟୁତ୍ପତ୍ତିରୁ ଗହମର ଅର୍ଥ ସ୍ପଷ୍ଟ ପ୍ରକାଶ

ପାଉନାହିଁ । ଯେତେଦୂର ସମ୍ଭବ ଗୋଧୂମ (ଓଡ଼ିଆ ଗହମ)ର ଉତ୍ପତ୍ତି ଉତ୍ସ ଆସିଯାଇ ଶେଭମ ।

**ଫରାସୀ ଶବ୍ଦ :—**

ଇଂରାଜୀ ଭାଷାରେ ପ୍ରଚଳିତ ଅପର୍ଯ୍ୟାପ୍ତ ଶବ୍ଦର (୫୩%) ମୂଳ ଉତ୍ସ ହେଉଛି ଫରାସୀ । ଇଂଲଣ୍ଡ ବହୁ ବର୍ଷ ଧରି ଫରାସୀ କର୍ତ୍ତୃତ୍ୱାଧୀନ ରହିବା ଫଳରେ ଫରାସୀ ଭାଷା ଇଂଲଣ୍ଡରେ ପ୍ରଭାବ ବିସ୍ତାର କରିଥିଲା ଓ ପୃଥିବୀର ବିଭିନ୍ନ ଭାଷାରେ ପ୍ରଚଳିତ ଅନେକ ଶବ୍ଦ ମୂଳତଃ ଇଂରେଜୀ ବୋଲି ଗୃହୀତ ହୋଇଥିଲେହେଁ ତାହା ପ୍ରକୃତରେ ଫରାସୀ । କ୍ରମେ ଇଂରେଜ ଜାତି ସମଗ୍ର ବିଶ୍ୱରେ ଶକ୍ତିଶାଳୀ ହୋଇ ଉପନିବେଶ ସ୍ଥାପନ କରିବା ଫଳରେ ଓ ଇଂରେଜୀ ଭାଷା ଅତ୍ୟନ୍ତ ବଳିଷ୍ଠ ହୋଇ ବିଶ୍ୱବ୍ୟାପୀ ହେବା ଫଳରେ ଫରାସୀ ଶବ୍ଦଗୁଡ଼ିକ ଇଂରେଜୀ ଶବ୍ଦ ବୋଲି ଗୃହୀତ ହୋଇଯାଇଛି ।

ଇଂରେଜମାନଙ୍କ ପରେ ପରେ ଫରାସୀମାନେ ଭାରତବର୍ଷକୁ ବାଣିଜ୍ୟ ବ୍ୟପଦେଶରେ ଆସିଥିଲେ ଓ ଭାରତର ବିଭିନ୍ନ ସ୍ଥାନରେ ବାଣିଜ୍ୟ କୋଠି ନିର୍ମାଣ କରି ଆଧିପତ୍ୟ ବିସ୍ତାର କରିଥିଲେ । ସମ୍ଭବତଃ ସାୟସ୍ତ ଖାଁ ଓଡ଼ିଶାର ସୁବେଦାର ଥିବା ସମୟରେ ୧୬୭୬ ଖ୍ରୀ:ରେ ଫରାସୀମାନେ ବାଲେଶ୍ୱରରେ ପ୍ରଥମେ ବାଣିଜ୍ୟ କୋଠି ନିର୍ମାଣ କରିଥିଲେ ଓ ୧୭୬୦ ଖ୍ରୀ: ପର୍ଯ୍ୟନ୍ତ ଓଡ଼ିଶାରେ ରହିଥିଲେ । ପ୍ରାୟ ଗୋଟିଏ ଶତାବ୍ଦୀର ରହଣିକାଳ ମଧ୍ୟରେ ଫରାସୀମାନେ ଓଡ଼ିଆ ଭାଷାକୁ ଯେ ନିଜ ଭାଷାର କେତୋଟି ଶବ୍ଦ ଦେଇ ଯାଇଥିବେ, ଏଥିରେ ସନ୍ଦେହ ନାହିଁ । ବାଣିଜ୍ୟ ଓ ବସତି ସ୍ଥାପନ ସୂତ୍ରରେ ହେଉ ବା ଇଂରେଜୀ ଭାଷା ମାଧ୍ୟମରେ ହେଉ, ଫରାସୀ ଭାଷାର କେତୋଟି ଶବ୍ଦ ଓଡ଼ିଆ ଭାଷାରେ ସ୍ଥାନ ପାଇଛି ।

ଗ୍ୟାରେଜ (garage) ହେଉଛି ଏକ ଫରାସୀ ଶବ୍ଦ । ଫରାସୀ ଭାଷାରେ ଏହାର ଅର୍ଥ ଥିଲା ଗୋଦାମ । ଇଂରାଜୀ ଭାଷାକୁ ଆସିବା ପରେ ଏହାର ଅର୍ଥ ହେଉଛି ମଟର ରହିବାର ସ୍ଥାନ । (୧୨)

ଫରାସୀ ଶବ୍ଦ ବ୍ୟୁଜେ (buget) ମୁଣି ଅର୍ଥରେ ଇଂଲଣ୍ଡକୁ ଆସି 'ବଜେଟ୍'ରେ ପରିଣତ ହୋଇଛି । ପୁଣି କିଛିକାଳ ପରେ ବଜେଟ୍ ଶବ୍ଦ ଇଂରାଜୀ ଭାଷାରୁ ଫେରିଯାଇ ଫରାସୀ ଭାଷାରେ ଇଂରେଜୀ ବଜେଟ୍ ଅର୍ଥରେ ବ୍ୟବହୃତ ହେଲା । (୧୩)

ସେମିଜ୍ (Chemise) ଫରାସୀ ଶବ୍ଦଟିର ମୂଳ ଅର୍ଥ ହେଉଛି ପୁରୁଷ ପିନ୍ଧା କମିଜ୍ । ଓଡ଼ିଆ ଭାଷାରେ ସେମିଜ୍‌ର ଅର୍ଥ ବଦଳି 'ସ୍ତ୍ରୀ ମାନଙ୍କର ପୋଷାକ' (୧୪) ହୋଇଯାଇଛି ।

କର୍ଫ୍ୟୁ (Curfew) ଓଡ଼ିଆ ଭାଷାରେ ସାନ୍ଧ୍ୟ ଆଇନ୍ ଅର୍ଥରେ ବ୍ୟବହୃତ । ଏହା ଏକ ଫରାସୀ ଶବ୍ଦ ଓ ଏହାର ମୂଳ ଅର୍ଥ ହେଉଛି 'ଆଲୁଅ ଲିଭାଅ' (Cover fire) ଇଂଲଣ୍ଡରେ ବହୁ ପ୍ରାଚୀନ କାଳରୁ ପ୍ରତିଦିନ ସନ୍ଧ୍ୟାପରେ ଏକ ନିର୍ଦ୍ଦିଷ୍ଟ ସମୟରେ ଏକ

(୧୨), (୧୩), (୧୪)—ମଣିଷର ଭାଷା—ଗୋଲୋକ ବିହାରୀ ଧଳ

ଘଣ୍ଟା ବାଜ ଲୋକମାନଙ୍କୁ ଘରଭିତରେ ରହିବାକୁ ସତର୍କ କରିଦଏ । ଏହି ଘଣ୍ଟାର ନାମ କର୍ଫ୍ୟୁ । କୌଣସି ବିପଦର ଆଶଙ୍କା କରି ସରକାର ଏବେ ଯେଉଁ ସାନ୍ଧ୍ୟ ଆଇନ୍ ଜାରି କରନ୍ତି ତାକୁ କର୍ଫ୍ୟୁ ଆଦେଶ କୁହାଯାଉଛି । (୧୫)

ଏହା ବ୍ୟତୀତ କାର୍ତ୍ତୁଜ୍ (ଇଂରେଜୀ catrige) ଫରାସୀ Cartoucheରୁ, 'ଫରାସୀ' ଶବ୍ଦ ଫରାସୀ 'Franchis'ରୁ 'ଅଙ୍ଗ୍ରେଜ୍' ଶବ୍ଦ ଫରାସୀ 'Anglais'ରୁ ବ୍ୟୁତ୍ପନ୍ନ ହୋଇଅଛି । ଫରାସୀ ଜଜ୍, ଜୁରି (jury), ସାର୍, ମାଡ଼ାମ୍, ମାଷ୍ଟର, ମିଷ୍ଟ୍ରେସ୍, ବଫ୍, ମଟନ୍, କୁପନ୍, ଫ୍ରାନ୍ସ ଆଦି ଶବ୍ଦ ଓଡ଼ିଆ ଭାଷାରେ ବେଶ ଅବାଧରେ ପ୍ରଚଳିତ ହୋଇ ପାରିଅଛି ।

ଇଂରାଜୀ Capable, Variable ପ୍ରଭୃତିରେ ବ୍ୟବହୃତ 'able' ପ୍ରତ୍ୟୟଟି ହେଉଛି ଫରାସୀ ପ୍ରତ୍ୟୟ । (୧୬) ଏହି ପ୍ରତ୍ୟୟ କଥିତ ଓଡ଼ିଆରେ କାଁ ଭାଁ ବ୍ୟବହୃତ ଦେଖାଗଲଣି । ଯଥା :—ଚଳେବ୍ଲ (ଚଳନୀୟ), ପଠନେବ୍ଲ (ପଠନୀୟ) ।

## ଓଲନ୍ଦାଜ ଶବ୍ଦ :—

ପ୍ରାଚ୍ୟ ଭୂଖଣ୍ଡରେ ଓଲନ୍ଦାଜମାନେ ଥିଲେ ପର୍ତ୍ତୁଗୀଜମାନଙ୍କର ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ । ସେମାନେ 'ଓଲନ୍ଦାଜ ଇଷ୍ଟ ଇଣ୍ଡିଆ କଂପାନୀ' ଗଠନ କରି ଭାରତରେ ୧୬୦୨ ମସିହାରୁ ୧୭୫୯ ମସିହା ପର୍ଯ୍ୟନ୍ତ ପର୍ତ୍ତୁଗୀଜ, ଇଂରେଜ ପ୍ରଭୃତି ଜାତି ସହିତ ପ୍ରତିଯୋଗିତା ଭିତରେ ବାଣିଜ୍ୟ ଚଳାଇଥିଲେ । ଓଲନ୍ଦାଜମାନେ ୧୬୪୫ ଖ୍ରୀ: ରେ ସୁବେଦାର ମୁତକ୍ମାଦ ଖାଁଙ୍କ ଠାରୁ ଓଡ଼ିଶାର ବାଲେଶ୍ୱରରେ ଖଣ୍ଡେ ଜାଗା କିଣିଥିଲେ ଓ ବାଣିଜ୍ୟ କୋଠି ନିର୍ମାଣ କରିଥିଲେ । ବାଲେଶ୍ୱରରେ ଓଲନ୍ଦାଜମାନେ ଯେଉଁଠି ବସବାସ କରୁଥିଲେ, ତାହା ଓଲନ୍ଦାଜ ସାହି ନାମରେ କଥିତ ହୁଏ । ୧୮୨୫ ମସିହା ପର୍ଯ୍ୟନ୍ତ ଏମାନେ ବାଲେଶ୍ୱରରେ ଯଥା-କଥା ବାଣିଜ୍ୟ ଚଳାଇ ଶେଷରେ ନିଜର ସାତ ଏକର ଜାଗା ଇଂରେଜମାନଙ୍କୁ ଛାଡିଦେଇ ଓଡ଼ିଶାରୁ ବିଦାୟ ନେଇଥିଲେ । (୧୭) ପ୍ରାୟ ଦୁଇ ଶହ ବର୍ଷର ରହଣିକାଳ ମଧ୍ୟରେ ଓଲନ୍ଦାଜମାନେ ଓଡ଼ିଆ ଭାଷା ଉପରେ ବିଶେଷ କିଛି ପ୍ରଭାବ ବିସ୍ତାର କରି ପାରି ନାହାନ୍ତି ।

ଓଲନ୍ଦାଜମାନେ ଓଡ଼ିଶାରେ ତାସ୍ ଖେଳର ପ୍ରଚଳନ କରାଇଥିଲେ । ଏହି ଖେଳରେ ପ୍ରଚଳିତ କେତେକ ଶବ୍ଦ ଓଲନ୍ଦାଜ ଭାଷାରୁ ଆସି ପ୍ରବେଶ ଲାଭ କରିଛି ।

---

(୧୫) ବିଶ୍ୱପରିଚୟ—ରାମକୃଷ୍ଣ ନନ୍ଦ
(୧୬) ମଣିପର ଭାଷା—ଗୋଲୋକ ବିହାରୀ ଧଳ
(୧୭) ଓଡିଶା ଇତିହାସ—ହରେକୃଷ୍ଣ ମହତାବ

ଯଥା :—ହରତନ, ରୁଇତନ, (୧୮), ଇସ୍କାପାନ, ତୁରୁପ୍ , ଚଡ୍ରିତନ (୧୯) ଇତ୍ୟାଦି । ଏହା ବ୍ୟତୀତ ବୋମ (ଗାଡ଼ିର ଅଗ୍ରଭାଗରେ ବ୍ୟବହୃତ ପଦାର୍ଥ), ଇସ୍କ୍ରୁପ (ଓଲନ୍ଦାଜ୍ schroef, ପର୍ତ୍ତୁଗୀଜ ଇସ୍କୁପ୍ରୁ, ଙ୍ଗ୍ରେଜୀ skru) ପ୍ୟାରସ୍, ଲଣ୍ଠନ, ବ୍ରାଣ୍ଡି ଆଦି ଶବ୍ଦଗୁଡ଼ିକର ମୂଳ ହେଉଛି ଓଲନ୍ଦାଜ ।

**ଓଡ଼ିଆ ଭାଷାରେ ପ୍ରଚଳିତ ଅନ୍ୟାନ୍ୟ ଭାଷାର କେତେକ ଶବ୍ଦର ତାଲିକା :—**

ମାଳୟୀ— କାକତୁଆ, କରଚ (ବଙ୍କାଛୁରୀ, ସଙ୍ଗୀନ୍), ମଲାଇ, ମୁଡା (a measure), ସାଗୁ, ଗୋଦାମ

ଚୀନ— ଚନ, ଗୁ, ଚୀନା (ଧାନ ବିଶେଷ), **ଚିନାବାଦାମ**, **ଚିନାସିନ୍ଦୁର**, **ଚୀନାଂଶୁକ**, ଚୀନାବାଟି, ଲିଚ, ସିଲ୍କ୍

ଆମେରିକା— (କ) ମାର୍କିନ୍

(ଖ) ମେକ୍‌ସିକୋ :—ଜୁଲାପ (xalapa), ତମାଖୁ (tebago, tobaco), ସପେଟା (zapota), ଚକୋଲେଟ, ପେଡ଼ା, ଆଉ

(ଗ) ପେରୁ :—କୁଇନାଇନ୍

ଜର୍ମାନ୍— ୟା (ହଁ ଅର୍ଥରେ), ଗେଟେ ମର୍ଗନ୍ (ନମସ୍କାର ଅର୍ଥରେ), କାପୁଟ୍ (ଧେତ୍, ନଷ୍ଟହୋଇଗଲା ଅର୍ଥରେ) ପ୍ରଭୃତିକ ଶବ୍ଦଗୁଡ଼ିକ ସାଉରକେଲାର ସୀମିତ ଜନତା ଭିତରେ ପ୍ରଚଳିତ ।

ଲାଟିନ୍— ଫୁଟ (fructus, ଇଂ-fruit), ଜୁନିଅର, ସିନିଅର, ମାକ୍‌ସିମମ ମିନିମମ, ପାଉଁ (ରୁଟି), ଟେବୁଲ (tabula, ଇଂ-table), ହଷ୍ଟେଲ, ହୋଟେଲ, ହସ୍‌ପିଟାଲ, ହସ୍ପିଟାଲିଟି ଇତ୍ୟାଦି । (ଇଂରେଜୀ ମାଧ୍ୟମରେ ଓଡ଼ିଆକୁ ଆସିଛି)

ତାମିଲ୍— ସିଷ୍ଟର, ହ୍ୱକବେଣ୍ଟ୍

ସ୍ଲାଭିକ୍— ବର୍ଲିନ

ସ୍ପେନୀୟ— ଚେରି (cheri), କର୍କ, ଡେଙ୍ଗୁ (ଡେଙ୍ଗୀଜର) ଆଲ୍‌ପାକା

ବାଟାଭିଆ— ବାତାପି

---

(୧୮) ରୁହିତନ ଶବ୍ଦର ଅର୍ଥ ଠିକଣା । ଲାଲ ରଙ୍ଗର ସାଦୃଶ୍ୟରୁ ଏହାର ଅର୍ଥ ପରେ ହୋଇଛି ଲୋହିତ ଏବଂ ଏହି ଅର୍ଥରେ କବି ସଚି ରାଉତରାୟ ରୁହିତନ ଶବ୍ଦର ବ୍ୟବହାର କରିଚନ୍ତି—

"ଏଠି ଏଇ ସମୁଦ୍ର ବାଲିରେ
**ରୁହିତନ** ସୂର୍ଯ୍ୟ ଯେବେ ବୁଡ଼ିଯାଏ,
ଆଖ ପାଖ ନଦୀ ମୁହାଣରେ
କି ସ୍ୱପ୍ନ ଫେଣେଇ ଉଠେ ? —ସାମୁଦ୍ରିକ, କବିତା, ୧୯୬୨

(୧୯) ଓଡ଼ିଆ ଭାଷାର ଉତ୍ପତ୍ତି ଓ କ୍ରମ ବିକାଶ—ଡକ୍‌ଟର ବଂଶୀଧର ମହାନ୍ତି

| | |
|---|---|
| ପର୍ତ୍ତୁଗୀ— | ପନ୍ତ୍ରଲ୍‌ମାନ, ପୋଥି |
| ଜାପାନୀ— | ରିକ୍‌ସା |
| ତିବ୍‌ବତୀ— | ଲାମା, ଇୟାକ୍ (ଚମରୀ ଗୋରୁ) |
| ରୁଷୀ— | ସୋଭିଏତ୍, ଷ୍ଟୁଟନିକ, ତାତାର (ଓଡ଼ିଆ ତାତାରୀୟ—ଚେଙ୍ଗିଜ୍ ଖାଁ ଓ ଅନ୍ୟାନ୍ୟ ମଙ୍ଗୋଲ ଆକ୍ରମଣକାରୀମାନଙ୍କର ସୈନ୍ୟ), ରୁବଲ୍, ଜାର୍, ଭୋଦକା, ସ୍ପୁଟନିକ୍, (ରୁଷିଆର ଶସ୍ୟ-ଭଣ୍ଡାର) |
| ଭେନିସ୍— | ପଟଲୁନ୍, |
| ମିଶରୀୟ— | ମିଶ୍ରୀ (୨୦) |
| ରୋମାନ୍— | ଅଗଷ୍ଟ, କର୍ଣ୍ଣେଟ୍, ସୋଡ଼ା (ସୋଡ଼ିଅମ୍) |
| ଦକ୍ଷିଣ ଆଫ୍ରିକା— | ଜେବ୍ରା, ଜିରାଫ୍ |
| ଟ୍ୟୁଟନିକ— | ଇଂଲଣ୍ଡ |
| ଅଷ୍ଟ୍ରେଲିଆ— | ଇଉକାଲିପଟସ୍, କଙ୍ଗାରୁ |

## ଉପର୍ଯ୍ୟୁକ୍ତ ତାଲିକାରେ ଥିବା କେତେକ ଶବ୍ଦର ଐତିହାସିକ ବ୍ୟୁତ୍ପତ୍ତି କ୍ରମ

**ତମାଖୁ** :—ଓଡ଼ିଆ ତମାଖୁ ଶବ୍ଦ ସଂସ୍କୃତ 'ତାମ୍ରକୁଟ'ରୁ ଉତ୍ପନ୍ନ ବୋଲି ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ଅନୁମାନ କରିଛନ୍ତି, କିନ୍ତୁ ଏ ଅନୁମାନ ଠିକ୍ ନୁହେଁ । ଆମେରିକା ମହାଦେଶର ମେକ୍‌ସିକୋ ଦେଶରେ ୟୁକାତନ ନାମକ ଏକ ପ୍ରଦେଶ ଅଛି ଓ ଏହା ମଧ୍ୟରେ ଟାବାକୋ ନାମକ ସ୍ଥାନ ଏବଂ 'ଟେବାଗୋ' ନାମକ ଦ୍ୱୀପ ଅଛି । ସ୍ପେନ୍‌ଦେଶୀୟ ଲୋକମାନେ ଯେତେବେଳେ ଆମେରିକା ମହାଦେଶରେ ରାଜତ୍ୱ କରୁଥିଲେ, ସେତେବେଳେ ସେମାନେ ଉପର୍ଯ୍ୟୁକ୍ତ ସ୍ଥାନ ବା ଦ୍ୱୀପରେ ଉତ୍ପନ୍ନ ଏକ ପ୍ରକାର ପତ୍ରବହୁଳ କ୍ଷୁଦ୍ରବୃକ୍ଷକୁ ଲକ୍ଷ୍ୟ କରି ଏହାର ନାମ ଦେଇଥିଲେ tabaco, ମେକ୍‌ସିକୋର ଏହି ନାମବାଚକ ଶବ୍ଦ ସ୍ପେନୀୟ ଭାଷାରେ ଓ ପରେ ପରେ ଫରାସୀ, ଇଟାଲୀୟ ଆଦି ଭାଷାରେ ପ୍ରବର୍ତ୍ତିତ ହୋଇଥିଲା ।

କ୍ରମଶଃ ଏହା ଉର୍ଦ୍ଦୁ ଭାଷାକୁ ଆସିଲାବେଳେ 'ତମ୍ବାକୁ' ରୂପରେ ପରିଣତ ହୋଇଥିଲା । ଉର୍ଦ୍ଦୁ ଭାଷାରୁ ଏହା କ୍ରମେ ହିନ୍ଦୀ, ଓଡ଼ିଆ ଓ ବଙ୍ଗଳା ଭାଷାକୁ ଆସିଥିଲା । ସମ୍ଭବତଃ ଉର୍ଦ୍ଦୁ ତମ୍ବାଖୁ ଶବ୍ଦ ହିନ୍ଦୀ ତମାଖୁରେ ପରିବର୍ତ୍ତିତ ହୋଇଥିଲା ଓ ଏହି ହିନ୍ଦୀ ଶବ୍ଦରୁ ଏକ ଦିଗରେ ବଙ୍ଗଳା ତାମାକ୍, ଅନ୍ୟ ଦିଗରେ ଓଡ଼ିଆ ତମାଖୁ ଶବ୍ଦର ସୃଷ୍ଟି ହେଲା । (୨୧)

**ଜୁଲାପ**—ଓଡ଼ିଆ ଜୁଲାପ ବା ଜୋଲାପ ଶବ୍ଦ ହିନ୍ଦୀ 'ଜଲ୍ଲାବ' ଅନୁକରଣରେ ଗଠିତ । ପାରସିକ 'ଗୁଲ' (rose) ଓ 'ଆବ୍' (water) ଶବ୍ଦଦ୍ୱୟର ସମ୍ମିଶ୍ରଣରେ ସୃଷ୍ଟ

(୨୦) ବାଂଲା ସାହିତ୍ୟେର ବିକାଶେର ଧାରା—ଶ୍ରୀ ଶ୍ରୀ କୁମାର ବନ୍ଦୋପାଧ୍ୟାୟ

(୨୧) ସରଳ ଭାଷାତତ୍ତ୍ୱ—ଗିରିଜାଶଙ୍କର ରାୟ

ଗୁଲାବ୍‌ରୁ ଜଲ୍ଲାବ ଆଦି ଶବ୍ଦର ସୃଷ୍ଟି ହୋଇପାରେ, କିନ୍ତୁ ଅର୍ଥଦୃଷ୍ଟିରୁ ତାହା ଭିନ୍ନ । ଭାରତରେ ମୋଗଲ ରାଜତ୍ୱ କାଳରେ ଫୁଲରୁ ଅତର ବା ସୁବାସିତ ପାଣି ପ୍ରସ୍ତୁତ ହେଉଥିବାରୁ ଭ୍ରମରେ ଫୁଲଟିର ନାମ 'ଗୋଲାପ'ରେ ପରିଣତ ହୋଇଯାଇଅଛି । ହିନ୍ଦୀ 'ଜଲ୍ଲାବ' ଶବ୍ଦର ଅର୍ଥ ମୂଳତଃ ବିରେଚକ, କିନ୍ତୁ ଗୋଲାପର ଅର୍ଥ ତାହା ନୁହେଁ । ମେକ୍‌ସିକୋ ଦେଶର ଜଲପ (xalapa) ନାମକ ସ୍ଥାନରେ ଏକପ୍ରକାର ଗଛର ମୂଳ ବିରେଚକ ରୂପରେ ବ୍ୟବହୃତ ହେଉଥିଲା । ଏହି ସ୍ଥାନ ସହିତ ସଂପୃକ୍ତ ଥିବାରୁ ଗଛଟିର ନାମ ଦିଆଯାଇଥିଲା 'ଜଲପ' । ପର୍ତ୍ତୁଗୀଜ୍‌ମାନେ ଭାରତରେ ବାଣିଜ୍ୟିକ ପ୍ରଭାବ ବିସ୍ତାର କରିବା ପରେ ଏହି ଶବ୍ଦ ଜଲ୍ଲାବ ରୂପରେ ହିନ୍ଦୀରେ ବ୍ୟବହୃତ ହୋଇ ଅନ୍ୟାନ୍ୟ ପ୍ରାଦେଶିକ ଭାଷାମାନଙ୍କରେ ପ୍ରଚଳିତ ହୋଇଅଛି । ପ୍ରକୃତରେ ଗୋଲାପ ଫୁଲ ସହିତ ଜଲ୍ଲପର ସମ୍ପର୍କ ଅତି କ୍ଷୀଣ । ମାତ୍ର ହାକିମୀ ଔଷଧମାନଙ୍କରେ ଗୋଲାପ ଫୁଲର ପାଖୁଡ଼ା ମୃଦୁ ବିରେଚକ ରୂପରେ ବ୍ୟବହୃତ ହେଉଥିବାରୁ ଶବ୍ଦମାନଙ୍କର ଅର୍ଥଗତ ଓ ରୂପଗତ ବିଶୃଙ୍ଖଳା ଦେଖାଦେଇଛି ଓ ଆମ୍ଭେମାନେ ଏହାର ପ୍ରକୃତ ସ୍ୱରୂପ ଚିହ୍ନିବାରେ ବାଧା ସୃଷ୍ଟି ହୋଇଛି । (୨୨)

**ସିଲ୍‌କ** (ରେଶମ)—ଚୀନଦେଶବାସୀମାନଙ୍କୁ ଗ୍ରୀକ୍ ଭାଷାରେ Seres କୁହାଯାଏ । ଏମାନଙ୍କ ମଧ୍ୟରେ ବହୁଳ ପ୍ରଚଳିତ ରେଶମ ଲୁଗାକୁ ଲାଟିନ୍ ଭାଷାରେ Sericum କୁହାଯାଉଥିଲା । ଏହି ଶବ୍ଦମାନଙ୍କରୁ ଇଂରେଜୀ ଶବ୍ଦ 'Serge'ର ଉତ୍ପତ୍ତି ହୋଇଅଛି । ଚୀନଦେଶବାସୀମାନେ 'ର' ଉଚ୍ଚାରଣ କରିପାରୁ ନଥିବାରୁ Serge ଶବ୍ଦ ସେମାନଙ୍କ ମୁଖରେ ବିକୃତ ହୋଇ silkରେ ରୂପାନ୍ତରିତ ହୋଇଅଛି ଏବଂ ଏହି ଶବ୍ଦ ଇଂରାଜୀ, ସ୍ୱିଡ଼ିସ୍ ତଥା ଡାନିସ୍ ଭାଷାମାନଙ୍କରେ ପ୍ରଚଳିତ ହୋଇଅଛି । ଇଂରାଜୀରେ Serge ଓ Silk ଉଭୟ ଶବ୍ଦର ପ୍ରଚଳନ ଥିବାରୁ ସେମାନଙ୍କ ମଧ୍ୟରେ ଅର୍ଥର ପାର୍ଥକ୍ୟ ସୃଷ୍ଟି କରାଯାଇଅଛି । (୨୩)

**ପାଉଁରୁଟି**—ପାଉଁରୁଟି ଆମ୍ଭମାନଙ୍କର ଅତି ପରିଚିତ ମାତ୍ର ଏହା ପଛରେ ଥିବା ଇତିହାସ ରହସ୍ୟାଚ୍ଛନ୍ନ ଓ କୌତୂହଳୋଦ୍ଦୀପକ । ଲାଟିନ୍ ଭାଷାରେ ପ୍ରଚଳିତ 'panis' ଶବ୍ଦର ଅର୍ଥ ରୁଟି । 'company' ଶବ୍ଦରେ ଏହି panis ଶବ୍ଦ ପର୍ତ୍ତୁଗୀଜ pas (ପାଓ) ରୂପରେ ବ୍ୟବହୃତ ହେଲା ଓ ପର୍ତ୍ତୁଗୀଜମାନଙ୍କର ଭାରତ ସହିତ ସମ୍ପର୍କ ସ୍ଥାପିତ ହେବାରୁ ଆମ ଭାଷାରେ 'ପାଓ' ସହିତ ଉଚ୍ଚାରଣ ସୌକର୍ଯ୍ୟ ପାଇଁ ଆନୁନାସିକ ବର୍ଣ୍ଣର ସଂଯୋଗ ଘଟି 'ପାଓଁ' ଶବ୍ଦ ପ୍ରଚଳିତ ହେଲା । ଧ୍ୱନିପରିବର୍ତ୍ତନ ଯୋଗୁଁ 'ପାଓଁ' 'ପାଉଁ'ରେ ପରିଣତ ହେଲା । 'ପାଉଁ' ଶବ୍ଦର ରୁଟି ଅର୍ଥ ସ୍ପଷ୍ଟ ନ ହେବାରୁ ପାଉଁରୁଟି ଶବ୍ଦର ବ୍ୟବହାର ହେଲା । ତାହା ହାତ ରୁଟିଠାରୁ ଭିନ୍ନ ମନେ କରାଯାଇ ନାନା କାଳ୍ପନିକ ବ୍ୟାଖ୍ୟାର ସୃଷ୍ଟି କରାଗଲା । ବାସ୍ତବରେ ପାଉଁରୁଟି ଶବ୍ଦର ଅର୍ଥ ରୁଟି + ରୁଟି, କିନ୍ତୁ କେବଳ 'ପାଉଁ' ଶବ୍ଦର ବ୍ୟବହାର ନ ଥିବାରୁ ଏ ଶବ୍ଦର ଐତିହାସିକ ପରିଚୟ ଅସ୍ପଷ୍ଟ ହୋଇ ରହିଛି । (୨୪)

---

(୨୨) (୨୩)—ସରଳ ଭାଷାତତ୍ତ୍ୱ—ଗିରିଜାଶଙ୍କର ରାୟ

(୨୪)—ଓଡ଼ିଆ ଶବ୍ଦତତ୍ତ୍ୱ, କୋଣାର୍କ, ୧୯୬୮ ଚତୁର୍ଥ ବର୍ଷ—୧ମ ସଂଖ୍ୟା

—ଗିରିଜା ଶଙ୍କର ରାୟ

**ଡେଙ୍ଗୁ** (ଠେଙ୍ଗାଜର)—ଆରବୀୟ ବ୍ୟବସାୟୀମାନଙ୍କଦ୍ୱାରା ଶୃଙ୍ଗବେର (ଅଦା) ଆଫ୍ରିକା ଓ ୟୁରୋପକୁ ନୀତ ହୋଇଥିଲା । ଶୃଙ୍ଗବେରକୁ ସେଠାର ଅଧିବାସୀମାନେ ଉଚ୍ଚାରଣ କଲେ ଜାଞ୍ଜିବର । ଶୃଙ୍ଗବେରକୁ ଜାଞ୍ଜିବରରୂପେ ଉଚ୍ଚାରଣ କରୁଥିବା ଅଧିବାସୀମାନଙ୍କର ଅଧ୍ୟୁଷିତ ଏକ ଦ୍ୱୀପକୁ ଆରବୀୟ ବ୍ୟବସାୟୀମାନେ ଜାଞ୍ଜିବର ନାମରେ ଅଭିହିତ କରିଥିଲେ । ଇଂରାଜୀରେ ଏହାର ରୂପ ହେଲା ginger । ଜାଞ୍ଜିବର ଦ୍ୱୀପନିବାସୀ ସ୍ୱାହିଲୀ ଉପଜାତୀୟ ବ୍ୟକ୍ତିମାନଙ୍କ ମଧ୍ୟରେ ଅଦା ବିସ୍ୱାଦୁ, କଟୁ ଓ ଜିହ୍ୱା ପକ୍ଷରେ କ୍ଲେଶକର ଥିଲା । ସେମାନେ ଅଦାକୁ (ଜାଞ୍ଜିବର>ଜିଞ୍ଜର>ଜିଙ୍ଗର>ଜିଙ୍ଗ> ଢିଙ୍ଗ)ରୁ ଅତି କ୍ଲେଶକର ଅର୍ଥରେ (ଅର୍ଥାଦେଶ) ବ୍ୟବହାର କଲେ । ସ୍ପେନଦେଶୀୟ ଲୋକମାନେ କ୍ଲେଶଦାୟକ ରୋଗ ଅର୍ଥରେ ଡେଙ୍ଗୁ (<ଢ଼ିଙ୍ଗ) ଶବ୍ଦ ବ୍ୟବହାର କଲେ । ଏହା ଡାକ୍ତରୀ ଶବ୍ଦରୂପେ ଏକ ବିଶେଷ ପ୍ରକାର ଜ୍ୱରର ସୂଚନା ଦେଲା । ସେଥିରୁ ପ୍ରଚଳିତ ହେଲା ଡେଙ୍ଗୁ ଜ୍ୱର । ଧ୍ୱନିସାମ୍ୟ ଦୃଷ୍ଟିରୁ ଡେଙ୍ଗୁ ଶବ୍ଦ ସହ ଠେଙ୍ଗା ଶବ୍ଦର ମିଶ୍ରଣ (contamination) ଘଟି ଡେଙ୍ଗୁ ଜ୍ୱର ଠେଙ୍ଗା ଜ୍ୱରରେ ପରିଣତ ହୋଇ-ଅଛି । (୧୫)

**ପୋଥି**—ସଂସ୍କୃତ ପୁସ୍ତିକା ଶବ୍ଦରୁ ଓଡ଼ିଆ 'ପୋଥି'ର ସୃଷ୍ଟି ବୋଲି ଆମେ ଗ୍ରହଣ କରିଥାଉ । (ପୁସ୍ତିକା>ପୁତ୍‌ଥିଆ>ପୁତ୍‌ଥି>ପୁଥି>ପୋଥି) । କିନ୍ତୁ ବାସ୍ତବରେ ଏହାର ମୂଳ ବୈଦେଶିକ । ଇଜିପ୍ଟ ଦେଶରେ papyrus ନାମକ ପତ୍ରରେ ଲେଖିବା ପରମ୍ପରା ବହୁ ପ୍ରଚଳିତ ଥିଲା ଏବଂ ଫଳରେ ଏକ ବିରାଟ ଗ୍ରନ୍ଥାଗାର ମୁଣ୍ଡ ଟେକିଥିଲା । ଖ୍ରୀ: ପୂ: ପ୍ରାୟ ଦୁଇଶହ ବର୍ଷ ପୂର୍ବେ ଆରବ ନିକଟ ପରଗାନମ (perganum) ଦେଶର ରାଜା ଇଉମେନେସ୍ ଇଜିପ୍ଟ ଗ୍ରନ୍ଥାଗାରର ପ୍ରତିଦ୍ୱନ୍ଦୀ ଏକ ଗ୍ରନ୍ଥାଗାର ନିର୍ମାଣ ଉଦ୍ଦେଶ୍ୟରେ ବିପୁଳ ସଂଖ୍ୟକ ଲେଖକ ନିଯୁକ୍ତ କଲେ, କିନ୍ତୁ ଇଜିପ୍ଟର ରାଜା ନିଜର ଗୌରବ ଅକ୍ଷୁଣ୍ଣ ରଖିବା ଲାଗି ପରଗାନମକୁ ପେପିରସ ପତ୍ରର ଚାଲାଣ ବନ୍ଦ କରିଦେଲେ । ଫଳରେ ଇଉମେନେସ୍‌ଙ୍କର ଯୋଜନା ବ୍ୟାହତ ହେଲା । ତେଣୁ ସେ ପୂର୍ବରୁ ପ୍ରଚଳିତ ଚର୍ମ ଉପରେ ଲେଖିବା ପରମ୍ପରାକୁ ପୁନଃପ୍ରବର୍ତ୍ତିତ ଓ ଉନ୍ନତ କରାଇ ପ୍ରାୟ ଦୁଇଲକ୍ଷ ଗ୍ରନ୍ଥ ଲେଖାଇଲେ ଓ ବିଶାଳ ଗ୍ରନ୍ଥାଗାର ଠିଆ କରାଇଲେ । ପାରଗାନମ୍‌ରେ ବ୍ୟବହୃତ ଏହି ଚର୍ମ (ମେଷ ଚର୍ମ)ର ନାମ 'ପୁସ୍ତ' । ପୁସ୍ତରେ ବହି ଲେଖାଯିବାରୁ 'ପୁସ୍ତକ' ବହି ଅର୍ଥରେ ପ୍ରଯୁକ୍ତ ହେଲା । ପରବର୍ତ୍ତୀ କାଳରେ ସଂସ୍କୃତ ପଣ୍ଡିତମାନେ ପୁସ୍ତ୍ (ଆଚ୍ଛାଦନ କରିବା) ଧାତୁରୁ ପୁସ୍ତକ ଶବ୍ଦର ବ୍ୟୁତ୍ପତ୍ତି ନିର୍ଣ୍ଣୟ କରିଥିଲେ ହେଁ ମୂଳ ଆର୍ଯ୍ୟ ଭାଷାରେ 'ପୁସ୍ତ୍' ଧାତୁ ନ ଥିବାରୁ ଏହା କେବଳ ଏକ ଅନୁମାନ-ବିଳାସ । ବାସ୍ତବରେ ପୋଥି ବିଦେଶୀ ଶବ୍ଦର ବିପରିଣାମ ମାତ୍ର । (୧୬)

**ପତଲୁନ୍**:—ପୂର୍ବେ ଭେନିସ୍‌ର Saint Pantaleon ଯେଉଁ ଜାମା ଓ ପ୍ୟାଣ୍ଟ ପିନ୍ଧୁଥିଲେ ତାହାକୁ pantaloon କୁହା ଯାଉଥିଲା । ଏହା ଏକ ନିର୍ଦ୍ଦିଷ୍ଟ ପ୍ରକାରର

---

(୧୫) (୧୬) ଓଡ଼ିଆ ଶବ୍ଦତତ୍ତ୍ୱ, କୋଣାର୍କ, ୧୯୭୮, ଚତୁର୍ଥ ବର୍ଷ—
୪ର୍ଥ ସଂଖ୍ୟା—ଗିରିଜା ଶଙ୍କର ରାୟ

ପୋଷାକ । ଏହି ପ୍ୟାଣ୍ଟଲୁନ ଶବ୍ଦ ପଟଲୁନ୍‌ରେ ରୂପାନ୍ତରିତ ହୋଇଛି । ଏହି ଶବ୍ଦରୁ ଇଂରାଜୀ pant ଶବ୍ଦର ସୃଷ୍ଟି । ଅନେକ ପଟଲୁନ୍ ସହିତ ପଟଲା ଗୁଣକୁ ସମ୍ପର୍କାନ୍ୱିତ କରିଥାନ୍ତି ମାତ୍ର ତାହା ଠିକ୍ ନୁହେ । (୨୭)

**ଅଗଷ୍ଟ** :—ଅଗଷ୍ଟସ୍ ହେଉଛନ୍ତି ରୋମର ସମ୍ରାଟ (ଖ୍ରୀ: ପୂ: ୬୩—୧୪ ଖ୍ରୀଷ୍ଟାବ୍ଦ) ଜୁଲିଅସ୍ ସିଜାରଙ୍କ ମୃତ୍ୟୁପରେ ତାଙ୍କର ଆତ୍ମୀୟ ଆଣ୍ଟୋନଙ୍କ ସହ ମିଶି ରୋମ ସାମ୍ରାଜ୍ୟକୁ ଶାସନ କରିଥିଲେ କିନ୍ତୁ ଆଣ୍ଟୋନ ଇଜିପ୍ଟର ରାଣୀ କ୍ଲିଓପାଟ୍ରାଙ୍କର ପ୍ରେମରେ ପଡ଼ି ଶାସନରେ ଅବହେଳା କରିବାରୁ ସେ ଯୁଦ୍ଧରେ ଆଣ୍ଟୋନଙ୍କୁ ପରାସ୍ତ କରି ରୋମର ଏକଛତ୍ର ଶାସକ ହୋଇଥିଲେ । ପ୍ରଥମେ ତାଙ୍କର ନାମ ଥିଲା ଅକ୍‌ଟେଭିଆନ୍ । ଏକଛତ୍ର ଶାସନ ହେବାପରେ ତାଙ୍କର ନାମ ହେଲା ଅଗଷ୍ଟସ୍ । ସେ ଇଟାର ରୋମକୁ ମାର୍ବଲ ରୋମରେ ପରିଣତ କରିଥିଲେ । ତାଙ୍କର ରାଜତ୍ୱ କାଳରେ କବି ଭର୍ଜିଲ ଓ ହୋରେସ୍ ଜୀବିତ ଥିଲେ ଓ ଯୀଶୁ ଖ୍ରୀଷ୍ଟ ଜନ୍ମଗ୍ରହଣ କରିଥିଲେ । ତାଙ୍କ ରାଜତ୍ୱର ଆରମ୍ଭକୁ ସ୍ମରଣୀୟ କରି ରଖିବା ପାଇଁ ସେ ସେହି ମାସର ନାମ ଦେଇଥିଲେ ଅଗଷ୍ଟ । (୨୮)

'**ବ୍ରିଟେନ୍, ଇଂଲଣ୍ଡ** :—ବ୍ରିଟେନ ଓ ଇଂଲଣ୍ଡ ଶବ୍ଦ ଦୁଇଟିର ଉତ୍ପତ୍ତି ଜାଣିବାକୁ ହେଲେ ଇତିହାସର ପୃଷ୍ଠା ଖୋଲିବାକୁ ପଡ଼ିବ । କେଲ୍‌ଟିକ୍ ଜାତିର ବ୍ରିଟନ୍‌ମାନେ ଇଂଲଣ୍ଡରେ ଥିଲେ ଆଦିମ ଅଧିବାସୀ । ତେଣୁ ସେମାନଙ୍କ ନାମାନୁସାରେ ଦେଶର ନାମ ହେଲା ବ୍ରିଟେନ୍ । ଏହା ପରେ ଜୁଲିଅସ୍ ସିଜାରଙ୍କ ନେତୃତ୍ୱରେ ରୋମାନ ଆକ୍ରମଣ ହେଲା । ରୋମାନମାନେ ପ୍ରାୟ ୩୦୦ ବର୍ଷ ପରେ ବ୍ରିଟେନ ଛାଡ଼ି ଚାଲିଯିବା ପରେ ଜର୍ମାନୀ ଅଞ୍ଚଳ ଟ୍ୟୁଟନିକ ଜାତିର ଲୋକମାନେ ବ୍ରିଟେନ୍‌ରେ ପ୍ରବେଶ କଲେ (୪୪୯ ଖ୍ରୀ:) । ସେମାନଙ୍କ ମଧ୍ୟରେ ଆଙ୍ଗ୍ଲ, ଜୁଟ୍ ଓ ସାକ୍‌ସନ ନାମରେ ତିନୋଟି ଜାତିଥିଲେହେଁ ଆଙ୍ଗ୍ଲ ଜାତି ଥିଲା ମୁଖ୍ୟ । ତେଣୁ ଦେଶର ନାମ ହେଲା ଆଙ୍ଗ୍ଲ-ଲଣ୍ଡ ବା ଇଂଲଣ୍ଡ । (୨୯)

**ଆତ** :—ଅନେକ ଭାବନ୍ତି ଆତ ହେଉଛି ମୂଳତଃ ଭାରତୀୟ ଫଳ ଓ ଆତ ଶବ୍ଦ ସଂସ୍କୃତ ଆତ୍ମପ୍ୟରୁ ଉତ୍ପନ୍ନ । ବରହୁତର ଭାସ୍କର୍ଯ୍ୟରେ, ମୁଦ୍ରାର ଖୋଦନରେ ଏବଂ ଅଜନ୍ତାର ଚିତ୍ରରେ ଆତ ପରି ଏକ ଫଳ ଅଛି କିନ୍ତୁ ଏହାର ଆକାର ଅସାଧାରଣ ଭାବରେ ବଡ଼ । General Cunningham ଏହାକୁ ଆତ (Custard appale) ବୋଲି ନିରୂପଣ କରିଛନ୍ତି ଏବଂ ଏହାକୁ ସଂସ୍କୃତ 'ଆତ୍ମପ୍ୟ'ର ରୂପାନ୍ତର ବୋଲି କହିଛନ୍ତି । ତାଙ୍କ ମତରେ, ପର୍ତ୍ତୁଗୀଜମାନେ ଭାରତକୁ ଏହି ଫଳ ଆଣିଛନ୍ତି କହିବା ଅର୍ଥ ନଉକାସ୍ଲକୁ କୋଇଲା ଆଣିବା ସହ ସମାନ ।

---

(୨୭) ଓଡ଼ିଆ ଶବ୍ଦତତ୍ତ୍ୱ, କୋଣାର୍କ, ୧୯୬୮, ଚତୁର୍ଥ ବର୍ଷ—୧ମ ସଂଖ୍ୟା—
ଗିରିଜା ଶଙ୍କର ରାୟ

(୨୮) (୨୯) ବିଶ୍ୱ ପରିଚୟ—ରାମକୃଷ୍ଣ ନନ୍ଦ

Watt କହନ୍ତି, କନିଙ୍ଗହାମ୍‌ଙ୍କ ଅନୁମିତ ଆତଫଳ ପଣସ ଅଥବା ପଦ୍ମର କଦମ୍ବ ଫୁଲ ହୋଇପାରେ । (୩୦) ମାକ୍ସମୁଲର ମଧ୍ୟ ସଂସ୍କୃତରେ ଆତପ୍ୟ ଶବ୍ଦ ଥିବା ସମ୍ପର୍କରେ ସନ୍ଦିହାନ । Yule ଏବଂ Burnell ମନେ କରନ୍ତି, ଆତ ଏବଂ ଏହାର ନାମ ମେକ୍ସିକୋରୁ ଫିଲିପାଇନ ଦ୍ୱୀପପୁଞ୍ଜ ବାଟେ ଭାରତକୁ ଆସିଅଛି । (୩୧) କିନ୍ତୁ M. S. Rodolfo Dalgadoଙ୍କର ମତ ହେଉଛି, ଆତ ଫିଲିପାଇନ ଦ୍ୱୀପପୁଞ୍ଜ ବାଟେ ଆସିନାହିଁ । କାରଣ ମାଲୟର ଭାଷାମାନଙ୍କରେ ଆତ ଶବ୍ଦ ନାହିଁ । ମାନିଲା ଭାଷାରେ ଯେଉଁ ate ବା atteର ବ୍ୟବହାର ହୋଇଛି ତାହା ଅର୍ବାଚୀନ । ଏହି ଫଳ ବୃକ୍ଷ ବ୍ରାଜିଲ୍‌ର ଓ ସେଠାରେ ଏହାର ନାମ ata ବା ateria. (୩୨)

ଉପସଂହାର— ଏହିପରି ଭାବରେ ପୃଥିବୀର ବିଭିନ୍ନ ଭାଷାର ଶବ୍ଦାବଳୀ ବିଭିନ୍ନ ସୂତ୍ରରେ ଓଡ଼ିଆ ଭାଷାରେ ସ୍ଥାନ ପାଇ ପରିଚିତ ଓ ପ୍ରତିଷ୍ଠିତ ହୋଇଯାଇଅଛି । ଅନ୍ୟ ଭାଷାରୁ ଆହରଣ ସମୟରେ ଅନେକ ଶବ୍ଦର ନାନାବିଧ ପରିବର୍ତ୍ତନ ଘଟିଅଛି । ଏହି ପରିବର୍ତ୍ତନର ଇତିହାସ ମଧ୍ୟ ଅଛି । ଶବ୍ଦଗୁଡ଼ିକର ରୂପଗତ, ଅର୍ଥଗତ, ଧ୍ୱନିଗତ, ବ୍ୟାକରଣଗତ, ବ୍ୟବହାରଗତ ଓ ଐତିହାସିକ ଅନୁଶୀଳନରେହିଁ ସେଗୁଡ଼ିକର ବ୍ୟୁତ୍ପତ୍ତି-କ୍ରମ ନିର୍ଣ୍ଣିତ ହୋଇପାରିବ । ତେଣୁ ଏହି ଶବ୍ଦଗୁଡ଼ିକର ପୂର୍ଣ୍ଣାଙ୍ଗ ଆଲୋଚନା କରିବାକୁ ହେଲେ ଆମ୍ଭମାନଙ୍କୁ ଶବ୍ଦସମ୍ଭାରର ପରିଧି, ଏହି ଶବ୍ଦମାନଙ୍କର ଉତ୍ସରଣ, ସଂଗ୍ରହଣ, ସଂଯୋଜନ, ସଗଠନ, ଲିଖିତ ଓ ଉଚ୍ଚାରିତ ରୂପର କାରଣ, ବ୍ୟାକରଣିକ ପ୍ରୟୋଗବିଧାନ, ଅର୍ଥ ସମ୍ପ୍ରସାରଣ, ଅର୍ଥ-ସଙ୍କୋଚନ, ଅର୍ଥୋତ୍କର୍ଷ, ଅର୍ଥାପକର୍ଷ, ଅର୍ଥାଦେଶ, ବ୍ୟଞ୍ଜନା, ଲକ୍ଷଣା ଅଳଙ୍କରଣ ପ୍ରଭୃତି ସମ୍ପର୍କରେ ଅନୁଶୀଳନ କରିବାକୁ ପଡ଼ିବ । ଓଡ଼ିଆ ଶବ୍ଦ ଭଣ୍ଡାରରେ ନିଜସ୍ୱ କେତେ, ଆହରିତ ସ୍ୱ କେତେ ଏବଂ ଆହରିତ 'ସ୍ୱ'ର ନିଜସ୍ୱୀକରଣ କେତେ ଜାଣିଲେ ଯାଇ ଓଡ଼ିଆ ଭାଷାର ପ୍ରକୃତ ସ୍ୱରୂପ, ଉତ୍ପତ୍ତି ଓ କ୍ରମବିକାଶ ସମ୍ପର୍କରେ ଏକ ଅବଧାରଣା କରି ହେବ । ତେଣୁ ଓଡ଼ିଆ ଭାଷାର ପ୍ରଭାବ ସମ୍ପର୍କରେ ଅଧିକରୁ ଅଧିକ ଅନୁସନ୍ଧାନ, ଅନ୍ୱେଷଣ, ଅନୁଶୀଳନ ଓ ଗବେଷଣା ଆବଶ୍ୟକ ।

## ସୂଚନାରେ ପ୍ରଦତ୍ତ ରଚନା ଅତିରିକ୍ତ ଅନ୍ୟାନ୍ୟ ସହାୟକ ରଚନା ସୂଚୀ


(୧) ହିନ୍ଦୀ ଭାଷା କା ବିକାଶ—ଆଚାର୍ଯ୍ୟ ଦେବେନ୍ଦ୍ର ନାଥ ଶର୍ମା ଓ ଡକ୍ଟର ରାମଦେବ ତ୍ରିପାଠୀ

(୨) ଭାଷା-ଚିନ୍ତନ—ଡକ୍ଟର ଭୋଲାନାଥ ତିଓ୍ୱାରୀ


---

(୩୦) A Dictionary of the Economic Production of India vol II.

(୩୧) Hobson—Jobson.

(୩୨) Influence of Protuguese vocables in Asiatic Languages.

(୩) ଭାଷା ବିଜ୍ଞାନ ପ୍ରବେଶ—ଡକ୍ଟର ଭୋଲାନାଥ ତିୱାରୀ
(୪) The Origin and Development of the Bengli Language—Dr. S. K. Chatterji.
(୫) ପୂର୍ଣ୍ଣଚନ୍ଦ୍ର ଭାଷାକୋଷ—ସଙ୍କଳକ ଗୋପାଳଚନ୍ଦ୍ର ପ୍ରହରାଜ
(୬) ଓଡ଼ିଆ ଭାଷାତତ୍ତ୍ୱର ଭୂମିକା—ଡକ୍ଟର ବଂଶୀଧର ମହାନ୍ତି

# ଓଡ଼ିଆ ସାହିତ୍ୟରେ ବୌଦ୍ଧ-ମୁଦ୍ରାଙ୍କ

ଶ୍ରୀ ସୁରେନ୍ଦ୍ରନାଥ ଦାଶ
୬ଷ୍ଠ ବର୍ଷ ଓଡ଼ିଆ

## ଓଡ଼ିଶାରେ ବୌଦ୍ଧଧର୍ମ :—

ଯୁଗ ଯୁଗଧରି ନାନାଧର୍ମ ଓ ଦର୍ଶନର ସମନ୍ୱୟ ଓ ମହାସଙ୍ଗମ ପୀଠ ଏହି ପବିତ୍ର ଭୂମି ଉତ୍କଳ । ଜାତିବର୍ଣ୍ଣ ନିର୍ବିଶେଷରେ ଶିକ୍ଷିତ ଓ ଅଶିକ୍ଷିତ, ବ୍ରାହ୍ମଣ ଓ ଚଣ୍ଡାଳ, ଯୋଗ-ସାଧକ ଓ ଭକ୍ତଉପାସକ, ତୁଳସୀସେବୀ ଓ ବିଲ୍ୱପତ୍ରସେବୀ, ପ୍ରତିମା ଉପାସକ ଓ ବ୍ରହ୍ମବାଦୀ ସମସ୍ତଙ୍କର ଲୀଳାଭୂମି ଏହି ଓଡ଼ିଶା । ଏହି ଭୂମିର ପ୍ରେରଣାରେ ବୌଦ୍ଧଭିକ୍ଷୁ ବିଶେଷରେ କରିଛନ୍ତି ଭ୍ରମଣ ଓ ହୋଇଛନ୍ତି ଶ୍ରମଣ । ସମସ୍ତ ଭାରତବର୍ଷରେ ଓଡ଼ିଶା ହିଁ ବୌଦ୍ଧ ଧର୍ମର ପ୍ରଧାନ ପୀଠ । ପୃଥିବୀର ପ୍ରଧାନ ବୌଦ୍ଧ ହେଉଛନ୍ତି ଏହି ଓଡ଼ିଶାବାସୀ ତପସୁ ଓ ଭଲ୍ଲିକ । ବୌଦ୍ଧଧର୍ମ ନାନା ଭାବରେ ଏ ଦେଶର ଧର୍ମ ଜୀବନକୁ ପ୍ରଭାବିତ କରିଛି । ପରବର୍ତ୍ତୀକାଳରେ ଅଶୋକଙ୍କର ରାଜତ୍ୱର ଦୁଇଶହ ବର୍ଷ ପରେ ବୌଦ୍ଧଧର୍ମ ମହାଯାନରେ ପରିଣତ ହେଲା । ପରେ ହୀନଯାନ ଓ ଅର୍ହତଯାନ ବିଶେଷ ଆଦୃତ ହେଲା । ପିଚୋପାଦ ସମ୍ଭଳଠାରେ ତନ୍ତ୍ରଶିକ୍ଷା କରି ରତ୍ନଗିରିରେ ଆଚାର୍ଯ୍ୟ ହେଲେ ଏବଂ ସେ 'କାଳଚକ୍ର ଯାନ' ନାମରେ ଏକ ନୂତନ ଯାନ ସୃଷ୍ଟି କଲେ । ଏହିରୂପେ ରତ୍ନଗିରି ମହାଯାନର ପ୍ରସିଦ୍ଧ ପୀଠରୂପେ ପ୍ରସିଦ୍ଧି ଲାଭ କରି ଶେଷରେ ତାନ୍ତ୍ରିକ ବୌଦ୍ଧପୀଠରେ ପରିଣତ ହେଲା । ଖିଲଜି ରାଜବଂଶର ରାଜତ୍ୱ ସମୟରେ ବକ୍ତିଆର ଖିଲଜିଙ୍କ ନେତୃତ୍ୱରେ ମୁସଲମାନମାନେ ଭାରତରେ ବୌଦ୍ଧ ବିହାରମାନ ଧ୍ୱଂସ କରି ହଜାର ହଜାର ବୌଦ୍ଧ ଭିକ୍ଷୁ ଓ ଭିକ୍ଷୁଣୀଙ୍କୁ ହତ୍ୟା କରିବାକୁ ଲାଗିଲେ । ତତ୍ ସଙ୍ଗେ ସଙ୍ଗେ ଗୁପ୍ତବଂଶର ଶାସନବେଳେ ହିନ୍ଦୁମାନଙ୍କ ହାତରେ ବୌଦ୍ଧଧର୍ମର ବହୁ କ୍ଷତି ହୋଇଥିଲା । ବୌଦ୍ଧ ବିହାରମାନଙ୍କରେ ବୌଦ୍ଧଭିକ୍ଷୁ ଓ ଭିକ୍ଷୁଣୀମାନଙ୍କର ଏକତ୍ର ବାସ ଫଳରେ କ୍ରମେ ମନ୍ଦଫଳ ପ୍ରକାଶିତ ହେଲା ।

ଫଳରେ ବୌଦ୍ଧ ବିହାରଗୁଡ଼ିକ ସାଧାରଣ ଭୋଗବିଳାସର କେନ୍ଦ୍ରସ୍ଥଳୀରୂପେ ରୂପରେଖ ନେଲା । ଫଳରେ ୭ମ ଶତାବ୍ଦୀବେଳକୁ ବୌଦ୍ଧ ଧର୍ମରେ ତନ୍ତ୍ରବାଦର ଅଭ୍ୟୁଦୟ ହେଲା । ମହାଯାନର ସୂତ୍ର କ୍ରମେ ମନ୍ତ୍ରରେ ପରିଣତ ହେଲା । ମୁଦ୍ରା ମଣ୍ଡଳ, ଅଭିଷେକ, ସମାଧି ଆଦି ପ୍ରକ୍ରିୟା ବୌଦ୍ଧ ସାଧନାରେ ଗୃହୀତ ହେବା ସଙ୍ଗେ ସଙ୍ଗେ ମନ୍ତ୍ର ଜଗତରେ ମାରଣ, ମୋହନ, ସ୍ତମ୍ଭନ, ଉଚ୍ଚାଟନ, ବଶୀକରଣ ଆଦି ଆଭିଚାର ଓ ମଦ୍ୟ, ମାଂସ, ମତ୍ସ୍ୟ, ମୁଦ୍ରା ଓ ମୈଥୁନ ଆଦି ଏହି ପଞ୍ଚ 'ମ' କାର ବୌଦ୍ଧ ଧର୍ମରେ ପ୍ରବେଶ ଲାଭ କଲା । ଏହିପରି ବହୁ ପରିବର୍ତ୍ତନ ନେଇ ମହାଯାନ ତନ୍ତ୍ରଯାନରେ ପରିଣତ ହେଲା ।

୭ମ ୮ମ ଶତାବ୍ଦୀ ବେଳକୁ ଉଡ୍ଡୀୟାନପୀଠ ଓଡ଼ଶାରେ ପ୍ରସିଦ୍ଧ ତାନ୍ତ୍ରିକ ପୀଠ ରୂପେ ଖ୍ୟାତ ଲଭ କରିଥିଲା । ସିଦ୍ଧ ଇନ୍ଦ୍ରଭୂତ ତାଙ୍କ 'ଜ୍ଞାନସିଦ୍ଧି'ର ମଙ୍ଗଳାଚରଣରେ ଉଡ୍ଡୀୟାନର ଦେବତା ବୁଦ୍ଧରୂପୀ ଜଗନ୍ନାଥଙ୍କୁ ସ୍ତୁତ କରିଛନ୍ତି ।

"ପ୍ରଣିପତ୍ୟ ଜଗନ୍ନାଥଂ ସର୍ବ ଜ୍ଞାନ ବରାର୍ଚ୍ଚିତମ୍
ସର୍ବ ବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମଂ ।"

୭ମ, ୮ମ ଶତାବ୍ଦୀବେଳକୁ ଭାରତରେ କାମାକ୍ଷା, ଶ୍ରୀହଟ୍ଟ, ପୂର୍ଣ୍ଣଗିରି ଓ ଉଡ୍ଡୀୟାନ ଯେଉଁ ଚାରୋଟି ପୀଠ ପ୍ରସିଦ୍ଧି ଲଭ କରିଥିଲା ସେଥିମଧ୍ୟରେ ଉଡ୍ଡୀୟାନ ପୀଠ ହିଁ ଥିଲା ଶ୍ରେଷ୍ଠ ଓ ପ୍ରସିଦ୍ଧ ପୀଠ । ମହାମହୋପାଧ୍ୟାୟ ହର ପ୍ରସାଦ ଶାସ୍ତ୍ରୀ ଓ ଡଃ. ବିନୟତୋଷ ଭଟ୍ଟାଚାର୍ଯ୍ୟ ଉଡ୍ଡୀୟାନକୁ ଓଡ଼ଶା ବୋଲି ପ୍ରମାଣିତ କରିଛନ୍ତି । ଏହି ତନ୍ତ୍ରଯାନର ଭିତ୍ତି ଉପରେ ସହଜ ଯାନର ଅବସ୍ଥିତ । ଏହାର ପ୍ରଥମ ପ୍ରବର୍ତ୍ତକ ବା ଆଚାର୍ଯ୍ୟ ହେଉଛନ୍ତି ଇନ୍ଦ୍ରଭୂତ । ତିବ୍ବତରେ ତାଞ୍ଜୁର ମଠରୁ ମିଳିଥିବା ଗ୍ରନ୍ଥର ସୂଚୀରେ ଇନ୍ଦ୍ରଭୂତଙ୍କୁ ଉଡ୍ଡୀୟାନର ରାଜା ଓ ବେଳେବେଳେ ଓଡ଼ଶାର ରାଜା ବୋଲି କୁହାଯାଇଛି । ଇନ୍ଦ୍ରଭୂତଙ୍କ ଭଉଣୀ ଲକ୍ଷ୍ମୀଙ୍କର୍ ବଜ୍ରଯାନରୁ ସହଜଯାନର ଦର୍ଶନତତ୍ତ୍ୱ ବାହାର କଲେ । ସେ ଦୃଢ଼ଭାବରେ ଘୋଷଣା କଲେ ଯେ, କାଷ୍ଠ ପାଷାଣର ପ୍ରତିମା ନିକଟରେ ପୂଜା ସମ୍ପାଦନ କରି ନାନା ଭାବରେ ଶରୀରକୁ ପୀଡ଼ା ଦେଇ ଉପବାସ ଆଦି କଷ୍ଟକର ସାଧନାରେ କିଛି ଲଭ ନାହିଁ । ମନୁଷ୍ୟର ଶରୀର ହିଁ ବିଶ୍ୱ ବ୍ରହ୍ମାଣ୍ଡର ପ୍ରତୀକ । ଏହାର ଭିତରେ ସମସ୍ତ ଦେବଦେବୀଙ୍କ ଅବସ୍ଥିତ । ତେଣୁ କାୟା ସାଧନା ହିଁ ପ୍ରକୃତ ସାଧନା । ସେ ତାଙ୍କର ସିଦ୍ଧି ଗ୍ରନ୍ଥରେ ପ୍ରକାଶ କରିଛନ୍ତି,

"ନ କଷ୍ଟ କଳ୍ପନା କୁର୍ଯ୍ୟାତ୍—ନୋପବାସୋ ନ ଚ କ୍ରିୟାଂ
ସ୍ନାନ ଶୌଚଂ ନ ଚୈ ବାତ୍ର—ଗ୍ରାମଧର୍ମ ବିବର୍ଜନଂ
ନ ଚାପି ବନ୍ଦୟେତ୍ଦେବାନ୍—କାଷ୍ଠ ପାଷାଣ ମୃଣ୍ମୟାନ୍
ପୂଜା ମ ସୈବ କାୟସ୍ୟ—କୁର୍ଯ୍ୟାନ୍ନିତ୍ୟଂ ସମାହିତଃ ।"

ଏହା ହିଁ ହେଉଛି ସହଜଯାନର ପରମ ବିଶ୍ୱାସ ।

**ଧର୍ମ ଓ ସାହିତ୍ୟ :—**

ଧର୍ମ ଓ ସାହିତ୍ୟ ଉଭୟର ଉପାଦାନ ପରସ୍ପରଠାରୁ ପୃଥକ୍ । ତଥାପି ମାନବ ଜୀବନ ନିମିତ୍ତ ଉଭୟର ଆବଶ୍ୟକତା ଅପରିହାର୍ଯ୍ୟ । ଜଳ ବିନା ମତ୍ସ୍ୟର ଜୀବନ ଯାପନ ଯେପରି ଅସମ୍ଭବ, ସୂର୍ଯ୍ୟ ବିନା ରୌଦ୍ରର କଳ୍ପନା ଯେପରି ଅବାସ୍ତବ, ଧର୍ମ ବିନା ସାହିତ୍ୟ ସେହିପରି ଅଯୌକ୍ତିକ । ସାହିତ୍ୟ ଗତିଶୀଳ, ଏହା ଜୀବନ୍ତ ଓ ଶାଶ୍ୱତ । ଏହା ଧର୍ମକୁ ଭିତ୍ତି କରି କେଉଁଠି ପରିବର୍ତ୍ତିତ, କେଉଁଠି ପରିବର୍ଦ୍ଧିତ ଓ କେଉଁଠି ସମୃଦ୍ଧ । ଧର୍ମ ଓ ସାହିତ୍ୟ ଭିତରେ ସମ୍ପର୍କ ଦର୍ଶାଇବାକୁ ଯାଇ ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି କହନ୍ତି—"ସମାଜରେ ଧର୍ମ ଓ ସାହିତ୍ୟ ଠିକ୍ ଗୋଟିଏ ବୃନ୍ତର ଦୁଇଟି ଫୁଲ । ଗୋଟିଏ ବୃନ୍ତଚ୍ୟୁତ ହେଲେ ଅନ୍ୟଟିର ସ୍ଥିତି ଅସମ୍ଭବ । ସମାନ୍ତର ଭାବରେ ଦୁହେଁ କଢ଼ିରୂପେ ଦେଖା ଦେଇଛନ୍ତି । ପୁଣି

ମମାନଙ୍କର ଜୀବନରେ ପୁଷ୍ପରୂପେ ବିକଶିତ ହୋଇଛନ୍ତି । ଏହିପରି ବିକଶିତ ରୂପ ନେଇ ଦୃହେଁ ମଧ୍ୟ ଅନାଦି କାଳରୁ ସମାଜର ଜୀବନରେ ରହିଆସିଛନ୍ତି । ସାହିତ୍ୟର ଉନ୍ମେଷ ଧର୍ମ ମଧ୍ୟରୁ ଏବଂ ଯୁଗେ ଯୁଗେ ଧର୍ମ ସାହିତ୍ୟକୁ ପରିପୁଷ୍ଟ କରିଛି । କେବଳ ଆମର ଓଡ଼ିଆ ସାହିତ୍ୟ ନୁହେଁ; ଭାରତୀୟ ସାହିତ୍ୟ, ଗ୍ରୀକ୍ ସାହିତ୍ୟ, ଏପରିକି ସମଗ୍ର ବିଶ୍ୱ ସାହିତ୍ୟ ମଧ୍ୟ ଧର୍ମର ଅପ୍ରତିହତ ପ୍ରଭାବରୁ ମୁକ୍ତ ନୁହେଁ ।”

## ଓଡ଼ିଆ ସାହିତ୍ୟର ପ୍ରାଚୀନ ନିଦର୍ଶନ ବୌଦ୍ଧଗାନ ଓ ଦୋହା :—

ସପ୍ତମ ଅଷ୍ଟମ ଶତାବ୍ଦୀର ବୌଦ୍ଧଗାନ ଦୋହା ହେଉଛି ଓଡ଼ିଆ ସାହିତ୍ୟର ପ୍ରଥମ ଲିଖିତ ସାହିତ୍ୟ । ଏହାର ଭାଷା ସାନ୍ଧ୍ୟ ବା ସନ୍ଧ୍ୟାଭାଷା । ଏହାର ରଚୟିତାଗଣ ସେହି ବୌଦ୍ଧ-ସହଜିଆ ସାଧକ । ଏମାନଙ୍କୁ କେହି କେହି ଶୂନ୍ୟବାଦୀ, କାୟାସାଧକ ଓ ମଧ୍ୟମପନ୍ଥୀ ବୋଲି କହିଥାନ୍ତି ।

ଏମାନଙ୍କ ମତରେ “ପ୍ରତ୍ୟେକ ବ୍ୟକ୍ତି ଓ ବସ୍ତୁ ମଧ୍ୟରେ ସମସ୍ତ ପରିବର୍ତ୍ତନ ମଧ୍ୟରେ ଏକ ଅପରିବର୍ତ୍ତନୀୟ ସହଜ ସ୍ୱରୂପ ବିଦ୍ୟମାନ୍ । ଏହି ସହଜ ସ୍ୱରୂପକୁ ଉପଲବ୍ଧି କରି ସହଜାନନ୍ଦ ବା ମହାସୁଖ ଲାଭ କରିବା ହେଲା ସେମାନଙ୍କର ଲକ୍ଷ୍ୟ ।

ଚିତ୍ତ ହେଉଛି ଶରୀରର ସାଧନାର ଆଧାର । ଏହି ଚିତ୍ତରେ ‘ସହଜ’ ଭାବ ଜାଗ୍ରତ ନ ହେବାଯାଏଁ ଏହା ସ୍ଥିର ହେବନାହିଁ ବା ଏହାର ଶୃଙ୍ଖଳାଭାବ ଦୂର ହେବନାହିଁ । ଚିତ୍ତର ଶୃଙ୍ଖଳା ଦୂର ନ ହେଲେ କାୟାକୁ କାଳ କବଳରୁ ରକ୍ଷା କରାଯାଇ ପାରିବ ନାହିଁ । ତେଣୁ ଏହି ‘ସହଜ’ ଭାବ ଜାଣିବା ପାଇଁ ଉପଯୁକ୍ତ ଗୁରୁ ଦରକାର । ଲୁଇପାଦ କହିଛନ୍ତି—

“କାଆ ତରୁବର ପଞ୍ଚ ବି ଡ଼ାଲ
ଚଞ୍ଚଲ ଚୀଏ ପଇଠା କାଲ
ଦିଢ଼ କରିଅ ମହାସୁହ ପରିମାଣ
ଲୁଇ ଭଣଇ ଗୁରୁ ପୁଚ୍ଛିଅ ଜାଣ
ସଅଲ ସମାହିଅ କାହି କରିଅଇ
ସୁଖ ଦୁଃଖତେଁ ନିଚିତ ମରିଅଇ
ଏଡ଼ି ଏଉ ଛାନ୍ଦକ ବାନ୍ଧ କରଣ କପଟେର ଆସ
ସୁନୁପାଖ ଭିଡ଼ି ଲେହୁରେ ପାସ
ଭଣଇ ଲୁଇ ଆମ୍ହେ ଝାଣେ ଦିଠା
ଧମଣ ଚମଣ ବେଣି ପିଣ୍ଡି ବଇଠା ।”

ଏହି ସହଜିଆ ସିଦ୍ଧଗଣ ଚିତ୍ତର ଚଞ୍ଚଳତା ଓ ତାର ଜନ୍ମଗତି ନିବାରଣ ପାଇଁ ହଠଯୋଗ ବା କାୟାସାଧନା କରିଥାନ୍ତି । ତେଣୁ ତନ୍ତ୍ରର ନାଡ଼ି ଓ ଚକ୍ରତତ୍ତ୍ୱ ମଧ୍ୟ ଏହି ଚର୍ଯ୍ୟାଗୀତିକାରେ ପରିଦୃଷ୍ଟ ହୁଏ । ହିନ୍ଦୁ ତନ୍ତ୍ରାନୁସାରେ ମଣିଷ ଶରୀରରେ ୭୨୦୦୦ ନାଡ଼ି ଅଛି ସେ ମଧ୍ୟରୁ ୩୨ଟି ନାଡ଼ି ପ୍ରଧାନ, ପୁଣି ଏମାନଙ୍କ ମଧ୍ୟରେ ତିନୋଟି ନାଡ଼ି ଶ୍ରେଷ୍ଠ । ହିନ୍ଦୁ ମତରେ ତାହା ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା । ସହଜ ସାଧକମାନେ ଏହି ଇଡ଼ାକୁ

ପ୍ରଜ୍ଞା, ଲଲନା, ଚନ୍ଦ୍ର, ଶଶୀ, ଆଲି, ନାଦ, ଗଙ୍ଗା, ପ୍ରକୃତ, ଅଭେଦ, ଅଚକ୍ର, ଶୂନ୍ୟତା ଓ ଧମଣ, ପିଙ୍ଗଳାକୁ ଉପାସ୍ତ, ରସନା, ସର୍ଯ୍ୟ, ରବି, କାଳି, ବନ୍ଧୁ, ଯମୁନା, ପୁରୁଷ, ଭେଦ, ଚକ୍ର, କରୁଣା ଓ ଚମଣ ବୋଲି କହୁଥାନ୍ତି । ମଧ୍ୟନାଡ଼ି ସୁଷୁମ୍ନା ଅବଧୂତ, ନୈରାତ୍ମା, ସହଜସୁନ୍ଦରୀ, ଯୋଗିନୀ, ବଧୂ, ଡୋମ୍ବୀ ନାମରେ ପରିଚିତ ।

ହିନ୍ଦୁ ତନ୍ତ୍ରର ଷଡ଼ଚକ୍ର ଅନୁରୂପରେ ଏମାନେ ଚତୁଶଚକ୍ରର କଳ୍ପନା କରିଛନ୍ତି । ମନୁଷ୍ୟର ନାଭିମଣ୍ଡଳରେ ନର୍ମାଣଚକ୍ର, ହୃଦସ୍ଥରେ ଧର୍ମଚକ୍ର, କଣ୍ଠରେ ସମ୍ଭୋଗଚକ୍ର ଓ ମସ୍ତିଷ୍କରେ ମହାସୁଖଚକ୍ର ବା ସହସ୍ରାର ଚକ୍ର ବିଦ୍ୟମାନ । ଏହି ସହସ୍ରାର ଚକ୍ରରେ ଉଷ୍ଣୀଷ କମଳ ବିକଶିତ । ଏତଦ୍ ବ୍ୟତୀତ ଚତୁଶଚକ୍ରରେ ଚତୁଃକ୍ଷଣ, ବିଚିତ୍ର, ବିପାକ, ବିମର୍ଦ୍ଦ ଓ ବିଲକ୍ଷଣ ଓ ଚତୁଃମୁଦ୍ରା କର୍ମ, ଧର୍ମ, ମହା, ସମୟ ଉଲ୍ଲେଖ କରାଯାଏ । ଯୋଗୀ ପ୍ରଥମେ ନାଭିମଣ୍ଡଳର ନର୍ମାଣ ଚକ୍ରରେ କୁଣ୍ଡଳୀନୀଶକ୍ତିକୁ ଜାଗ୍ରତ କରେ ଓ ହଠଯୋଗ ଯୋଗେ ଏହା ଭିନ୍ନ ଭିନ୍ନ କାର୍ଯ୍ୟ ଓ ଚକ୍ରମଧ୍ୟ ଦେଇ ଶେଷରେ ସହସ୍ରାର ଚକ୍ରରେ ପହଞ୍ଚେ । ସେତେବେଳେ ସେ ଆନନ୍ଦ, ପରମାନନ୍ଦ, ବିରମାନନ୍ଦ ଅତିକ୍ରମ କରି ସହଜାନନ୍ଦ ଉପଲବ୍ଧି କରେ । ଏହି ସହଜାନନ୍ଦ ହିଁ 'ପ୍ରଭାସ୍ୱରଶୂନ୍ୟ' ଏହା ହିଁ ମହାସୁଖ । ହିନ୍ଦୁଧର୍ମର ଏହା ମୋକ୍ଷ, ତାନ୍ତ୍ରିକ ସାଧନାର ସମରସ, ବୌଦ୍ଧମାନଙ୍କର ଏହା ନିର୍ବାଣ । ସହଜ ସାଧନା ତତ୍ତ୍ୱର ବିଚିତ୍ର ସ୍ୱରୂପ ସମ୍ପର୍କରେ ଲୁଇପାଦ ସୂଚନା ଦେଇ କହିଛନ୍ତି—

"ଭାବ ନ ହୋଇ ଅଭାବ ନ ଜାଇ
ଅଇସ ସବୋହେ କୋପ ପତିଆଇ
ଲୁଇ ଭଣଇ ବଢ଼ ଦୁଲକ୍ଖ ବିଣାଣା
ତିଅ ଧାଏ ବିଲସଇ ଉହ ଲାଗେ ଣା
ଜାହେର ବାଣ ଚହ୍ନ ରୁବ ନ ଜାଣୀ
ସୋ କଇସେ ଆଗମ ବେଏଁ ବଖାଣୀ
କାହାରେ କିସ ଭଣି ମଇ ଦିବି ପିରିଛା
ଉଦକ ଚାନ୍ଦ ଜିମ ସାଚ ନ ମିଚ୍ଛା
ଲୁଇ ଭଣଇ (ମଇ) ଭାଇବ କିସ
ଜା ଲଇ ଅଚ୍ଛମ ତାହେର ଉହ ଣ ଦିସ ।"

ତତ୍କାଳୀନ ସମାଜର ରୀତିନୀତି, ଚାଲିଚଳନ ସାମାଜିକ ବିଧିବିଧାନଗୁଡ଼ିକ ଅତି ସରଳ ଭାବରେ ବିଭିନ୍ନ ରୂପକ ମାଧ୍ୟମରେ ଏହି ସାହିତ୍ୟରେ ସ୍ଥାନ ପାଇଛି, ଯଦିଓ ଏହାର ଅନ୍ତଃରୂପ ବହିଃରୂପଠାରୁ ଭିନ୍ନ ।

"ନଗର ବାହିରେ ରେ ଡୋମ୍ବି ! ତୋହୋରି କୁଡ଼ିଆ
ଛୋଇ ଛୋଇ ଜାଇ ସୋ ବାହ୍ମଣ ନାଡ଼ିଆ
ଆଲୋ ଡୋମ୍ବି । ତୋଏସମ କରିବୋ ମୋ ସାଙ୍ଗ
ନିଘିନ କାହ୍ନ କାପାଲି ଯୋଇଲାଙ୍ଗ ।"

ଏହି ଉକ୍ତିଟିର ବାହ୍ୟ ସୌନ୍ଦର୍ଯ୍ୟ ଓ ରୂପକଳ୍ପ ମାଧ୍ୟମରେ ଏକ ଜୀବନ୍ତ ବର୍ଣ୍ଣନା, ଲାଳିତ୍ୟ ଓ ପ୍ରକାଶ ଭଙ୍ଗୀରେ ପାଠକ ମୁଗ୍ଧ ହେଲେ ମଧ୍ୟ ଏହାର ଅନ୍ତଃରୂପ ବୁଝିବାକୁ

ସମର୍ଥ ହୋଇପାରେ ନାହିଁ । ସେହି ସିଦ୍ଧାଚାର୍ଯ୍ୟ (ଗୁରୁ-ଶିଷ୍ୟ କ୍ରମାନ୍ୱୟ) ସମ୍ପ୍ରଦାୟ ହିଁ ଏହାର ପ୍ରକୃତ ଅର୍ଥ ଗ୍ରହଣକାରୀ ।

## ନାଥ ସାହିତ୍ୟ ଓ ବୌଦ୍ଧଧର୍ମ :—

ଅଧ୍ୟାପକ ଡଃ ବଂଶୀଧର ମହାନ୍ତିଙ୍କ ମତରେ ଶିଶୁବେଦ ହେଉଛି 'ନାଥ ସାହିତ୍ୟ'ର ଏକ ଶ୍ରେଷ୍ଠ ସମ୍ପଦ ଏବଂ ଏକ ଯୁଗାନ୍ତକାରୀ ରଚନା । ଏହି ନାଥଯୋଗୀ ଏବଂ ଏମାନଙ୍କର ଧର୍ମ ତଥା ସାହିତ୍ୟ ହେଉଛି ବୌଦ୍ଧ ଧର୍ମର ଶେଷ ସ୍ମାରକୀ । ବୌଦ୍ଧଧର୍ମର ସହଜ ସାଧନା ପରି ଏହାଙ୍କର ଗୁରୁ ପରଂପରାରେ ସିଦ୍ଧ ସାଧନା ଓ ଶୂନ୍ୟ ନିରାକାର ବ୍ରହ୍ମ ଉପାସନା ହେଉଛି ନାଥଧର୍ମର ମୂଳତତ୍ତ୍ୱ ।

"ଯେହ୍ନେକ ବକା ନ ହଲଇ ନୀର
ତେହ୍ନେ ମନ ପବନ କରି ଥିର
ବଗ ମଛ ମାରେ ସମ କରି ଜାଣ
ତେବେ ସେ ପିଣ୍ଡକୁ ପରଚେ ପ୍ରାଣ" ।

ବକ ଓ ମତ୍ସ୍ୟର ଏକ ସୁନ୍ଦର ରୂପକ ମଧ୍ୟରେ ଯୋଗ ସାଧନାର ସେହି ଗୁହ୍ୟାତ୍ତି ଗୁହ୍ୟମ୍ ତତ୍ତ୍ୱକୁ ପରିବେଷଣ କରାଯାଇଛି । ବକ ଯେପରି ସ୍ଥିର ଓ ଅଚଞ୍ଚଳ ଚିତ୍ତରେ ମାଛକୁ ଚାହିଁ ରହିଥାଏ ସେହିପରି ନାଦ ବିନ୍ଦୁକୁ ସ୍ଥିର କରି ଯୋଗ ସାଧନାରେ ରତ ହେଲେ ପ୍ରକୃତ ଜ୍ଞାନ ଲାଭ ହୋଇପାରିବ । ଫଳରେ ମହାସୁଖ ଲାଭ କରିବା ପାଇଁ ପଥ ଉନ୍ମୋଚିତ ହେବ ।

## ମାଦଳାପାଞ୍ଜିରେ ବୌଦ୍ଧଧର୍ମର ସ୍ୱରୂପ :—

ମାଦଳାପାଞ୍ଜିର କାଳ ନିରୂପଣ ଉପରେ ନାନା ମୁନିଙ୍କର ନାନା ମତ । ଏହାର କାଳ ନିରୂପଣ କରି 'ଷ୍ଟାର୍ଲିଂ ସାହେବ ହଣ୍ଟର, ଫ୍ଲିଟ ସାହେବ, ରମା ପ୍ରସାଦ ଚନ୍ଦ୍, ରାଖଲ ଦାସ ବାନାର୍ଜି, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ନୀଳକଣ୍ଠ ଦାସ, ହରେକୃଷ୍ଣ ମହତାବ, କୁଞ୍ଜବିହାରୀ ତ୍ରିପାଠୀ, ପରମାନନ୍ଦ ଆଚାର୍ଯ୍ୟ, ସୂର୍ଯ୍ୟ ନାରାୟଣ ଦାସ, ଆର୍ତ୍ତବଲ୍ଲଭ ମହାନ୍ତି, କୃପାସିନ୍ଧୁ ମିଶ୍ର, ପ୍ୟାରୀମୋହନ ଆଚାର୍ଯ୍ୟ, ସଦାଶିବ ରଥ ଶର୍ମା ପ୍ରଭୃତି ଐତିହାସିକ, ପଣ୍ଡିତ, ସାହିତ୍ୟିକ ଓ ସମାଲୋଚକମାନେ ନିଜନିଜର ମତ ପ୍ରଦାନ କରିଅଛନ୍ତି । ମାଦଳାପାଞ୍ଜିର କାଳ ନିରୂପଣ ଉପରେ ମତଭେଦ ଦେଖା ଦେଲେ ହେଁ ଏଥିରେ ଯେ ଐତିହାସିକ ଉପାଦାନ ଅଛି ଏ କଥା କେହି ଅସ୍ୱୀକାର କରିବେ ନାହିଁ, ଯଦିଓ ଏଥିରେ କିମ୍ବଦନ୍ତୀର ମାତ୍ରା ବହୁଳ ।

ମାଦଳାପାଞ୍ଜି ବର୍ଣ୍ଣିତ ମଦନ ମହାଦେବଙ୍କ ସମୟରେ ବୌଦ୍ଧ ବ୍ରାହ୍ମଣ କଳି ଐତିହାସିକ ସତ୍ୟ ଅଟେ । "ଏକ ଦିନରେ ଏ ରାଜାର ରାଣୀ ବୋଇଲା ବଉଦ୍ଧମାନେ ବଡ଼ ସର୍ବଜ୍ଞ । ଏଥିକି ରାଜା ବୋଇଲେ ବଉଦ୍ଧେ କି ସର୍ବଜ୍ଞ ବ୍ରାହ୍ମଣମାନେ ବଡ଼ । ଏଥିକୁ ରାଣୀ ବୋଇଲା ବ୍ରାହ୍ମଣମାନଙ୍କୁ ବଉଦ୍ଧମାନଙ୍କୁ ପରୀକ୍ଷା କର । କେ ସର୍ବଜ୍ଞ

କାହାର ବଚନ ପ୍ରମାଣ । × × ହାଣ୍ଡି ଗୋଟିକେ ସର୍ପ ଗୋଟିଏ ପୂରାଇ ମୁଦାଇ ବଉଦ୍ଧମାନଙ୍କୁ ପଚାରିଲେ ଏ ହାଣ୍ଡିରେ କି ଅଛି କହ ।"

ବଉଦ୍ଧମାନେ କହିଲେ × × ସର୍ପ ଗୋଟିଏ ଅଛି । × ବ୍ରାହ୍ମଣମାନଙ୍କୁ ପଚାରିଲେ । ବ୍ରାହ୍ମଣମାନେ ବିଚାରିଲେ ଏମାନେ ତ ସର୍ବଜ୍ଞ । ଏହାଙ୍କ ବଚନ ତ ମିଛ ନୋହିଲ, ଆମ୍ଭେମାନେ କି କହିବା । ଏମନ୍ତ ବିଚାର କରି ବୋଇଲେ ମହାରାଜା ଏ ହାଣ୍ଡିରେ ଭସ୍ମଗୁଡ଼ାଏ ଅଛି । ଏମନ୍ତକୁ ରାଜା ହାଣ୍ଡି ଫେଡ଼ାଇ ଦେଖିବାବେଳକୁ ସର୍ପ ନାହିଁ ପାଉଁଶଗୁଡ଼ାଏ ଅଛି........ ।" (ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ ପୃ-୨) ମାଦଳାପାଞ୍ଜିର ଏହି ଘଟଣାଗୁଡ଼ିକରୁ ସ୍ପଷ୍ଟ ସୂଚନା ମିଳେ ଯେ, ମଦନ ମହାଦେବଙ୍କ ପର୍ଯ୍ୟନ୍ତ ଓଡ଼ିଶାରେ ବୌଦ୍ଧଧର୍ମର ପ୍ରାଧାନ୍ୟ ଥିଲା କିନ୍ତୁ ଏହି ସମୟରୁ ତାର ଅଧଃପତନ ହୋଇ ବ୍ରାହ୍ମଣ୍ୟଧର୍ମର ପ୍ରାଧାନ୍ୟ ସମାଜରେ ପ୍ରତିଷ୍ଠିତ ହେଲା । ଏହି ସମୟରେ ଓଡ଼ିଶାରେ ଯେଉଁ ବୌଦ୍ଧଧର୍ମର ପ୍ରସାର ଥିଲା ତାହା ତାନ୍ତ୍ରିକ ବୌଦ୍ଧଧର୍ମ । ମାଦଳାପାଞ୍ଜି ବର୍ଣ୍ଣିତ ଅନଙ୍ଗ ଭୀମଦେବଙ୍କ ସମୟରେ ଓଡ଼ିଶାରେ ବହୁତ ବୌଦ୍ଧଭିକ୍ଷୁ ବାସ କରିଥିଲେ ବୋଲି ଚୈତନ୍ୟ ଦାସ ମଧ୍ୟ ତାଙ୍କ ଭାଗବତରେ ବର୍ଣ୍ଣନା କରିଛନ୍ତି ।

## ସାରଳା ସାହିତ୍ୟ ଓ ବୌଦ୍ଧଧର୍ମ :—

ସାରଳା ଦାସ ନିଜକୁ 'ସାରଳାଙ୍କ ପୁତ୍ର' ବୋଲି କହିଥିବାରୁ ଏବଂ ତାଙ୍କ କୃପାରୁ ଗ୍ରନ୍ଥ ରଚନା କରିଥିବା ବର୍ଣ୍ଣନା ଥିବାରୁ ଜଣାପଡ଼େ, ସାରଳା ଶାକ୍ତଧର୍ମ ଗ୍ରହଣ କରିଥିଲେ । ସେ ଶାକ୍ତଥିଲେ ମଧ୍ୟ ସମସ୍ତ ଦେବଦେବୀଙ୍କୁ ସମାନ ଦୃଷ୍ଟିରେ ଦେଖୁଥିଲେ । ଜଗନ୍ନାଥଙ୍କୁ ଅଣାକାର, ନିରାକାର, ନିର୍ଗୁଣ ଓ ପରଂବ୍ରହ୍ମ ରୂପେ ବର୍ଣ୍ଣନା କରି ଏହି ପରଂବ୍ରହ୍ମକୁ ପାଇବାକୁ ହେଲେ କୁଣ୍ଡଳିନୀକୁ ଚାଳିତ କରି ସହସ୍ରାର ଠାରେ ବ୍ରହ୍ମ ଦର୍ଶନ କଥା ସେ ମହାଭାରତରେ ବହୁ ସ୍ଥାନରେ ବର୍ଣ୍ଣନା କରି ଅଛନ୍ତି । ଅଶ୍ୱତ୍ଥାମାଙ୍କ ତପସ୍ୟା ବିଷୟରେ କହିବାକୁ ଯାଇ ସାରଳା ଦାସ କହିଛନ୍ତି—

"ପବନକୁ ମୂଳାଧାର ଟେକଇ ଉଜାଣି
କୁଣ୍ଡଳିନୀ ଶକ୍ତିକୁ ଚାଳିତ କରି ଆଣି ।
ବ୍ୟାସାଙ୍ଗୁଳି ଗଙ୍ଗା ବୋଲି ଅଛି ଏକ ଶୋଷା
ନିଦ୍ରା ଆଳସ୍ୟ ଆବର ନାହିଁ କ୍ଷୁଧା ତୃଷା ।
× × ×
ଜିହ୍ୱାକୁ ଗୋପନ କରି ଘଟିକାର ମୂଳେ
ତହିଁ ସେ ଅମୃତ ପାନ କରେ ସଦାକାଳେ
ଶୋଷକ ପୁରୁଷ ସାଥି ଉଭୟ କାଳକୁ
ଅମାସ୍ୱା ରୂପେ ରହିଣ ଚାହିଁଇ ଶୂନ୍ୟକୁ ।"

କବି ପୁଣି 'ବନପର୍ବ'ରେ ସହଜ ସାଧନାତତ୍ତ୍ୱ ସମ୍ବନ୍ଧରେ କହିବାକୁ ଯାଇ ଲେଖିଛନ୍ତି :—

"ଆହେ ତାତ ପାଞ୍ଚମନ ପଚଶ ପ୍ରକୃତ
ଏ କାୟା ଘରକୁ ବୃଥା ଭ୍ରମରେ ପକାନ୍ତି ।
ବାଆତ୍ତରି ନାଡ଼ି ପୁଣି ଚୌରାଶୀ ହେରୁ
ପବନର ଭେଷ୍ଟା ଭେଟି ସଲଲର ତନ୍ତୁ
ଇଆଁଳା ପିଆଁଳା ପୁଣି ମଧ୍ୟେ ସୁଷୁମ୍ନା
ଉଚ୍ଚାଟରେ ଛଳ ଏହି ନବ ନାଡ଼ି ଅନା ।

× × ×

ରସନା ନିଶ୍ୱାସ ଦୁହେଁ ଏକଇ ଯେ ବାଟ
ଶରଣ ଧାରଣକୁ ଟେକିଲି ଶ୍ରୀହଟ୍ଟ ।
ଇଆଁଳା ଏକାଳେ ହେଲି ଚନ୍ଦ୍ରମେଳେ କଳା
ଅଗଡ ଭାବକୁ ମନମଧ୍ୟ ଯେ ପିଆଁଳା ।"

ସାରଳାଦାସ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଏହି ତିମୂର୍ତ୍ତିଙ୍କୁ ଭିନ୍ନ ଭିନ୍ନ ରୂପରେ ପ୍ରକାଶ କରିଥିଲେ ମଧ୍ୟ ଜଗନ୍ନାଥଙ୍କୁ ବୁଦ୍ଧରୂପରେ ସାରଳା ମହାଭାରତରେ ବର୍ଣ୍ଣନା କରିଛନ୍ତି—

"ବନ୍ଦଇ ଶ୍ରୀ ଜଗନ୍ନାଥ ବଇକୁଣ୍ଠବାସୀ
ବୌଦ୍ଧରୂପେ ନୀଳଗିରି ଶିଖେ ଅଛ ବସି ।" (ମ. ପ.)

ପୁଣି :—

"ମହୋଦଧି ତୀରେ ବଡ଼ ଦେଉଳରେ ବସି
ଦରିଦ୍ରମାନଙ୍କ ଦୁଃଖ ଦେଉଅଛ ଧ୍ୱଂସି
ବଉଦ୍ଧ ରୂପରେ ବେନଯୁଗେ ଅବତାର
ହୋଇଣ ପାପୀଜନଙ୍କୁ କରୁଛ ଉଦ୍ଧାର ।"

ଏପରିକି କବି ବହୁ ସ୍ଥାନରେ ଜଗନ୍ନାଥଙ୍କୁ ବଉଦ୍ଧ ଅବତାର ବୋଲି ବର୍ଣ୍ଣନା କରିଛନ୍ତି ।

## ଜଗନ୍ନାଥ ବୌଦ୍ଧ ଅବତାର :—

ମନମୋହନ ଗାଙ୍ଗୁଲିଙ୍କ ମତ ଅନୁସାରେ ପୁରୀର ରଥଯାତ୍ରା ହେଉଛି ବୌଦ୍ଧ-ଧର୍ମର ଆଦର୍ଶରେ ପରିଚାଳିତ । ଏହି ପୁରୀ ବା ଶ୍ରୀକ୍ଷେତ୍ର ସିଂହଳଠାରୁ ବିହାର ବା ମଗଧ ପର୍ଯ୍ୟନ୍ତ ସୁବିସ୍ତୃତ ଥିଲା । ଏହା ମଧ୍ୟରେ ଥିବା ପ୍ରାଚୀନ ରାଜପଥରେ ପୁରୀ ଏକ ପ୍ରଧାନ ବୌଦ୍ଧକେନ୍ଦ୍ରରୂପେ ବିଦ୍ୟମାନ ଥିଲା । ସିଂହଳର ଯାତ୍ରୀମାନେ ମଗଧକୁ ପ୍ରସ୍ଥାନ କରିବା ଉଦ୍ଦେଶ୍ୟରେ ଯିବାବେଳେ ଏହି ଭୁବନେଶ୍ୱର ଓ ତାମ୍ରଲିପ୍ତ ବାଟ ଦେଇ ଯାଉଥିଲେ । ଜଗନ୍ନାଥ ମନ୍ଦିରରେ ଏକାଦଶୀ ଦିନ ରାତ୍ରି ଅର୍ଦ୍ଧରେ ଯେଉଁ ମହାଦୀପ ପ୍ରଥା ଚଳିଆସୁଛି ତାହା ବୌଦ୍ଧଧର୍ମର ପ୍ରଭାବ । ହୁଏନ୍‌ସାଂ ତାଙ୍କ ଭ୍ରମଣ ବୃତ୍ତାନ୍ତରେ ଲେଖିଛନ୍ତି ଯେ, ବୌଦ୍ଧଚୈତ୍ୟ ବା ସ୍ତୁପ ଉପରେ ଦୀପଦାନ ଦିଆଯାଉଥିଲା ଏବଂ ତା ଉପରେ ପତାକା ବା

ଭିନ୍ନ ଭିନ୍ନ ରଙ୍ଗର ଛତା ମଧ୍ୟ ରଖାଯାଉଥିଲା । ପୁଣି ଜଗନ୍ନାଥ ଯେ ନିଜେ ବୌଦ୍ଧାବତାର ତାହା ନିମ୍ନୋକ୍ତ ଉଦ୍ଧୃତିରୁ ଜଣାପଡ଼େ—

"ମୁହିଁ ବଉଦ୍ଧ ରୂପ ହୋଇ
କଳିଯୁଗରେ ଥିବି ରହି
ସୁବର୍ଣ୍ଣ ହାତ ଗୋଡ଼ କରି
ଚଢ଼ାଇ ଦେହି ଦଣ୍ଡଧାରୀ

× × ×

ଦେଉଳେ ସିଂହାସନ ପରେ
ବିଜୟେ ବଉଦ୍ଧ ରୂପରେ
ପଦ ଅଙ୍ଗୁଳି ନାହିଁ ହାତ
ଶ୍ରୀ ଦାରୁବ୍ରହ୍ମ ଜଗନ୍ନାଥ ।" (ମାଗୁଣି ଦାସ)

ଏହା ବ୍ୟତୀତ ଜଗନ୍ନାଥଙ୍କ ପୂଜାବିଧି ପ୍ରତି ଧ୍ୟାନ ଦେଲେ ଜଣାପଡ଼େ ହିନ୍ଦୁର ମୂଳ ଗ୍ରନ୍ଥ ହେଉଛି ବେଦ । ବେଦରେ ଜଗନ୍ନାଥଙ୍କ ପୂଜାବିଧି ବା ଧ୍ୟାନର ଉଲ୍ଲେଖ ନାହିଁ । ଜଗନ୍ନାଥଙ୍କ ପାଖରେ ଯେଉଁ ପୂଜାବିଧିର ପ୍ରଚଳନ ତାହା ହିନ୍ଦୁର ଅନ୍ୟାନ୍ୟ ଦେବଦେବୀଙ୍କ ପୂଜାପଦ୍ଧତିଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଏଥିରେ ବୌଦ୍ଧଧର୍ମର ପ୍ରଭାବ ପଡ଼ିଥିବାର ମନେହୁଏ ।

## ପଞ୍ଚସଖା ସାହିତ୍ୟ ଓ ବୌଦ୍ଧଧର୍ମ :—

ଓଡ଼ିଆ ସାହିତ୍ୟରେ ସାରଳାଯୁଗ ପରେ ପଞ୍ଚସଖା ଯୁଗର ଅଭ୍ୟୁଦୟ ହୁଏ । ଏହି ପଞ୍ଚସଖା ହେଲେ ଅନନ୍ତ, ଅଚ୍ୟୁତ, ଜଗନ୍ନାଥ, ଯଶୋବନ୍ତ ଓ ବଳରାମ । ଏହି ପଞ୍ଚସଖା ଦର୍ଶନର ଅନୁଧ୍ୟାନ କରିବାକୁ ହେଲେ ଅଚ୍ୟୁତାନନ୍ଦଙ୍କ ଶୂନ୍ୟସଂହିତାର ଆଲୋଚନା ଏକାନ୍ତ ଆବଶ୍ୟକ । ବୌଦ୍ଧଧର୍ମ ସମ୍ବନ୍ଧରେ ଯେଉଁସବୁ ଶୂନ୍ୟର ବର୍ଣ୍ଣନା ଅଛି ପଞ୍ଚସଖା ସାହିତ୍ୟରେ ଥିବା ଶୂନ୍ୟର ବିଭିନ୍ନ ବିଭାଗ ବୌଦ୍ଧଧର୍ମର ଶୂନ୍ୟବିଭାଗ ପରି ମନେହୁଏ । ବୌଦ୍ଧ ଶୂନ୍ୟ ଦର୍ଶନ କାଳକ୍ରମେ ପରିବର୍ତ୍ତିତ ହୋଇ 'ଅଲେଖ' 'ଶୂନ୍ୟ' ଓ 'ନିର୍ଗୁଣ' ପ୍ରଭୃତି ସ୍ୱରୂପ ନେଇ ଓଡ଼ିଆ ବୈଷ୍ଣବ ସାହିତ୍ୟକୁ ପ୍ରଭାବିତ କଲା । ଏହାର ଧାରା କାଳକ୍ରମେ ସାରଳାଙ୍କ ସମୟରୁ ଗଢ଼ିଆସିଛି । ଓଡ଼ିଶାରେ ଅଚ୍ୟୁତାନନ୍ଦଙ୍କ ସମୟରେ (୧୬୦୦ ଶତାବ୍ଦୀ) ବହୁ ବୌଦ୍ଧଭିକ୍ଷୁ ବାସକରି ରହିଥିଲେ । ଅଚ୍ୟୁତାନନ୍ଦ ସେମାନଙ୍କ ମଧ୍ୟରୁ କେତେକ ସିଦ୍ଧାଚାର୍ଯ୍ୟଙ୍କ ସମ୍ପର୍କରେ ଆସି ତାଙ୍କର ଶୂନ୍ୟ ସଂହିତାରେ ଲେଖିଛନ୍ତି—

"ଏଠାରେ ମଲ୍ଲିକାନାଥ ଗୁମ୍ଫା କରିଥାନ୍ତି
ଗୁରୁ ଆଜ୍ଞା ଘେନି ସେ ଯୋଗ ଆଚରନ୍ତି
ବୀରସିଂହ ଆଶ୍ରମ ଏ ଭରଦ୍ୱାଜ କାଳି
ଯାଇ ଆସି ସାଧନ୍ତି ଯେ ତପୀ ବୀରଙ୍ଗୁଳି
ଲୋହି ଦାସ ମଠ କରିଥାନ୍ତି ଏହିଠାରେ
ଲୟେ କରିଥାନ୍ତି ନିରାକାର ଧ୍ୟାନ ପରେ ।"

ଏହାଛଡ଼ା ବୌଦ୍ଧଧର୍ମ ବିଶେଷ କରି ସହଜଯାନ ଓ ବଜ୍ରଯାନ ପ୍ରଭାବରେ ନାଗାନ୍ତ ବେଦାନ୍ତ, ଯୋଗାନ୍ତ ଓ ତନ୍ତ୍ରମନ୍ତ୍ରର ପ୍ରଚଳନ ଓଡ଼ିଶାରେ ଥିବା ଜଣାଯାଏ । ଶୂନ୍ୟ-ସଂହିତା ପରି ଗୁ ରୁଭକ୍ତିଗୀତାରେ ବିଭିନ୍ନ ସ୍ଥାନରେ ତନ୍ତ୍ରମନ୍ତ୍ର ଓ ସାଧନା ତଥା ଯୋଗମାର୍ଗ ସହିତ ସାଧକ ଜୀବନରେ ଗୁରୁମାର୍ଗ ଓ ଗୁରୁ ପରମ୍ପରାର ମହତ୍ତ୍ୱ ବୈଷ୍ଣବ ଧର୍ମର ପ୍ରସଙ୍ଗରେ ନିର୍ଦ୍ଦେଶ କରି ଜଗନ୍ନାଥଙ୍କଠାରେ ବୁଦ୍ଧତ୍ୱ ଆରୋପ କରି କବି ଲେଖିଛନ୍ତି—ଯାହାକି ତାନ୍ତ୍ରିକ ବୌଦ୍ଧଧର୍ମର ଏକ ବିଶିଷ୍ଟ ଧାରାପରି ମନେହୁଏ ।

"ମୂଢ଼ଙ୍କ ଛଳେ ବଉଦ୍ଧ ମୂରତି
ବିପ୍ରଙ୍କ ଛଳେ ପଶୁରାମ ହୋନ୍ତି" (ଗୁ: ଗୀ)

ପୁଣି :— "ବୋଇଲେ ଅଚ୍ୟୁତ ତୁମ୍ଭେ ଶୁଣ ଆତ୍ମବାଣୀ
କଳି ଯୁଗେ ବୌଦ୍ଧରୂପେ ପ୍ରକାଶିଲୁ ପୁଣି ।" (ଶୂ: ସ)

ଅଚ୍ୟୁତାନନ୍ଦଙ୍କ 'ଶୂନ୍ୟ ସଂହିତା' ପରି 'ବିଷ୍ଣୁଗର୍ଭ ପୁରାଣ' ଓ 'ନିର୍ଗୁଣ ମାହାତ୍ମ୍ୟ' ବୌଦ୍ଧଧର୍ମ ଦ୍ୱାରା ପ୍ରଭାବିତ ଏକ ଏକ ଅନନ୍ୟ ପୁସ୍ତକ । ସମସ୍ତ ଶୂନ୍ୟରୁହିଁ ଏ ବିଶ୍ୱ-ବ୍ରହ୍ମାଣ୍ଡର ସୃଷ୍ଟି । ଶୂନ୍ୟରେ ଏହାର ସ୍ଥିତି ଓ ଶୂନ୍ୟରେ ଏହାର ବିଲୟ । ସେହି 'ଅଲେଖ', ପରମବ୍ରହ୍ମ, ସେହି 'ଅଣାକାର', ଶୂନ୍ୟ, ସେହି 'ମହାଶୂନ୍ୟ', 'ନିରଞ୍ଜନ', 'ମହାପୁରୁଷ'ଙ୍କ ମାୟା ବଳରେ ଏହି ସମସ୍ତ ସୃଷ୍ଟି ବିଶ୍ୱବ୍ରହ୍ମାଣ୍ଡର ପରିକଳ୍ପନା ଆଦି ସମ୍ଭବ ପରି । ସେହି ପରମବ୍ରହ୍ମ ଅଲେଖଙ୍କର ମହିମା ବର୍ଣ୍ଣନା କରି ପୁରାଣକାର ଲେଖିଛନ୍ତି—

"ଏମନ୍ତ ମହିମା ସେ ଅଲେଖର ଦେଖି
ଶୂନ୍ୟ ସଙ୍ଗତେ ଶୂନ୍ୟ ସେ ଶୂନ୍ୟେ ଶୂନ୍ୟରୂପୀ

× × ×

ଶୂନ୍ୟ ସେ ତାହାର ଅଟଇ ନିଜ ଘର
ଶୂନ୍ୟରେ ଥାଇ ଶୂନ୍ୟ କରଇ ବିହାର ।"

ଏହି ବିଷ୍ଣୁଗର୍ଭ ପୁରାଣରେ ବୌଦ୍ଧଧର୍ମର ସେହି 'ଶୂନ୍ୟବାଦ'ର ପ୍ରଭାବ ପରିଲକ୍ଷିତ ହେଲେହେଁ ସ୍ଥଳବିଶେଷରେ ବୈଷ୍ଣବଧର୍ମର ବହୁ ସୂଚନା ମିଳିଥାଏ । ଏହାର ମୁଖ-ବନ୍ଧରେ ଡଃ ଆର୍ତ୍ତବଲ୍ଲଭ ମହାନ୍ତି ଲେଖିଛନ୍ତି—"ମହାଯାନ ଶାଖାର ଆଦିବୁଦ୍ଧ ଓ ପଞ୍ଚଧ୍ୟାନୀ ବୁଦ୍ଧ, ପାଞ୍ଚ ବୋଧିସତ୍ତ୍ୱକାଳଚକ୍ରରୁ ଓ ବୈଷ୍ଣବ ଧର୍ମର ପ୍ରଭାବହେତୁ ବିଷ୍ଣୁଗର୍ଭ ପୁରାଣରେ ଛଅ ବିଷ୍ଣୁ ଓ ଗ୍ୟାରି ବ୍ରହ୍ମାରୂପେ ଗୃହୀତ । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ବୌଦ୍ଧଧର୍ମର ମହାଯାନ ଶାଖା ଉତ୍କଳ ଦେଶରେ ପ୍ରଚଳିତ ଥିବା ହେତୁ ତାହାର ପ୍ରଭାବ ଚୈତନ୍ୟ ଦାସଙ୍କ ବିଷ୍ଣୁଗର୍ଭ ପୁରାଣରେ ପରିଦୃଷ୍ଟ ହୁଏ ।"

ଏହି ଶୂନ୍ୟକୁ ବଳରାମ, ଯଶୋବନ୍ତ ପ୍ରଭୃତି ସିଦ୍ଧ ପୁରୁଷଗଣ ସ୍ୱ ସ୍ୱ ରଚନା ବଳୀରେ ସ୍ଥାନ ଦେଇ ଭଗବାନଙ୍କ ମୂଳରୂପ ଶୂନ୍ୟ ବୋଲି ଗ୍ରହଣ କରିଛନ୍ତି । ବଳରାମ ଦାସ ବ୍ରହ୍ମାଣ୍ଡ ଭୂଗୋଳରେ ଶୂନ୍ୟର ବର୍ଣ୍ଣନା ନେଇ କହିଛନ୍ତି—

"ମହାଶୂନ୍ୟ ଯେ ଜ୍ୟୋତି ରୂପ
ଜ୍ୟୋତିରୁ ଜାତ ଫୁଲ ରୂପ

ଠୁଳରୁ ଅର୍ଦ୍ଧ ମାତ୍ରା କଲା
ମାତ୍ରାରୁ ଓଁକାର ଜନ୍ମିଲା
ଓଁ କାରୁ ବ୍ରହ୍ମ ଏ ଜଗତ
ଶୁଣ ପାର୍ବତୀ ଦେଇ ଚିତ୍ତ ।”

## ଭଜନ ଜଣାଣରେ ବୌଦ୍ଧଧର୍ମ :—

ଏହି ସମୟରେ ଏହି ଶୂନ୍ୟ ବାଦକୁ କେନ୍ଦ୍ରକରି କେତେ କବି କେତେ ପୁରାଣ, ଗୀତା, ପ୍ରଭୃତି ବିରାଟ ବିରାଟ ସାହିତ୍ୟିକ ଗ୍ରନ୍ଥ ରଚନା କରିଥିଲେ ମଧ୍ୟ ଲୋକମାନଙ୍କ ଆଦରର ପାତ୍ରଭାବରେ ଥିଲା ବିଶେଷତଃ ଜଣାଣ ଭଜନ । କର୍ମକାଣ୍ଡ ପନ୍ଥିକ ଠାରୁ ଆରମ୍ଭ କରି ଚିତ୍ତବିନୋଦନ କେନ୍ଦ୍ର ପର୍ଯ୍ୟନ୍ତ ଥିଲା ଏହାର ବ୍ୟାପ୍ତି । ସହଜ ସରଳ ଭାଷାରେ ଏକ ନିଗୂଢ଼ତତ୍ତ୍ୱକୁ ପ୍ରକାଶ କରି ଏ ଅଲିକ, ନିସ୍ୱ, କ୍ଷଣଭଙ୍ଗୁର ଦୁନିଆରୁ ପରିତ୍ରାଣ ପାଇଁ ଭଗବାନଙ୍କ ନିକଟରେ ଥିଲା ଭକ୍ତର ଆକୁଳ ଆବେଦନ । ଆର୍ତ୍ତିଦାସଙ୍କ ଭଜନ ଓ ଜଣାଣ-ଗୁଡ଼ିକରେ ଯେଉଁ ଆଧ୍ୟାତ୍ମିକ ତତ୍ତ୍ୱ (Metaphysics) ଓ ନିରାକାର ଉପାସନାର ମହତ୍ତ୍ୱ ବର୍ଣ୍ଣିତ ହୋଇଛି ତାହା ବୌଦ୍ଧ ଦର୍ଶନର ରୂପାନ୍ତର ମାତ୍ର ।

“ଶ୍ରୀବନ୍ତ ପୁରୁଷ ଅନାଦି ନିରାକାର
ସରଜନା କରନ୍ତି ଜଗତ-ସଂସାର”

ପୁଣି :— “ଉଲଟ ବୃକ୍ଷେ ଖେଳୁଛି
ଲୋଟଣି ପାରି
ଅଠାକାଠି ପଞ୍ଜୁରିରେ
ନ ପଡ଼େ ଧରି ।”

## ମହିମା ଧର୍ମରେ ବୌଦ୍ଧଧର୍ମର ପ୍ରଭାବ :—

ଓଡ଼ିଆ ସାହିତ୍ୟରେ ଏହି ନିର୍ଗୁଣ ଅଣାକାର, ପରମବ୍ରହ୍ମ ସାଧନାର ପୁଣି ଏକ ବଳିଷ୍ଠ ଧାରା ଆତ୍ମପ୍ରକାଶ କଲା ଏହି ଓଡ଼ିଶା ଭୂଇଁରେ ମହିମାଧର୍ମ ନାମରେ । କବି ଜାତିର ଅନ୍ଧକବି ଭୀମଭୋଇ ଏହି ଧର୍ମକୁ କଲେ ପ୍ରଚାରିତ । ବୌଦ୍ଧଧର୍ମର ସେହି ପ୍ରଧାନ ଚାରି ସତ୍ୟ (୧) ଜୀବନ ଦୁଃଖମୟ, (୨) କାମନାହିଁ ଦୁଃଖର କାରଣ, (୩) କାମନାର ବିନାଶରେ ଦୁଃଖର ବିନାଶ, ଓ (୪) ନିର୍ବାଣ ପ୍ରାପ୍ତି ନିମନ୍ତେ ଆବଶ୍ୟକ ଅଷ୍ଟାଙ୍ଗମାର୍ଗକୁ କେନ୍ଦ୍ରକରି ଗଢ଼ିଉଠିଲା ମହିମାଧର୍ମ ତତ୍ତ୍ୱ । 'ଏକ ଶୂନ୍ୟଙ୍କ ପାଖରେ ଶରଣପଶ', 'ରୂପନାମରେ ମୁକ୍ତି ନାହିଁ' 'କାମନାହିଁ ମୁକ୍ତିର ପ୍ରତିବନ୍ଧକ', 'ଜାତିଖୋଜିଲେ ମୁକ୍ତି ନାହିଁ, ମୁକ୍ତି ଖୋଜିଲେ ଜାତି ନାହିଁ', 'ଅଲେଖ ଏକାକ୍ଷରହିଁ ପରମବ୍ରହ୍ମ', ଏହି ତତ୍ତ୍ୱ-ରାଜିକୁ ପ୍ରଚାର କରି ମହିମାଧର୍ମ ହେଲା ପ୍ରଚାରିତ ଓ ପ୍ରସାରିତ । ବୌଦ୍ଧମାନଙ୍କ ପରି 'ଅହିଂସା ପରମଧର୍ମ' ଏହି ନୀତିକୁ ଜୀବନର ପରମବ୍ରତ ବୋଲି ଗ୍ରହଣ କରି, କୃତ୍ରିମ ଜାତି ପ୍ରଥାର ବାଧାବିଘ୍ନକୁ ଏଡ଼ି ପୂଜାପର୍ବଣ ଓ ଯାବତୀୟ ବାହ୍ୟ ଆଡ଼ମ୍ବରକୁ ସେ ଧର୍ମର ଭ୍ରମ ବୋଲି ପ୍ରଚାର କରି, ମଣିଷର ସବୁ ଧର୍ମ ତା'ର ମନଭିତରେ ବୋଲି ପ୍ରଚାର କରି ଏ ଧର୍ମର ସାଧକଗଣ ଅଗ୍ରସର ହେବାକୁ ଲାଗିଲେ । ପୁଣି ଜଗନ୍ନାଥଙ୍କୁ ବୌଦ୍ଧାବତାର ରୂପେ

ଗ୍ରହଣ କରି—ସେହି ପରମବ୍ରହ୍ମ ଭଗବାନଙ୍କ ସମ୍ବନ୍ଧରେ କହିବାକୁ ଯାଇ ଭୀମଭୋଇ ଲେଖିଛନ୍ତି—

"ନଥିଲା ଏ ପୃଥ୍ୱୀ ପ୍ରଳୟ ଉତ୍ପତ୍ତି
ନଥିଲା ଜଳ ପବନ
ନାହିଁ ରୂପ ରେଖ ଆଜନ୍ମ ଅବନା
ନାମ କହି ମହାଶୂନ୍ୟ
ଏକାନ୍ତ ପାଦରୁ ଜନ୍ମିଲା ଶୂନ୍ୟରୁ
ଦ୍ୱିତୀୟ ଅକ୍ଷର ଭେଦ
ସକାମେ ଶକତା ନିଷ୍କାମେ ବକତା
ନାହିଁ ପରଂବ୍ରହ୍ମ ପଦ
ସ୍ୱାହା ଶବ୍ଦରୁ ସହସ୍ର ପାଖୁଡ଼ା
ଶାଖାରେ ହେଲା ଉଦ୍ୟାନ
ଅବନା ସଞ୍ଚରି ନାମ ବୋଲାଇବ
ଆଦି ବ୍ରହ୍ମ ଭଗବାନ୍

× × × ×

ଯୁଗ ଯୁଗାନ୍ତରେ କଳ୍ପ କଳ୍ପାନ୍ତରେ
ଶ୍ୱେତ ଶୁକ୍ଳାମ୍ବର ରୂପ
ଅଣଗୃଣ ବାୟୁ ନାସାରୁ ଜନମ
ଚନ୍ଦ୍ର ସୂର୍ଯ୍ୟ ଯାର ରୂପ
ଗୃରି ବେଦ ଗୃରି ପାବଚ୍ଛ ହୋଇଛି
ଆଦି ଅଷ୍ଟାଦଶ ସିଦ୍ଧି ।
ଅଷ୍ଟାଙ୍ଗକୁ ଘେନ ଦଶାଙ୍କ ଯୋଗରେ
ଲାଗିଅଛି ଯା ସମାଧି ।"

ତାଙ୍କର 'ସ୍ତୁତି ଚିନ୍ତାମଣି', 'ଆଦ୍ୟନ୍ତଗୀତା', 'ନିର୍ବେଦ ସାଧନ' 'ଶ୍ରୁତିନିଷେଧ ଗୀତା', 'ବ୍ରହ୍ମ ନିରୂପଣ ଗୀତା' ପ୍ରଭୃତିରେ ଏହି ତତ୍ତ୍ୱର ପରିବେଷଣ ମଧ୍ୟ ଦେଖିବାକୁ ମିଳେ ।

## ବ୍ରାହ୍ମଧର୍ମରେ ବୌଦ୍ଧଧର୍ମର ପ୍ରଭାବ :—

ବୌଦ୍ଧଧର୍ମର ସେହି ସହଜିଆତତ୍ତ୍ୱ କାଳକ୍ରମେ ଅଲେଖ ଧର୍ମ ଓ ମହିମାଧର୍ମରେ ପରିଣତ ହୋଇ ସେଥିରୁ ପୁଣି ସୃଷ୍ଟି ହେଲା ବ୍ରାହ୍ମଧର୍ମ । ବ୍ରାହ୍ମ ଧର୍ମର 'ଏକେଶ୍ୱରବାଦ' ବୌଦ୍ଧଧର୍ମର ପ୍ରଭାବରେ ପ୍ରଭାବିତ ହୋଇପାରେ ମନେହୁଏ । ଓଡ଼ିଆ ସାହିତ୍ୟରେ ଭକ୍ତକବି ମଧୁସୂଦନ ଏହି 'ଏକମେବା ଦ୍ୱିତୀୟ' ଅର୍ଥାତ୍ ଭଗବାନ ହେଉଛନ୍ତି ଏକ ବା ଅଦ୍ୱିତୀୟ, ଏହି ଚିନ୍ତାଧାରାରେ ଉଦ୍‌ବୁଦ୍ଧ ହୋଇ ପ୍ରତ୍ୟେକ ବସ୍ତୁରେ ସେହି ଅନ୍ତର୍ଯ୍ୟାମୀ ପରମବ୍ରହ୍ମ ଭୂମାଙ୍କ ଅସ୍ତିତ୍ୱ ଉପଲବ୍ଧି କରି ଲେଖିଛନ୍ତି—

"ଦୂରରୁ ସୁଦୂର ଶନ୍ୟ ବାକ୍ୟ-ଅଗୋଚର
ନିକଟରୁ ନିକଟ ପ୍ରାଣ ସମସ୍ତ ପ୍ରାଣର
ଅଶବ୍ଦ ଅସ୍ପର୍ଶ ସେହି ଅରୂପଧରର
କିନ୍ତୁ ସେ ପରମ ସତ୍ୟ ମହାନନ୍ଦରସ ।
× × ×
ସମ୍ମୁଖେ ପଶ୍ଚାତେ ସେହି ନିମ୍ନେ ଉର୍ଦ୍ଧ୍ୱେ ସେହି
ଦକ୍ଷିଣେ ବାମରେ ସେହି, ଅଥଚ ଅଦେଖି ।"

**ଉପସଂହାର :—**

ଯୁଗ ଯୁଗଧରି ବୌଦ୍ଧଧର୍ମ ଭରତର ସମସ୍ତ ଧର୍ମକୁ ପ୍ରଭାବିତ କରିଛି । ବୌଦ୍ଧଧର୍ମ ଆଗରେ ବ୍ରାହ୍ମଣ୍ୟଧର୍ମ ଯେତେବେଳେ ହୀନପ୍ରଭ ହୋଇ ପଡ଼ିଥିଲା ସେତେବେଳେ ବ୍ରାହ୍ମଣ୍ୟ-ଧର୍ମର ଧ୍ୱଜାଧାରୀ ପଣ୍ଡିତଗଣ ଚତୁରତା ସହିତ ବୌଦ୍ଧଧର୍ମକୁ ବ୍ରାହ୍ମଣ୍ୟଧର୍ମର ଏକ ଶାଖାବୋଲି ଗ୍ରହଣ କରିନେଲେ । ସେ ଯାହା ହେଉନା କାହିଁକି ବୌଦ୍ଧଧର୍ମ ଯୁଗେ ଯୁଗେ ଏ ସାହିତ୍ୟକୁ କରିଛି ପୁଷ୍ଟ, ଏ ଜନଜୀବନକୁ କରିଛି ଉଦ୍‌ବୁଦ୍ଧ ଓ ଏ ସଂସ୍କୃତିକୁ କରିଛି ସମୃଦ୍ଧ, ଏଥିରେ ସନ୍ଦେହ ନାହିଁ ।

**ସାହାଯ୍ୟକାରୀ ପୁସ୍ତକ :—**

(୧) Budhisim in Orissa—by N. K. Sahu.
(୨) Bundhisim—by Edward Conze.
(୩) The General Conception of Budhism—
by T. H. Stcherbatsky.
(୪) An outline of the Religious Literature of India—
by J. N. Farquhar.
(୫) ଯୁଗେ ଯୁଗେ ଉତ୍କଳୀୟ ଧର୍ମ ଓ ସଭ୍ୟତା—ମନ୍ମଥ ନାଥ ଦାସ ।
(୬) ଓଡ଼ିଶାରେ ବୌଦ୍ଧଧର୍ମ—ଡଃ ବଂଶୀଧର ମହାନ୍ତି ।
(୭( ଓଡ଼ିଶାରେ ବୌଦ୍ଧଧର୍ମ—ନବୀନ କୁମାର ସାହୁ ।
(୮) ଉତ୍କଳ ସାହିତ୍ୟ—୧୯୩୮/୩୯ ୨ୟ ଓ ୩ୟ ସଂଖ୍ୟା ।
(୯) ଆଷ୍ଟର୍ଯ୍ୟ ଚର୍ଯ୍ୟାଚୟ—ଡଃ କରୁଣାକର କର ।
(୧୦) ନାଥ ସଂପ୍ରଦାୟ ଓ ନାଥ ସାହିତ୍ୟ—ଡଃ ବଂଶୀଧର ମହାନ୍ତି ।
(୧୧) ମହିମା ଧର୍ମ ଓ ଦିବ୍ୟଦ୍ରଷ୍ଟା ଭୀମଭୋଇ—ନୀରକିଶୋର ଦାସ ।
(୧୨) ଓଡ଼ିଶାରେ ମହିମା ଧର୍ମ—ଚିତ୍ତରଞ୍ଜନ ଦାସ ।
(୧୩) ଓଡ଼ିଆ ସାହିତ୍ୟର ଇତିହାସ—ଡଃ ବଂଶୀଧର ମହାନ୍ତି ।
(୧୪) ପଞ୍ଚସଖା ଓଡ଼ିଆ ସାହିତ୍ୟ—ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି ।

# ଓଡ଼ିଆ ବ୍ରଜବୋଲି ସାହିତ୍ୟ

**ଶ୍ରୀ ନିତ୍ୟାନନ୍ଦ ପ୍ରଧାନ**
୫ମ ବର୍ଷ (ଓଡ଼ିଆ)

ସାହିତ୍ୟ ଧର୍ମାଶ୍ରୟୀ । ଏହା ଧର୍ମକୁ କେନ୍ଦ୍ର କରି ଗଢ଼ି ଉଠେ, ଧର୍ମର ସ୍ୱାକ୍ଷର ବହନ କରି ଚିରନ୍ତନ ହୁଏ । ଏହି ସାର୍ବକାଳୀନ ସତ୍ୟ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ମଧ୍ୟ ଦେଖା ଦେଇଛି । ଏଣୁ 'ଶିଶୁବେଦ' ଓ 'ବୌଦ୍ଧଗାନଦୋହା' ଆଦିର ଶୈଳିକ ଅଭିବ୍ୟକ୍ତି ଭିନ୍ନ ଭିନ୍ନ ରୂପ ପରିଗ୍ରହ କରିଛି । ସେହିପରି 'ବ୍ରଜବୋଲି' ସାହିତ୍ୟ ଓଡ଼ିଆ ସାହିତ୍ୟର ଇତିହାସରେ ଏକ ବିଶିଷ୍ଟ ଅଧ୍ୟାୟ ଦାବୀ କରେ । କେବଳ ଓଡ଼ିଆରେ ନୁହେଁ ବଙ୍ଗ; ଆସାମ, ନେପାଳ ଓ ମିଥିଳାର ସାହିତ୍ୟରେ ମଧ୍ୟ ଏହି ପ୍ରକାର ରଚନାବଳୀ ଦେଖିବାକୁ ମିଳେ । ଏହାର ଭାଷାମଧ୍ୟ ଓଡ଼ିଆ ନୁହେଁ କି ବଙ୍ଗଳା ନୁହେଁ, ମୈଥିଳୀ ନୁହେଁ କି ଅସମୀୟ ମଧ୍ୟ ନୁହେଁ ଅଥଚ ଏହିସବୁ ଭାଷାର ଶବ୍ଦାବଳୀର ମଧୁର ସମନ୍ୱୟରେ ଏହି ରଚନାଗୁଡ଼ିକ ଲଳିତ, କୋମଳ, ସରସ, ହୃଦ୍ୟ ଓ ପ୍ରାଣସ୍ପର୍ଶୀ । ଏହାର ନାମ 'ବ୍ରଜବୁଲି ବା ବ୍ରଜବୋଲି' ହେବାର କାରଣ ନିର୍ଦ୍ଦେଶ କରିବାକୁ ଯାଇ ଡଃ ସୁକୁମାର ସେନ କହନ୍ତି—"The entire literature is devoted to the Radha and Krsna theme. What is then more natural than to call it the speech ( [buli = boli]) of the land sanctified by the presence of Radha and Krisna [Braja] ?" (୧) ଡଃ ସେନଙ୍କ ଏହି ମତଟି ବିଶେଷ ଯୁକ୍ତିଯୁକ୍ତ ମନେ ହୁଏନି । କାରଣ ବ୍ରଜବୋଲି ଓ ବ୍ରଜର ଭାଷା ମଧ୍ୟରେ ସାମ୍ୟ ଥିଲେ ମଧ୍ୟ ଉଭୟର ବ୍ୟାକରଣ ଭିନ୍ନ । ପୁଣି ବିଦ୍ୟାପତି ଚୈତନ୍ୟ, ରାମାନନ୍ଦ, ପ୍ରତାପରୁଦ୍ର ଆଦି ଶ୍ରେଷ୍ଠ ବୈଷ୍ଣବ ଏବଂ ଦୁର୍ଗା, ଶିବ, ଗଙ୍ଗା ଓ ଜଗନ୍ନାଥ ପ୍ରଭୃତି ଦେବଦେବୀ ସମ୍ପର୍କୀୟ ଅସଂଖ୍ୟ ବ୍ରଜବୋଲି ଗୀତିକା ଦେଖିବାକୁ ମିଳେ । ଡଃ ଶ୍ରୀମତୀ କଣିକା ତୋମର ମତ ଦିଅନ୍ତି ଯେ ଶ୍ରୀକୃଷ୍ଣଙ୍କ ଲୀଳାଭୂମି ବ୍ରଜରୁ ଏହାର ନାମକରଣ ବ୍ରଜବୋଲି ହୋଇଅଛି । (୨) ଡଃ ତୋମରଙ୍କ ମତ ଅଧିକ ଯୁକ୍ତିଯୁକ୍ତ ମନେ ହୁଏ । ତେବେ ଏହାର ଭାଷା ଯାହା ହେଉନା କାହିଁକି ମୁଖ୍ୟତଃ ପ୍ରେମ ଭକ୍ତିର ପ୍ରକାଶ ପାଇଁ ଏହା ଏକ ମାଧ୍ୟମ ଥିଲା ।

ସାର ଜର୍ଜ ଗ୍ରୀୟରସନ, ଡଃ ସୁକୁମାର ସେନ, ଡଃ ଜୟକାନ୍ତ ମିଶ୍ର ପ୍ରମୁଖ ମୈଥିଳୀ କବି ବିଦ୍ୟାପତି ଓ ତାଙ୍କର ଅନୁସରଣକାରୀଙ୍କ ଦ୍ୱାରା ଖ୍ରୀଷ୍ଟିୟ ୧୪ଶ ଶତକର ଦ୍ୱିତୀୟାର୍ଦ୍ଧରୁ ଉତ୍ତର-ପୂର୍ବ ଭାରତରେ ବ୍ରଜବୋଲି ସାହିତ୍ୟ ପ୍ରସାର ଲାଭ କରିଥିଲା ବୋଲି ମତ ବ୍ୟକ୍ତ କରିଛନ୍ତି । କିନ୍ତୁ ଦ୍ୱାଦଶ ଶତାବ୍ଦୀରେ ଉତ୍କଳୀୟ କବି ଜୟଦେବ **ମଧ୍ୟ** ବ୍ରଜବୋଲି

ଗୀତିକା ରଚନା କରିଥିଲେ । ଜୟଦେବଙ୍କ 'ଗୀତ ଗୋବିନ୍ଦ' ଖ୍ରୀ: ୧୧୫୦ରୁ ଖ୍ରୀ: ୧୧୭୦ ମଧ୍ୟରେ ରଚିତ ହୋଇଥିଲା ବୋଲି ନଗେନ୍ଦ୍ର ନାଥ ପ୍ରଧାନ ବିଭିନ୍ନ ଦିଗରୁ ଆଲୋଚନା କରି ସ୍ଥିର କରିଛନ୍ତି । ୧୨ଶ ଶତାବ୍ଦୀର ଶେଷଭାଗରେ ରଚିତ ଚାନ୍ଦକବିଙ୍କ 'ପୃଥ୍ୱୀରାଜ ରାସୋ' ଗ୍ରନ୍ଥରେ ଲିଖିତ ଅଛି—

"ଜୟଦେବ ଅଠ୍ଠ କବି୍ବ ଭୟଂ
କନୈ କେବଲଂ କତ୍ତି ଗୋବିନ୍ଦ ଗାୟଂ ।" (୩)

ପରବର୍ତ୍ତୀ କାଳରେ କବୀର ନିଜର ଦୋହାମାନଙ୍କରେ ମଧ୍ୟ ଜୟଦେବଙ୍କ ନାମୋଲ୍ଲେଖ କରିଛନ୍ତି । ଅନ୍ୟତମ ବ୍ରଜବୋଲି କବି ଗୋପୀକାନ୍ତ ଦାସ ଗୋଟିଏ ଗୀତିକାରେ ଉଲ୍ଲେଖ କରିଛନ୍ତି—

"ଶ୍ରୀ ଜୟଦେବ ବହୁରସ ବର୍ଣ୍ଣିଲ
କବି ସାସ୍ୱର ଚଣ୍ଡୀଦାସ
ଶ୍ରୀ ରାମାନନ୍ଦ ନାଟକ ପ୍ରକାଶଲ
ସୁମଧୁର ପ୍ରେମ ବିଳାସ ।"
( History of Brajabuli Literature )

କବିଙ୍କ ବର୍ଣ୍ଣିତ ଏହି 'ବହୁରସ' ହିଁ ମଧୁର ରସ । ଏଥିରୁ ଜଣାଯାଏ ଦ୍ୱାଦଶ ଶତାବ୍ଦୀର ଶେଷଭାଗରୁ ଜୟଦେବଙ୍କ କବିତ୍ୱର ଚୁମ୍ବକୀୟ ଆକର୍ଷଣରେ ପ୍ରେମ ଭକ୍ତିମାର୍ଗର କବିମାନେ ଆକର୍ଷିତ ହୋଇଛନ୍ତି । ଚତୁର୍ଦ୍ଦଶ ଶତାବ୍ଦୀର କବି ବିଦ୍ୟାପତି ବା ବାଦ ଯାଆନ୍ତେ କିପରି ? ସ୍ୱାପ୍‌ପା ଦାନପତ୍ରରୁ ବିଦ୍ୟାପତିଙ୍କର ଅଭିନବ ଜୟଦେବ ଉପାଧି ଥିବାର ଜଣାଯାଏ । ସ୍ୱ ରଚିତ ୫୨ଟି କବିତାର ଭଣିତାରେ ସେ ନିଜକୁ ନବ ଜୟଦେବ ବା ଅଭିନବ ଜୟଦେବ ଭାବରେ ମଧ୍ୟ ପରିଚିତ କରାଇଛନ୍ତି । ଏଥିରୁ ମନେହୁଏ ଜୟଦେବଙ୍କ ମଧୁର ରସସିକ୍ତ କାନ୍ତକୋମଳ ପଦାବଳୀଦ୍ୱାରା ପ୍ରଭାବିତ ହୋଇ ବିଦ୍ୟାପତି ସଙ୍ଗୀତ ରଚନା କରିଥିଲେ ଓ ପରବର୍ତ୍ତୀକାଳରେ ବିଦ୍ୟାପତିଙ୍କ ପ୍ରଭାବ ଅନ୍ୟାନ୍ୟ ବ୍ରଜବୋଲି କବିମାନଙ୍କୁ ପ୍ରଭାବିତ କରିଥାଇପାରେ । ଏଣୁ ବ୍ରଜବୋଲି ସାହିତ୍ୟର ସୃଷ୍ଟି ଜୟଦେବଙ୍କ ଦ୍ୱାରା ସର୍ବପ୍ରଥମେ ଘଟିଥିଲା ବୋଲି କହିଲେ ଅସମୀଚୀନ ହେବ ନାହିଁ । ୧୨ଶ ଶତାବ୍ଦୀ ବେଳକୁ ଗୋପୀନାଥ ପୂଜାର ପ୍ରଚଳନ ମଧ୍ୟ ଓଡ଼ିଶାରେ ପ୍ରସାର ଲାଭ କରିଥିଲା । ଜୟଦେବଙ୍କ ରଚିତ ଦୁଇଟି ବ୍ରଜବୋଲି କବିତା ସର୍ବପ୍ରଥମେ ଡଃ ବଂଶୀଧର ମହାନ୍ତିଙ୍କ ଦ୍ୱାରା 'ଝଙ୍କାର' ୨୧ ବର୍ଷ ବିଷୁବ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ଏହି କବିତା ଦୁଇଟି ମଧ୍ୟରୁ ପ୍ରଥମଟିରେ ବ୍ରଜବୋଲି ଭାଷାର ବିଶେଷ ପ୍ରଭାବ ଦେଖିବାକୁ ମିଳେ ନାହିଁ । କିନ୍ତୁ ଦ୍ୱିତୀୟଟିରେ ବ୍ରଜବୋଲିର ପ୍ରଭାବ ସୁସ୍ପଷ୍ଟ । ଯଥା :—

"ମନ କମଠ ପୃଷ୍ଠ କଠୋର କାର୍ମୁକ ଗୁଣେ
ସୁ ସନ୍ଧାନ ସେ ପଞ୍ଚସାୟକ
ଯଦି ଅଇଖନ କୋପେ କମନ
ଅସୁର ସୁରଗଣ ଭ୍ରାନ୍ତିଆ ।" (୪)

ଜୟଦେବଙ୍କ ପରେ ଦୀର୍ଘ ତ୍ରିଶତାଧିକ ବର୍ଷ ମଧ୍ୟରେ କୌଣସି ଓଡ଼ିଆ ବ୍ରଜବୋଲି କବିତା ଆବିଷ୍କୃତ ହୋଇନାହିଁ । ଷୋଡ଼ଶ ଶତାବ୍ଦୀର ଆଦ୍ୟପାଦରେ ବିଦ୍ୟାନଗର ଶାସକ (ପ୍ରତାପରୁଦ୍ର ଦେବଙ୍କ ପ୍ରତିନିଧି) ରାୟ ରାମାନନ୍ଦ ଓଡ଼ିଶା ତଥା ଭାରତର ଜଣେ ଶ୍ରେଷ୍ଠ ବ୍ରଜବୋଲି କବିଭାବରେ ଆତ୍ମପ୍ରକାଶ କରନ୍ତି ।

ମୈଥିଳୀ ସାହିତ୍ୟର ଇତିହାସ ଲେଖକ ଡଃ ଜୟକାନ୍ତ ମିଶ୍ର ରାୟରାମାନନ୍ଦଙ୍କ ପଦାବଳୀ ସମ୍ପର୍କରେ ଲେଖିଛନ୍ତି—"It certains more than hundred beautiful lyrics on devotion to Krushna, and is in many ways for superior to the average Brajaboli Poems. Its Maithili is mixed with Brajabhasa, Oriya and Bengali"(୫) ବ୍ରଜବୋଲି କବି ତଥା ପ୍ରେମଭକ୍ତି ମାର୍ଗର ଜଣେ ଶ୍ରେଷ୍ଠ ବୈଷ୍ଣବ ଭାବରେ ରାମାନନ୍ଦଙ୍କ ସୁଖ୍ୟାତି ଏଭଳି ପ୍ରସାର ଲାଭ କରିଥିଲା ଯେ ତାଙ୍କ ସମ୍ପର୍କରେ ଅନେକ ବ୍ରଜବୋଲି ଗୀତିକା ପରବର୍ତ୍ତୀକାଳରେ ରଚିତ ହୋଇଥିଲା । 'ଚୈତନ୍ୟ ଚରିତାମୃତ' ଅନୁଯାୟୀ ଶ୍ରୀ ଚୈତନ୍ୟ ଓଡ଼ିଶା ଆଗମନ (୧୫୦୯-୧୦) କରିବାପରେ ଯେତେବେଳେ କଣେ ବୈଷ୍ଣବତତ୍ତ୍ୱାନୁରାଗୀ ବ୍ୟକ୍ତିଙ୍କୁ ନ ପାଇ ନିରାଶ ହୁଅନ୍ତି, ସେତେବେଳେ ବାସୁଦେବ ସାର୍ବଭୌମ ତାଙ୍କୁ ରାୟ ରମାନନ୍ଦଙ୍କ ପରିଚୟ ପ୍ରଦାନପୂର୍ବକ କହନ୍ତି—

"ତୋମାର ସଙ୍ଗେର ଯୋଗ୍ୟ ତିହେଁା ଏକଜନ
ପୃଥିବୀତେ ରସିକ ଭକ୍ତ ନାହିଁ ତା'ର ସମ
ପାଣ୍ଡିତ୍ୟ ଓ ଭକ୍ତିରସ ଦୁହେଁର ତିହେଁା ସୀମା
ସମ୍ଭାଷିଲେ ଜାନିବେ ତୁମି ତାହାର ମହିମା ।" (୬)

ଏହାପରେ ଗୋଦାବରୀ ନଦୀ ତୀରରେ ରାମାନନ୍ଦଙ୍କ ସହିତ ତାଙ୍କର ସାକ୍ଷାତ ହୁଏ । ରାମାନନ୍ଦଙ୍କ କୈଶୋର ଲୀଳାର ମାଧୁର୍ଯ୍ୟ ବର୍ଣ୍ଣନା ଚୈତନ୍ୟଙ୍କୁ ମୁଗ୍‌ଧ କରି ନ ପାରିବାରୁ ସେ ସ୍ୱ ରଚିତ କବିତା ଗାନ କରନ୍ତି—

"ପହିଲ ହି ରାଗ ନୟନ-ଭଙ୍ଗ ଭେଲ ।
ଅନୁଦିନ ବାଢଲ ଅବଧି ନା ଗେଲ ॥
ନ ସୋ ରମଣ ନ ହାମ ରମଣୀ ।
ଦୁ ହୁଁ ମନ ମନୋଭବ ପେଷଲ ଜନି ॥
ଏ ସଖି ସେଁା ସବ ପ୍ରେମ-କାହାନୀ ।
କାନୁଠାମେ କହବୀ ବିଛୁରି ହିଜାନି ॥
ନ ଖେଁାଜଲୁଁ ଦୋତୀ ନ ଖେଁାଜଲୁଁ ଆନ ।
ଦୁହୁଁକ ମିଲନେ ମଧ୍ୟ ତ ପଞ୍ଚବାଣ ॥
ଅବ ସୋ ବିରାଗେ ତୁହୁଁ ଭେଲି ଦୋତୀ ।
ସୁ ପୁରୁଷ ପ୍ରେମିକ ଐଛନ ରୀତ ॥
ବର୍ଦ୍ଧନ ରୁଦ୍ର-ନରାଧିପ-ମାନ ।
ରାମାନନ୍ଦ-ରାୟ କବି ଭଣ ॥" (୭)

ସଙ୍ଗୀତଟିର ଭାବ ପ୍ରକାଶଭଙ୍ଗୀ ଚୈତନ୍ୟଙ୍କୁ ଏଭଳି ମୁଗ୍ଧ କଲା ଯେ ସେ ଆତ୍ମହରା ହୋଇ ରାମାନନ୍ଦଙ୍କ ମୁଖ ସ୍ୱହସ୍ତରେ ବନ୍ଦ କରିଥିଲେ । ରାମାନନ୍ଦଙ୍କ ନାମରେ ଭଣିତା ହୋଇଥିବା ଶତାଧିକ ବ୍ରଜବୋଲି କବିତା 'ଶ୍ରୀଶ୍ରୀପଦ କଳ୍ପତରୁ'ରେ ସନ୍ନିବିଷ୍ଟ ହୋଇଛି ।

ରାମାନନ୍ଦଙ୍କ ପରେ ତାଙ୍କର ସମସାମୟିକ ଅନ୍ୟତମ ଶ୍ରେଷ୍ଠ ବ୍ରଜବୋଲି ଗୀତକାର ହେଉଛନ୍ତି ରାଜା ପ୍ରତାପରୁଦ୍ର ଦେବ । ଡଃ ସୁକୁମାର ସେନ୍ କହନ୍ତି—"It cannot be the composition of that celebrated king of Orissa, but may have been composed by one of his courtiers or it might be the composition of a poet who took the pen-name "Pratap-rudra." (୮) ପ୍ରତାପରୁଦ୍ର ଦେବ 'ସରସ୍ୱତୀ ବିଳାସ' 'ପୌଢ଼ ପ୍ରତାପ ମାର୍ତ୍ତଣ୍ଡ', 'କର୍ଣ୍ଣୀସ୍ବ ସଂଗ୍ରହ' ଆଦି ଗ୍ରନ୍ଥ ଲେଖିଥିବାର ଜଣାଯାଏ । (୯) ପୁଣି ସେ ଥିଲେ ଚୈତନ୍ୟ ଦେବଙ୍କ ଭକ୍ତ ଓ ପରମ ବୈଷ୍ଣବ । ଏଥିରୁ ମନେହୁଏ ଡଃ ସେନ୍‌ଙ୍କ ମତ ଅଯୌକ୍ତିକ । ପ୍ରତାପରୁଦ୍ର ଦେବ ରାଧାକୃଷ୍ଣଙ୍କ ମାଧୁର୍ଯ୍ୟଲୀଳାର ଯେଉଁ ବର୍ଣ୍ଣନା ତାଙ୍କ ଗୀତକାରେ କରିଛନ୍ତି ତାହା ସୁଖପାଠ୍ୟ ଓ ହୃଦୟଗ୍ରାହୀ । ଯଥା :—

"ତୋମାର ଲାଗିୟା ରାଧେ ତୋମା ଆରାଧିନୁ
ମନେର ମାନସ ଯତ ସକଲ ସାଧିନୁ ।
ଅଙ୍ଗ ମାଝେ ହବ ତୋମାର ଅଙ୍ଗପରମ୍ବର
ଆଭରଣ ମାଝେ ହବ ଦୁଖାନ ନୂପୁର ।
ନଖଚନ୍ଦ୍ରେ ଚକୋର ପଦକମଳେ ଭ୍ରମର
ଓ ରୂପେ ମୁକୁର ହବ କରାଗେ ଚାମର ।
ଆର ଏକ ସାଧ ଆମି କରିୟାଛି ମନେ
ଅତି ଖୀଣ ରେଣୁ ହୈୟା ଥାକବ ଚରଣେ ।
ଦେଖୁ ହୈତେ ନା ପାଇ ଯଦି ମନେ ଅନୁମାନ
ପ୍ରତାପରୁଦ୍ରେ କୃପା କରହ ଆପନ ।"

(ବ୍ରଜବୋଲି ସାହିତ୍ୟର ଇତିହାସ)

ଜଗନ୍ନାଥ ଦାସଙ୍କ ନାମରେ ଭଣିତା ହୋଇଥିବା ତିନିଗୋଟି ବ୍ରଜବୋଲି କବିତା ଡଃ ସୁକୁମାର ସେନ୍‌ଙ୍କ "ବ୍ରଜବୋଲି ସାହିତ୍ୟର ଇତିହାସ"ରେ ଦେଖିବାକୁ ମିଳେ । କବିଙ୍କ ପରିଚୟ ଦେବାକୁ ଯାଇ ଲେଖକ କହିଛନ୍ତି—"ବ୍ରଜବୋଲି କବି ଜଗନ୍ନାଥ ଦାସଙ୍କର କୌଣସି ନିର୍ଦ୍ଦିଷ୍ଟ ପରିଚୟ ନାହିଁ । ଚୈତନ୍ୟଙ୍କ ଅନୁସରଣକାରୀ ବହୁ ଜଗନ୍ନାଥ ଦାସଙ୍କ ମଧ୍ୟରେ ଗଦାଧର ପଣ୍ଡିତଙ୍କ ଶିଷ୍ୟ ଜଗନ୍ନାଥ ଦାସ ଓ ଓଡ଼ିଆ ଭାଗବତ ରଚୟିତା ଜଗନ୍ନାଥ ଦାସ ଏହି ଦୁଇଜଣଙ୍କ ମଧ୍ୟରୁ କେହିଜଣେ ଜଗନ୍ନାଥ ଦାସ ବ୍ରଜବୋଲି କବିତା ରଚୟିତା ହୋଇପାରନ୍ତି ।" କିନ୍ତୁ ଏ ଦୁଇ ଜଗନ୍ନାଥ ଦାସଙ୍କ ମଧ୍ୟରୁ ଓଡ଼ିଆ ଭାଗବତ ରଚୟିତା ଜଗନ୍ନାଥ ବ୍ରଜବୋଲି କବିତା ରଚନା କରିଥିବା ଅଧିକ ସମ୍ଭବ । କାରଣ ଚୈତନ୍ୟଙ୍କ ସହିତ ଜଗନ୍ନାଥ ଦାସଙ୍କ ସମ୍ପର୍କ ଥିଲା ଅତି ଘନିଷ୍ଠ । ସେତେବେଳକୁ ଓଡ଼ିଶାରେ ବ୍ରଜବୋଲି ସାହିତ୍ୟ ଯଥେଷ୍ଟ ପ୍ରସାରଲାଭ କରିସାରିଲାଣି । ଏଣୁ ତାଙ୍କଭଳି

ଜଣେ କବି ବ୍ରଜବୋଲି ଗୀତିକା ରଚନା କରିଥିବା ଅସମ୍ଭବ ନୁହେଁ । ପ୍ରଥମ କବିତାଟିରେ ଚୈତନ୍ୟଙ୍କ ଜନ୍ମୋତ୍ସବର ବର୍ଣ୍ଣନା କବି କରିଛନ୍ତି । ପୁନେ ଶ୍ରୀକୃଷ୍ଣଙ୍କ ଅବତାର ଚୈତନ୍ୟଙ୍କ ମନରେ ଦ୍ୱାପର ଯୁଗର ସ୍ମୃତି ଉଜ୍ଜୀବିତ ହେବାରୁ ସେ ଭାବାବେଶରେ 'ଶ୍ରୀଦାମ, ସୁବଳ' ବୋଲି ଡାକଛନ୍ତି । ଏହାର ବର୍ଣ୍ଣନା କବି ଦ୍ୱିତୀୟ କବିତାରେ କରିଛନ୍ତି । ତୃତୀୟ କବିତାଟିରେ ଶ୍ରୀକୃଷ୍ଣଙ୍କ ଯମୁନାପୁଳିନରେ ବଂଶୀବାଦନ କରୁଥିବା ସମୟର ଛବି ପ୍ରଦତ୍ତ ହୋଇଛି । ଏଥିରେ ନଟବର ନାଗର, ଗୋପୀଜନଧୃତ ଭଙ୍ଗକାରୀ ଶ୍ରୀକୃଷ୍ଣଙ୍କ ଅଙ୍ଗଶୋଭାର ଯେଉଁ ବର୍ଣ୍ଣନା କବି କରିଛନ୍ତି, ବ୍ରଜବୋଲି ସାହିତ୍ୟରେ ତାହା କ୍ୱଚିତ ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ—

''ଅସିତ-ଅମ୍ବୁଧର-　　　　ଅସିତ ସରସୀରୁହ
ଅତସୀ କୁସୁମ, ଅହମକର ସୁତାନୀର
ଇନ୍ଦ୍ର ନୀଲମଣି　　　　ଉଦାର ମରକତ
ଶ୍ରୀ ନନ୍ଦିତ ବପୁ ଆଭରେ ।
ଶିରେ ଶିଖଣ୍ଡ ଦଳ ନବ ଗୁଞ୍ଜାଫଳ
ନିରମଳ ମୁକୁତା ଲମ୍ବି ନାସାତଳ
ନବ କମଳସ୍ମ-ଅବତଂସ ଗୋରୋଚନ
ଅଳକ ତିଲକ ମୁଖ ଶୋଭରେ ।
ଶ୍ରୋଣି ପୀତାମ୍ବର ବେଢ଼ ବାମକର
କମ୍ବୁକଣ୍ଠେ ବନମାଳା ମନୋହର
ଧାତୁରାଗ ବୈଚିତ୍ର୍ୟ କଳେବର
ଚରଣେ ଚରଣ ପରଶୋଭରେ ।
ଗୋଧୂଳି ଧୂସର ବିଶାଳ ବକ୍ଷସ୍ଥଳ
ରଙ୍ଗଭୂମି ଜିନି ବିଳାସ ନଟବର
ଗୋବ୍ରଁ ଦନ ରଜୁ ବନହିତ କନ୍ଧର
ରୂପେ ଭୁବନ ମନଲୋଭରେ ।''

ଓଡ଼ିଆ ସାହିତ୍ୟରେ ନାରୀ ଲେଖିକାମାନଙ୍କର ଅଭାବ ନାହିଁ । ସେହିଭଳି ଜଣେ ନାରୀ କବି ମାଧବୀ । ଷୋଡ଼ଶ ଶତାବ୍ଦୀର ପ୍ରେମଭକ୍ତିପ୍ରବାହ ତାଙ୍କ ହୃଦୟବେଳାରେ ପ୍ଲାବିତ ହୋଇଛି । କୃଷ୍ଣ ପ୍ରେମରେ ଉନ୍ମତ୍ତହୋଇ ସେ ଗାଇ ଉଠିଛନ୍ତି—

''ରାଧା ମାଧବ ବିଲସଇ କୁଞ୍ଜକ ମାହ
ତନୁ ତନୁ ସରସ-　　　　ପରଶ ରସ ପିବଇ
କମଳିନୀ ମଧୁକର ରାଜ ।
ସଚକିତେ ନାଗର　　　　କାଁପଇ ଥର ଥର
ଶିଥିଳ ହୋଯ୍ଯଲ ସବ ଅଙ୍ଗ ।
ଗଦ ଗଦ କହ ସ୍ୱେ　　　　ଗଇଭେଲ ଅଦରଣ
କବ ହୋଯ୍ଯବ ତନ୍ତୁ ସଙ୍ଗ ।

ସୋ ଧନୀ ଗୁଁଦ-　　ବଦନ କିୟେ ହେରବି
　ଶୁନବି ଅମିୟାମୟ ବୋଲ
ଇହ ମଝୁ ହୃଦୟ-　　ତାପ କିୟେ ମେଟବି
　ମୋଇ କରବି କିୟେ କୋଲ।
ଐଛନ କତହୁଁ　　ବିଲପଇ ମାଧବ
　ସହଚରୀ ଦୂରହି ହାସ
ଅପରୂପ ପ୍ରେମେ　　ବିଧାଦିତ ଅନ୍ତର
　କହତହିଁ ମାଧବୀ ଦାସ।" (୧୦)

ମାଧବୀ ଦାସୀଙ୍କର ବହୁ ଓଡ଼ିଆ ଓ ବ୍ରଜବୋଲି କବିତା ରହିଛି। ନିରାଡ଼ମ୍ବର ଶବ୍ଦାବଳୀ ମାଧ୍ୟମରେ ନିଜ ପ୍ରାଣର ନିଷ୍କପଟ ଅଭିବ୍ୟକ୍ତିକୁ ତାଙ୍କର ପ୍ରତ୍ୟେକ କବିତାରେ ସେ ବ୍ୟକ୍ତ କରିଛନ୍ତି। କୃଷ୍ଣ ଦାସ କବିରାଜ ଚୈତନ୍ୟ ଚରିତାମୃତରେ ତାଙ୍କୁ ରାଧାଙ୍କର ଅନ୍ୟତମା ସଖୀବୋଲି ଉଲ୍ଲେଖ କରିଛନ୍ତି। ମାଧବୀ ଦାସୀ ମାଧବୀ ଦାସ ବୋଲି ନିଜର ପରିଚୟ ଦେଇଥିବାରୁ କେହି କେହି ମାଧବୀ ଦୁଇଜଣ ବୋଲି କହନ୍ତି। କିନ୍ତୁ ଏ ମତ ସପକ୍ଷରେ କୌଣସି ବଳିଷ୍ଠ ଯୁକ୍ତି ନାହିଁ। ମାଧବୀ ଦାସୀ ବହୁ କବିତା ଚୈତନ୍ୟଙ୍କ ସମ୍ବନ୍ଧରେ ମଧ୍ୟ ରଚନା କରିଥିଲେ।

ଉପରୋକ୍ତ କବିମାନଙ୍କ ସମସାମୟିକ ଆଉ ଜଣେ ବିଖ୍ୟାତ କବି ହେଉଛନ୍ତି ଚମ୍ପତିରାୟ। ସପ୍ତଦଶ ଶତାବ୍ଦୀର ଲେଖକ ରାଧାମୋହନ ଠାକୁର 'ପଦାମୃତ ସମୁଦ୍ର' ଗ୍ରନ୍ଥରେ ଚମ୍ପତିରାୟ, ପ୍ରତାପରୁଦ୍ର ଦେବଙ୍କ 'ମହାପାତ୍ର' ଥିଲେ ବୋଲି ଉଲ୍ଲେଖ କରିଛନ୍ତି। ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ ଗ୍ରନ୍ଥରେ ପୁରୁଷୋତ୍ତମ ଦେବ ଓ ତାଙ୍କର ପତ୍ନୀ ଅନ୍ନପୂର୍ଣ୍ଣା ପାଟ ମହାଦେବୀଙ୍କ ମନୋରଞ୍ଜନ ପାଇଁ ଲିଖିତ 'ହରିବିଳାସ ପ୍ରବନ୍ଧ'ର ଉକ୍ତି ଉଦ୍ଧୃତ ହୋଇଛି। ଏଥିରୁ ଚମ୍ପତିରାୟ ପୁରୁଷୋତ୍ତମଦେବ ଓ ତାଙ୍କ ପୁତ୍ର ପ୍ରତାପରୁଦ୍ରଦେବଙ୍କ ସମସାମୟିକ ଥିବାର ଜଣାଯାଏ। 'ପଦକଳ୍ପତରୁ'ରେ ଚମ୍ପତି, ଚମ୍ପତି ପତି ଓ ଚମ୍ପତିରାୟ ଭଣିତାରେ ନଅଟି ପଦ ସଗୃହୀତ ହୋଇଛି। (୧୧) ଡଃ ସୁକୁମାର ସେନ ଚମ୍ପତିରାୟଙ୍କର ଯେଉଁ କବିତାଟିକୁ 'ବ୍ରଜବୋଲି ସାହିତ୍ୟର ଇତିହାସ'ରେ ଉଦ୍ଧାର କରିଛନ୍ତି ତାହା ରାଧାକୃଷ୍ଣଙ୍କ ମାଧୁର୍ଯ୍ୟ ଲୀଳାର ମାହାତ୍ମ୍ୟ ପ୍ରକାଶ କରି ଋଦ୍ଧିମନ୍ତ ହୋଇଛି। ଉଦାହରଣ ସ୍ୱରୂପ ଗୋଟିଏ ଦୁଇଟି ପଦ ନିଆଯାଇପାରେ। ଯଥା—

"ସଜନୀ, ଆର କତ କର ପରଲାପ
ସୋ ମୂଢେ ଯୈଚନ　　କରଲହିଁ ଅପମାନ
　ସୋ ବଡ଼ ହୃଦୟକ ତାପ।
ଯୋ ବର ନାଗରୀ　　ସାର କରିଲେୟଲ
　ସୋ ପଦ ସେ ବଉ ଆନନ୍ଦେ
ତା କର ଲଗି　　ଜାଗି ନିଶି ରୋୟଉ
　ପିବଉ ସୋ ମକରନ୍ଦେ।'

ଏହା ବ୍ୟତୀତ ଚମ୍ପତିରାୟ ମଧ କାଳୀ, ହରିହର ବନ୍ଦନା ସମନ୍ୱିତ ବ୍ରଜବୋଲି ଗୀତିକା ରଚନା କରିଛନ୍ତି । ସ୍ୱର୍ଗତ ଡଃ ଆର୍ତ୍ତବଲ୍ଲଭ ମହାନ୍ତି ''ପ୍ରାଚୀନ ଗଦ୍ୟପଦ୍ୟାଦର୍ଶରେ ଚମ୍ପତିରାୟଙ୍କ ରଚିତ 'କାଳୀ ବର୍ଣ୍ଣନା ଓ ବନ୍ଦନା' 'ହରିହର ବନ୍ଦନା' 'ରାଧାଙ୍କର ବିରହ ଦଶା ବର୍ଣ୍ଣନା' ନାମକ ତିନୋଟି ପଦ ସହିତ 'ହରି ବିଳାସ ପ୍ରବନ୍ଧ' ସମ୍ପର୍କରେ କବିଙ୍କ ଉକ୍ତିକୁ ଉଦ୍ଧାର କରିଛନ୍ତି ।

ଷୋଡ଼ଶ ଶତାବ୍ଦୀର ଶେଷଭାଗର ଉତ୍କଳୀୟ ବ୍ରଜବୋଲି ଗୀତିକାର ହେଉଛନ୍ତି ସାଲବେଗ । ତାଙ୍କର ଅନେକ ଜନପ୍ରିୟ ଓଡ଼ିଆ କବିତା ବ୍ୟତୀତ ବ୍ରଜଭାଷାରେ ଲିଖିତ କେତେକ ରଚନା ମିଳେ । 'ପଦକଲ୍ପତରୁ'ରେ ସାଲବେଗଙ୍କ ତିନୋଟି କବିତା ଉଦ୍ଧୃତ ହୋଇଛି । ଏହାର ଆଲଙ୍କାରିକତା ପାଠକକୁ ବିମୁଗ୍ଧ କରିଥାଏ । ଉଦାହରଣ ସ୍ୱରୂପ,—

"ନାଗରି ନାଗରି ନାଗରି
କତ ପ୍ରେମେର ଆଗରି ନବ ନାଗରି ।
କନକ-କେତକୀ-ଚମ୍ପା-ତଡ଼ିତ ବରଣୀ
ଇନ୍ଦୀବର ନୀଲମଣି-ଜଲଦବରଣୀ ।
ମୃଗଜ-ପଙ୍କଜ-ମୀନ-ଖଞ୍ଜନ-ନୟନୀ
କାମଧନୁ ଭ୍ରମ-ରଜ-ପଲ୍ଲବୁ ଭୁଜଙ୍ଗିନୀ ।" (୧୨)

କିଶୋରୀଙ୍କ ରୂପ ବର୍ଣ୍ଣନାରେ କବିଙ୍କର କମନୀୟ ଛଟା ବ୍ରଜବୋଲି ସାହିତ୍ୟରେ ସ୍ୱତନ୍ତ୍ର ମୁଦ୍ରାଙ୍କ ସ୍ଥାପନ କରିଛି ।

ଷୋଡଶ ଶତାବ୍ଦୀର ଅନ୍ୟାନ୍ୟ ପଦକର୍ତ୍ତାଙ୍କ ମଧ୍ୟରେ କାହ୍ନୁଦାସ ଓ ମୁରାରି ଅନ୍ୟତମ । ପ୍ରାଚୀନ ଗଦ୍ୟପଦ୍ୟାଦର୍ଶର ମୁଖବନ୍ଧରେ ଉପରୋକ୍ତ ଦୁଇଜଣ କବିଙ୍କୁ ବ୍ରଜବୋଲି ଗୀତିକାର ଭାବେ ସ୍ୱର୍ଗତ ଡଃ ଆର୍ତ୍ତବଲ୍ଲଭ ମହାନ୍ତି ସ୍ୱୀକାର କରିଥିଲେ ମଧ ଏମାନଙ୍କ ରଚନାର କୌଣସି ପରିଚୟ ଦେଇ ନାହାନ୍ତି । ଏମାନଙ୍କ ରଚନା ଏ ପର୍ଯ୍ୟନ୍ତ ଆବିଷ୍କାରର ଅପେକ୍ଷା ରଖିଛି ।

ଷୋଡ଼ଶ ଶତକରେ ବ୍ରଜବୋଲି କବିତାର ବିକାଶ ତଥା ବହୁଳତା ପାଇଁ ଏହାକୁ ବ୍ରଜବୋଲି ସାହିତ୍ୟର ସୁବର୍ଣ୍ଣଯୁଗ କୁହାଯାଇପାରେ । କିନ୍ତୁ ସପ୍ତଦଶ ଶତାବ୍ଦୀ ବେଳକୁ ମଧ ଏହାର ଧାରା କ୍ଷୀଣ ହୋଇନାହିଁ । ଏହି ସମୟର କବି ଭାବରେ ରାମଚନ୍ଦ୍ରକବି, ଯଦୁପତି ଦାସ ଓ ରାଏ ଦାମୋଦର ଦାସ ପ୍ରମୁଖ ପ୍ରେମଭକ୍ତିର ଦାମାମା ପିଟିଛନ୍ତି ସ୍ୱ ସ୍ୱ ବ୍ରଜବୋଲି ଗୀତିକା ମାଧ୍ୟମରେ ।

ସ୍ୱର୍ଗତ ଡଃ ଆର୍ତ୍ତବଲ୍ଲଭ ମହାନ୍ତି ରାମଚନ୍ଦ୍ରକବିଙ୍କୁ ରାମଚନ୍ଦ୍ର ଦେବ (୧୫୭୦-୧୭୦୧)ଙ୍କ ସମସାମୟିକ ଭାବେ ଗ୍ରହଣ କରିଛନ୍ତି ଏବଂ ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶରେ 'କଣାଗ୍ରି', 'ଆଭେରୀ' ଓ 'ଏକତାଳୀ' ନାମକ ତିନୋଟି କବିତାର ଉଲ୍ଲେଖ କରିଛନ୍ତି । ଏହାର ରଚୟିତା ରାମଚନ୍ଦ୍ରକବି ଗୀତିକା ତିନୋଟି ଯଥାକ୍ରମେ ରାମ, କୃଷ୍ଣ ଓ ଜଗନ୍ନାଥଙ୍କ ବିଷୟରେ ରଚନା କରିଛନ୍ତି । ଆକାରରେ କ୍ଷୁଦ୍ର ହେଲେହେଁ ଏଗୁଡ଼ିକର ସାହିତ୍ୟିକ ମୂଲ୍ୟର ହ୍ରାସ ଘଟିନାହିଁ । ଏଗୀତିକା ଗୁଡ଼ିକର ବିଶେଷତ୍ୱ ଯେ ଏହା ବିଶେଷ ଭାବରେ ଓଡ଼ିଆଭିମୁଖୀ ହୋଇଛନ୍ତି ।

ଶ୍ରୀ ଦାମୋଦର ଦାସଙ୍କ ଚାରୋଟି ଗୀତିକା ପ୍ରାଚୀନ ଗଦ୍ୟପଦ୍ୟାଦର୍ଶରେ ଉଦ୍ଧୃତ ହୋଇଛି । ଏ ଗୁଡ଼ିକ ହେଲା,—୧—ଆଦ୍ୟ, ୨—ଆଡ଼ିକୁ, ୩—ଘୋର ଓ ୪—ଠିଅଡ଼ା । ପ୍ରଥମଟିରେ ବର୍ଷା ଋତୁର ବର୍ଣ୍ଣନା ଓ ସେତେବେଳେ କିଶୋରୀଙ୍କ ଅବସ୍ଥା ବର୍ଣ୍ଣିତ ହୋଇଛି । ୨ୟଟିରେ 'ନନ୍ଦକିଶୋର'ଙ୍କ ପାଇଁ କିଶୋରୀଙ୍କ କାତରତା ଓ ୩ୟଟିରେ ଶୀତ ଋତୁର ଦୀର୍ଘ ରାତ୍ରିର ଅସହ୍ୟ ବିରହ ଯନ୍ତ୍ରଣା ବିଷୟ ବର୍ଣ୍ଣିତ ହୋଇଛି । ଚତୁର୍ଥ ଗୀତିକାଟିରେ ଗ୍ରୀଷ୍ମ ଋତୁର ବିରହ ଯନ୍ତ୍ରଣାର ଆଲେଖ୍ୟ ପ୍ରକଟିତ ହୋଇଛି । ଚନ୍ଦ୍ରକବିଙ୍କ ପରି ଏହା ଓଡ଼ିଆ ଶବ୍ଦବହୁଳ ହେଲେ ମଧ୍ୟ ଚନ୍ଦ୍ରକବିଙ୍କ ରଚନା ତୁଳନାରେ ଅଧିକ କୋମଳ ଓ ସୁଖପାଠ୍ୟ । ଯଥା—

"ପୂତନାଦି ବକ-ଶକଟ ଶିଶୁ ଦନୁଜ କୁଳ ନିବାରିଲେ
ଯାମଳାର୍ଜ୍ଜୁନ ଅଦ୍ଧ ପତିତ କୁଳ ଅବହେଳେ ତାରିଲେ ।
ଗୋପରକ୍ଷଣେ ଗିରି ଉଦ୍ଧରି ସୁରପତି ଗର୍ବ ଇଷିତେ ଗଞ୍ଜିଲେ
ଗୋପେ ଗୋପୀମନ ରଞ୍ଜିଲେ ।"

('ଆଦ୍ୟେଗ'—ଚନ୍ଦ୍ରକବି)

"ଦିବସ ତାପଇ ତପନ ଖରତର ରଜନୀ ତାପଇ ଠିଅଇ ଆ
ଚନ୍ଦନ ରଜ ଚୂର୍ତ୍ତ ମନ୍ଦର କିଛୁନାହିଁ ସଖି ସୁଖଇ ଆ
ପରମ କାରଣ ପରମ ଦାରୁଣ ମନେ ମନମଥ ରହିତଆ
ପନ୍ଥ ହେରି ହେରି ବିକଳ ଲୋଚନ କମଳ ଲୋଚନ ନମିଳେଆ ।"

('ଠିଅଡ଼ା'—ଶ୍ରୀ ଦାମୋଦର ଦାସ) (୧୩)

"ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ"ରେ ଥିବା ଯଦୁପତି ଦାସଙ୍କ 'ତାଳଆଦି' ଓ 'ଏକତାଳୀ' ପଦ ଦୁଇଟିରେ ନରସିଂହ ଦେବଙ୍କ ପ୍ରଶସ୍ତି ଗାନ କରାଯାଇଛି । ଏଥିରେ କବିତ୍ୱ ପରିଲକ୍ଷିତ ହୁଏନାହିଁ ସତ୍ୟ, କିନ୍ତୁ ପଦ ବିନ୍ୟାସ ଭଙ୍ଗୀରେ ସୌନ୍ଦର୍ଯ୍ୟ ପରିଲକ୍ଷିତ ହୁଏ । ଏହାର ଉଦାହରଣ ପାଇଁ 'ତାଳଆଦି'କୁ ନିଆ ଯାଇପାରେ,—

"ଉଦିନଲେ ନୃପ ନରସିଂହ ଧରଣୀ ତଳ
କୀର୍ତ୍ତି ରଜତ ଧରଣୀ ଧର ।
ନିର୍ମଳ ଧୀରୋଦାତ୍ତ ଧର୍ମ ଅତି ନିଶ୍ଚଳ
ଶରଣ ପ୍ରସନ୍ନ ଜନେ ବସ୍ତ୍ରକୁଆରେ ।" (୧୪)

ଉତ୍କଳୀୟ ରାଜବଂଶର ପରମ୍ପରାରେ କବିମାନଙ୍କ ଅଭାବ ନାହିଁ । ଡଃ ଦୀନେଶ ଚନ୍ଦ୍ର ସେନ ନରସିଂହ ଦେବଙ୍କ ପରିଚୟ ପାଇଁ 'ପ୍ରେମ ବିଳାସ'ର,—

"ନରୋତ୍ତମେର ସ୍ୱଗଣ ନରସିଂହ ମହାଶୟ,
ଦୂରଦେଶ ପଦ୍ମପଲ୍ଲୀ ଯାଁର ରାଜ୍ୟ ହୟ ।"

ଓ ଗୋବିନ୍ଦ ଦାସଙ୍କର ଗୋଟିଏ ଭଣିତା,—

"କମଲ ଲଳିତ ଚରଣ-ମଧ
ପାଓସ୍ତେ ସୋଇ ସୁଜାନ,

ରାଜା ନରସିଂହ                    ରୂପ ନାରାୟଣ
ଗୋବିନ୍ଦ ଦାସ ଅନୁମାନ ।" ର ଉଦ୍ଧାର କରିଛନ୍ତି ।

ସତୀଶଚନ୍ଦ୍ର ରାୟ ପଦକଳ୍ପତରୁରେ ନରସିଂହ ଦେବଙ୍କ ଭଣିତାରେ ଗୋଟିଏ ବଙ୍ଗଳାପଦ ଓ ନୃସିଂହ ଦେବଙ୍କ ଭଣିତାରେ ଦୁଇଟି ବ୍ରଜବୋଲି ଢୋଟକ ଛନ୍ଦର ପଦ ଉଦ୍ଧୃତ ହୋଇଥିବା କଥା କହିଛନ୍ତି । (୧୫) ଏହି ନରସିଂହ ଦେବ ଉତ୍କଳୀୟ ରାଜା ନରସିଂହଦେବ ହୋଇପାରିଥାଆନ୍ତି ।

ଓଡ଼ିଶାର ପୁରପଲ୍ଲୀରେ ଏବେ ମଧ୍ୟ ବହୁ ବ୍ରଜବୋଲି କୀର୍ତ୍ତନ ବା ସଂକୀର୍ତ୍ତନ ଗାନ କରାଯାଉଥିବାର ଶୁଣାଯାଏ । ଏଗୁଡ଼ିକରେ ମୁଖ୍ୟତଃ ରାଧାକୃଷ୍ଣ କିମ୍ବା ଚୈତନ୍ୟଙ୍କ ଲୀଳାର ମାହାତ୍ମ୍ୟ ପ୍ରକାଶିତ ହୋଇଥାଏ । ଏଗୁଡ଼ିକର ସଂଗ୍ରହ ଓ ସଂକଳନର ପ୍ରଚେଷ୍ଟା ହେବା ଉଚିତ ।

ଆଜି ଭାରତର ପ୍ରାଦେଶିକ ସ୍ତରରେ ଭାଷା ବିବାଦ ଏକ ବିରାଟ ସମସ୍ୟା ରୂପେ ଦେଖାଦେଇଛି । କିନ୍ତୁ ସେତେବେଳେ ଏ ସମସ୍ୟା ନ ଥିଲା । ଭାଷା ଭାବର ପ୍ରକାଶକ । ସେତେବେଳେ ଚୈତନ୍ୟ ଦେବଙ୍କ ବ୍ୟକ୍ତିତ୍ୱ, ଅଲୌକିକ ପ୍ରତିଭା ତାଙ୍କ ଅନୁଯାୟୀ ଭକ୍ତମାନଙ୍କୁ ମୁଗ୍ଧ କରିଥିଲା । ବିଭିନ୍ନ ଅଞ୍ଚଳର ଭକ୍ତମାନଙ୍କର ସମାବେଶ ହେତୁ ପରସ୍ପର ସହିତ ଭାବ ପ୍ରକାଶ କରିବା ପାଇଁ ଏକ ମାଧ୍ୟମିକ ପନ୍ଥାକୁ ସେମାନେ ଗ୍ରହଣ କରିଥିଲେ । ଏହି ଭାଷା ହିଁ ବ୍ରଜବୋଲି । ଯିଏ ସେହି ଭାଷାକୁ ସମଗ୍ର ଉତ୍ତରପୂର୍ବ ଭାରତର ଭକ୍ତ ତଥା ପଣ୍ଡିତମାନେ ଗ୍ରହଣ କରି ନେଇଥିଲେ; ପରବର୍ତ୍ତୀ କାଳରେ ଏହା କ୍ଷୀଣରୁ କ୍ଷୀଣତର ହୋଇ ଲୁପ୍ତ ହୋଇଗଲା । ବଙ୍ଗ, ମିଥିଳା ପରି ଓଡ଼ିଶୀ ପରଂପରାରେ ମଧ୍ୟ ଏହି ଭାଷାର ବିକାଶ ସାଧନ ହୋଇଥିଲା । କିନ୍ତୁ ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ଓଡ଼ିଶାର ବିଶେଷତ୍ୱ ହେଉଛି ଯେ ଏଇଠାରେ ହିଁ ଦ୍ୱାଦଶ ଶତାବ୍ଦୀରୁ ପ୍ରଥମେ ଏହାର ସୃଷ୍ଟି ହୋଇ ସମଗ୍ର ଉତ୍ତର ପୂର୍ବ ଭାରତରେ ପ୍ରସାର ଲାଭ କରିଥିଲା । ଯିନ ରହିନେ ରହି କେବଳ ଚିହ୍ନ ବା ନିଦର୍ଶନ । ସେ ଯୁଗ ଚାଲି ଯାଇଥିଲେ ବି ତତ୍କାଳୀନ ସମାଜରେ ପ୍ରତିଷ୍ଠିତ ହୋଇଥିବା ପ୍ରେମଭକ୍ତିର ସ୍ମୃତିକୁ ଆଜି ଓଡ଼ିଆର ମାନସ ପଟରେ ଉଜ୍ଜୀବିତ କରାଉଛି ଶୁଦ୍ଧ, ନିଷ୍କପଟ, ଅନାବିଳ, ଲଳିତ, ସରଳ, ତରଳ, କାନ୍ତକୋମଳ, ହୃଦୟଗ୍ରାହୀ ବ୍ରଜବୋଲି ଗୀତିକା ସମୂହ ।

**ସହାୟକ ଗ୍ରନ୍ଥ ଓ ପତ୍ରିକା :—**

(୧) History of Brajaboli literature—Sukumar Sen.
(୨) ଓଡ଼ିଆ ଭାଷାର ଉତ୍ପତ୍ତି ଓ କ୍ରମବିକାଶ—ଡଃ ବଂଶୀଧର ମହାନ୍ତି ।
(୩) ଓଡ଼ିଆ ସାହିତ୍ୟରେ ଜୟଦେବ—ନଗେନ୍ଦ୍ରନାଥ ପ୍ରଧାନ ।
(୪) 'ଝଙ୍କାର'—୨୧ବର୍ଷ ବିଷୁବ ସଂଖ୍ୟା ।
(୫) ଓଡ଼ିଆ ସାହିତ୍ୟର ମଧ୍ୟପର୍ବ—ସୁରେନ୍ଦ୍ର ମହାନ୍ତି ।
(୬) ଚୈତନ୍ୟ ଚରିତାମୃତ—କୃଷ୍ଣଦାସ କବିରାଜ ।

(୭) History of Brajaboli literature—Sukumar Sen.

(୮) ,, ,,

(୯) ଓଡ଼ିଆ ସାହିତ୍ୟର ଇତିହାସ (୧ମ ଭାଗ)—ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ।

(୧୦) History of Brajaboli literature—Sukumar Sen.

(୧୧) 'କୋଣାର୍କ'—୩ୟ ବର୍ଷ, ୩ୟ ଓ ୪ର୍ଥ ସଂଖ୍ୟା—"ବ୍ରଜବୋଲି ସାହିତ୍ୟ"
—ଅଧ୍ୟାପକ ଗଙ୍ଗାଧର ବଳ

(୧୨) ,, ,, ,,

(୧୩) ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ—ଡଃ ଆର୍ତ୍ତବଲ୍ଲଭ ମହାନ୍ତି ।

(୧୪) ,, ,,

(୧୫) 'କୋଣାର୍କ'—୩ୟ ବର୍ଷ, ୩ୟ ଓ ୪ର୍ଥ ସଂଖ୍ୟା ।



# ପଞ୍ଚସଖା ଦର୍ଶନ

ଶ୍ରୀ କୁଳମଣି ନାୟକ
ସ୍ନାତକୋତ୍ତର ଓଡ଼ିଆ ବିଭାଗ, ବାଣୀବିହାର

ଓଡ଼ିଆ ସାହିତ୍ୟରେ ଭିନ୍ନ ଭିନ୍ନ ଯୁଗରେ ଓ ଭିନ୍ନ ଭିନ୍ନ ରୂପରେ ପଞ୍ଚସଖା ଆବିର୍ଭୂତ ହୋଇଥିବା ଆମେ ଦେଖିଥାଉଁ, ଯଥା—ବୈଷ୍ଣବ ଯୁଗର ପଞ୍ଚସଖା, ସତ୍ୟବାଦୀ ଯୁଗର ପଞ୍ଚସଖା, ସବୁଜ ଯୁଗର ପଞ୍ଚସଖା ଇତ୍ୟାଦି । ମାତ୍ର ଆଲୋଚ୍ୟ ପଞ୍ଚସଖାହିଁ ଏକ ରୂଢ଼ି ଅର୍ଥରେ ପ୍ରଯୁକ୍ତ । ପଙ୍କରୁ କଇଁ, ପଦ୍ମ, ଶୈବାଳ ଓ ଅନ୍ୟାନ୍ୟ ବହୁ ଜମ୍ବାଳାଦି ଜଳଜ ଉଦ୍ଭିଦ ଜାତ ହେଉଥିଲେ ହେଁ 'ପଙ୍କଜ' କହିଲେ ଯେପରି କେବଳ 'ପଦ୍ମ'କୁ ହିଁ ବୁଝାଇ ଥାଏ, ଠିକ୍ ସେହିପରି ଓଡ଼ିଆ ସାହିତ୍ୟରେ ଏକାଧିକ ପଞ୍ଚସଖା ଥିଲେ ହେଁ 'ପଞ୍ଚସଖା' କହିଲେ ମୁଖ୍ୟତଃ ବଳରାମ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତ, ଯଶୋବନ୍ତ ଆଦି ପଞ୍ଚସାଧକଙ୍କୁହିଁ ବୁଝାଇଥାଏ । ଏହି ପଞ୍ଚସଖା ସାହିତ୍ୟହିଁ ଓଡ଼ିଆ ସାହିତ୍ୟର ଏକ ଯୁଗାନ୍ତକାରୀ ବୈଶିଷ୍ଟ୍ୟ । ହିନ୍ଦି, ବଙ୍ଗଳା, ଆସାମୀ ଆଦି ସାହିତ୍ୟରେ ପୁରାଣ ଯୁଗ, ରୀତି ଯୁଗ, ଆଧୁନିକ ଯୁଗ ଆଦି ରହିଛି । ସମାନ ଧର୍ମ, ଗୁଣ ଓ କାବ୍ୟାଦର୍ଶ ନେଇ କାବ୍ୟ କବିତାମାନ ରଚନା କରାଯାଇଛି । ମାତ୍ର ଓଡ଼ିଆ ସାହିତ୍ୟରେ ଏହି ପଞ୍ଚସଖା ବିରଚିତ ସୃଷ୍ଟି ପ୍ରକରଣ, ଷଡ଼ଚକ୍ର, ଶୂନ୍ୟବାଦୀ ସାଧନାମାର୍ଗ, ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ, ସଗୁଣ, ନିର୍ଗୁଣ ବ୍ରହ୍ମଙ୍କ ଉପାସନା; ମନ୍ତ୍ର, ଯନ୍ତ୍ର, ଓ ଯୋଗ ଆଦି ଯେପରି ଭାବେ ପ୍ରକାଶ ପାଇଛି, ଅନ୍ୟ କୌଣସି ପ୍ରାନ୍ତୀୟ ସାହିତ୍ୟରେ ଏତାଦୃଶ ସାହିତ୍ୟ ସୃଷ୍ଟି ହୋଇନି । ଓଡ଼ିଆ ସାହିତ୍ୟର ଏହାହିଁ ନିଜସ୍ୱ ଓ ବୈଶିଷ୍ଟ୍ୟ । ସାରଳାଦାସ ଓଡ଼ିଆ ସାହିତ୍ୟ ଉଦ୍ୟାନରେ ଯେଉଁ ରସାଳ ବୀଜଟି ବପନ କରିଥିଲେ ତାହା ଇତି ମଧ୍ୟରେ ଅଙ୍କୁରିତ, ପଲ୍ଲବିତ ଓ ପୁଷ୍ପିତ ହୋଇ ସାରିଥିଲା । 'ପଞ୍ଚସଖା' କେବଳ ସେହି ବୃକ୍ଷରେ ଫଳ ସଂଯୋଗ କରିଛନ୍ତି । ଯେଉଁ ଫଳର ଅମୀୟ ସ୍ୱାଦ ସାହିତ୍ୟ-ରସିକମାନଙ୍କୁ ଚଖାଇ ଓଡ଼ିଆ ସାହିତ୍ୟରେ ଅମର ହୋଇଛନ୍ତି ।

ଆଜି ଅବଶ୍ୟ ସାହିତ୍ୟର ସେହି ମୂଲ୍ୟବୋଧ ପରିବର୍ତ୍ତିତ ହୋଇଯାଇଛି । ଆଜିର ସଭ୍ୟତା ଏକ ନାସ୍ତିକ, ଚାର୍ବାକ୍‌ବାଦୀ ସଭ୍ୟତା । ଭଗବତ୍ ବିଶ୍ୱାସ ଏଠାରେ ପଙ୍ଗୁ, ଧର୍ମଭାବ ଏଠି ମୂଲ୍ୟହୀନ, ଆତ୍ମା, ବ୍ରହ୍ମ, ନିରାକାର ନିରଞ୍ଜନ, ଅନନ୍ତ, ବାସୁଦେବ ଆଦି ଆଜି ସାହିତ୍ୟରେ ଶ୍ମଶାନ ଘଟିକା ପରି ଘୃଣ୍ୟ, ତ୍ୟାଜ୍ୟ ଓ ଅନାଦରକାରୀ ବସ୍ତୁ । ମାତ୍ର ଏହି ଧର୍ମ ଧାରଣାକୁ ରୂପ ଦେଇଥିବା ଯୁଗ ଯୁଗର ସୃଷ୍ଟିକଳା ଓ କାରୁକଳା, ବାରମ୍ବାର ଆଲୋଚିତ, କର୍ଷିତ, ମନ୍ଥିତ ହୋଇଥିବା ଦର୍ଶନବାଦ ଓ ପରୀକ୍ଷିତ, ନିରୀକ୍ଷିତ ଓ ପ୍ରମାଣିତ

ହୋଇଥିବା ଆତ୍ମଜ୍ଞାନର ଧାରାକୁ ଆମ ମନରୁ ସମ୍ପୂର୍ଣ୍ଣ ପୋଛିଦେଇ ପାରିନୁ । ଆମର ଅବଚେତନ ମନ ତଳେ ସେ ଧାରା ବେଳେ ବେଳେ ଉଙ୍କି ମାରୁଥାଏ ।

ପଞ୍ଚସଖାଙ୍କ ବିଷୟରେ କିଛି ଆଲୋଚନା କରିବାକୁ ଗଲାବେଳେ ଆମ ଆଗରେ ଅନେକ ପ୍ରତିବନ୍ଧକ ଉପସ୍ଥିତ ହୁଏ । ପ୍ରଥମତଃ ସେମାନଙ୍କ ରଚିତ ସମସ୍ତ ଗ୍ରନ୍ଥ ଏଯାବତ୍ ପ୍ରକାଶିତ ହୋଇନି । ପୁନଶ୍ଚ ଯେତିକି ପ୍ରକାଶିତ ହୋଇଛି ତାହା ଉପରେ ଆଲୋଚନା ଏକାନ୍ତ ସୀମିତ । ତେଣୁ ଏସବୁ ଆଲୋଚନା ଅନେକ ସମୟରେ ଏକଦେଶଦର୍ଶୀ, ଭ୍ରମାତ୍ମକ ଓ ମତାନ୍ତର ସାପେକ୍ଷ ।

କେତେକ ସମାଲୋଚକଙ୍କ ମତରେ ବଳରାମହିଁ ପଞ୍ଚସଖାଙ୍କ ମଧ୍ୟରେ ବୟୋଜ୍ୟେଷ୍ଠ । ମାତ୍ର ଅଚ୍ୟୁତାନନ୍ଦଙ୍କ 'ଉଦୟ କାହାଣୀ' ଅନୁଯାୟୀ ପଞ୍ଚସଖାଙ୍କ ଜନ୍ମ ସମୟ ହେଲା— ଅଚ୍ୟୁତାନନ୍ଦ ଖ୍ରୀ: ୧୪୮୨, ବଳରାମ ଖ୍ରୀ: ୧୪୮୪, ଅନନ୍ତ ଖ୍ରୀ: ୧୪୮୬, ଜଗନ୍ନାଥ ଓ ଯଶୋବନ୍ତ ଖ୍ରୀ: ୧୪୮୭ । ତେଣୁ ଉଦୟକାହାଣୀ ଅନୁଯାୟୀ 'ଅଚ୍ୟୁତାନନ୍ଦ'ହିଁ ବୟୋଜ୍ୟେଷ୍ଠ (୧) ପୁନଶ୍ଚ ଅନ୍ୟାନ୍ୟ ଧର୍ମ ପ୍ରବର୍ତ୍ତକମାନଙ୍କ ପରି ଏମାନେ ଈଶ୍ୱରଙ୍କ ସହିତ ସାନ୍ନିଧ୍ୟ ଓ ସାହଚର୍ଯ୍ୟକୁ ପ୍ରତିଷ୍ଠା କରିବା ପାଇଁ ଏବଂ ନିଜର ଜାତି ସ୍ୱରୂପର ପ୍ରଖ୍ୟାପନ ପାଇଁ ପୂର୍ବ ଜନ୍ମର ବିବରଣ ପ୍ରଦାନ କରିଛନ୍ତି । ଅଚ୍ୟୁତାନନ୍ଦଙ୍କ 'ଭାବନାବରି' 'ଦଶପଟଳ ମାଳିକା' ଓ 'ଗୋପାଳଙ୍କ ଓଗାଳ'ରେ ବହୁ ପ୍ରମାଣ ଦେଉଛନ୍ତି । 'ଗୋପାଳଙ୍କ ଓଗାଳ ଅନୁଯାୟୀ ପଞ୍ଚସଖାଙ୍କ ଜନ୍ମାନ୍ତରବାଦ ନିମ୍ନମତେ—

ଅନନ୍ତ ଯୁଗ—ଶ୍ରୀରାମ, ସୁଦାମ, ବସୁଦାମ, ନନ୍ଦ, ସୁନନ୍ଦ ।
ସତ୍ୟଯୁଗ—ମାର୍କଣ୍ଡ, କୃପାଜଳ, ଗାର୍ଗବ, ସ୍ୱୟମ୍ଭୁ, ନାରଦ, (ନିରଞ୍ଜନଙ୍କ ପଞ୍ଚସଖା)
ତ୍ରେତାଯୁଗ—ନଳ, ନୀଳ, ସୁଷେଣ, ଜାମ୍ବେବ, ହନୁମାନ (ରାମଚନ୍ଦ୍ରଙ୍କ ପଞ୍ଚସଖା)
ଦ୍ୱାପର ଯୁଗ—ସୁବଳ, ସୁବାହୁ, ଦାମ, ସୁଦାମ, ଶ୍ରୀବତ୍ସ । (ଶ୍ରୀକୃଷ୍ଣଙ୍କ ପଞ୍ଚସଖା)
କଳିଯୁଗ—ଅନନ୍ତ, ଅଚ୍ୟୁତ, ଜଗନ୍ନାଥ, ଯଶୋବନ୍ତ, ବଳରାମ ।
(ଚୈତନ୍ୟଙ୍କ ପଞ୍ଚସଖା)

ଏଠି ଲକ୍ଷ୍ୟ କରିବାର କଥା ଯେ ଆମର 'ଯୁଗଭେଦ'ରେ 'ଅନନ୍ତଯୁଗ' ବୋଲି କୌଣସି ଯୁଗ ନାହିଁ । ତେଣୁ ଏହି 'ଅନନ୍ତ ଯୁଗ'ରୁ ଏହା ଧ୍ୱନିତ ହୁଏ ଯେ—ଅନାଦି, ଅସୀମ ଅନନ୍ତ ଯୁଗରୁ ବା ସୃଷ୍ଟିର ଆବହମାନ କାଳରୁ ପଞ୍ଚସଖା ଉପର୍ଯ୍ୟୁକ୍ତ ଅବତାର ଭାବେ ଜନ୍ମଗ୍ରହଣ କରି ଭଗବାନଙ୍କର ଭକ୍ତ ଓ ସେବକ ଭାବେ ଜୀବନାବସାନ କରିଛନ୍ତି । ତେଣୁ ଯଥାର୍ଥରେ ଅଚ୍ୟୁତାନନ୍ଦ କହନ୍ତି—

"ରାଧାକୃଷ୍ଣଙ୍କର ଲୀଳା ପ୍ରକାଶିବା ପାଇଁ
ଜନମ ହୋଇଲୁ ଆମ୍ଭେ ପଞ୍ଚସଖା ତହିଁ ।" (୨)

---

(୧) ଓଡ଼ିଆ ସାହିତ୍ୟର ଇତିହାସ—୧ମ ଭାଗ—ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ—ପୃ-୬୪୦
(୨) 'ଗୋପାଳଙ୍କ ଓଗାଳ' ଲେ—ଅଚ୍ୟୁତାନନ୍ଦ ଦାସ

ପଞ୍ଚସଖାଙ୍କ ସମ୍ପର୍କରେ ୪ଟି ମତ ମିଳିଥାଏ । ସେଗୁଡ଼ିକ—

୧ମ ମତ :—ଶ୍ରୀ ନଗେନ୍ଦ୍ରନାଥ ବସୁ କହନ୍ତି—"ବାହ୍ୟରୂପରେ ଚୈତନ୍ୟଙ୍କର ଅନୁଗାମୀ ବୋଲି ନିଜକୁ କହିଥିଲେ ମଧ୍ୟ ପଞ୍ଚସଖା ହୃଦୟ ଭିତରେ ବହୁକାଳ ଅବହେଳିତ ମହାଯାନ ବୌଦ୍ଧ ଧର୍ମର ଶକ୍ତିଶାଳୀ ପ୍ରବର୍ତ୍ତକ ଥିଲେ ।" (୩)

୨ୟ ମତ :—ଡ଼: ଆର୍ତ୍ତବଲ୍ଲଭ ମହାନ୍ତି କହନ୍ତି—"ଚୈତନ୍ୟଙ୍କ ଲୀଳା ଅଂଗରେ ପଞ୍ଚସଖା ପରିକର ଥିଲେ । ତାଙ୍କର ଓଡ଼ିଶା ଆଗମନ ସଙ୍ଗେ ସଙ୍ଗେ ଏହି ଦେଶରେ ପ୍ରେମ ଧର୍ମର ପ୍ରବାହିତ ହେଉଥିବା ବନ୍ୟାକୁ ପଞ୍ଚସଖା ସମଗ୍ର ଓଡ଼ିଶା ପ୍ରାନ୍ତରେ ପରିବ୍ୟାପ୍ତ, ପରିପ୍ରସାର କରି ଦେଇଥିଲେ ।" (୪)

୩ୟ ମତ :—ଆଉ କେତେକ ସମାଲୋଚକ କହନ୍ତି—ପଞ୍ଚସଖା ଥିଲେ ପିଣ୍ଡିକ ସାଧକ । ସେମାନେ ଗୁରୁବାଦର ଅନୁବର୍ତ୍ତୀ । ବଳରାମ, ଅଚ୍ୟୁତ, ଅନନ୍ତ ଆଦି ବହୁ ପରିମାଣରେ ତନ୍ତ୍ରଦ୍ୱାରା ପ୍ରଭାବିତ । ତତ୍ପରି ଆପଣାର ବିଶ୍ୱରକୁ ଗୁପ୍ତ ରଖିବାକୁ ମଧ୍ୟ ଶିଷ୍ୟମାନଙ୍କୁ ଉପଦେଶ ଦେଇଛନ୍ତି । କାୟା ସାଧନ ଓ ବିଭିନ୍ନ କର୍ମକାଣ୍ଡର ଅବତାରଣା ଏମାନଙ୍କ ଗ୍ରନ୍ଥରେ ଥିବାରୁ ଏମାନଙ୍କୁ କେତେକ ଗୋରେଖପନ୍ଥୀ କାୟା ସାଧକ ବୋଲି ଅନୁମାନ କରନ୍ତି । (୫)

୪ର୍ଥ ମତ :—ଶ୍ରୀ ସୁରେନ୍ଦ୍ର ମହାନ୍ତି ଉପର୍ଯ୍ୟୁକ୍ତ ଆର୍ତ୍ତବଲ୍ଲଭଙ୍କ ମତକୁ ଖଣ୍ଡନ ପୂର୍ବକ ନଗେନ୍ଦ୍ରବାବୁଙ୍କ ମତକୁ ସ୍ୱୀକାର କରି କହିଛନ୍ତି—"ମହାଯାନୀ ବୌଦ୍ଧ ଧର୍ମର ଝୁଅଧାମୀ ବୃନ୍ଦଙ୍କ ପରିକଳ୍ପନା ଏମାନଙ୍କ ପଞ୍ଚସଖା ପରିଚୟକୁ ପ୍ରଣୋଦିତ କରିଥିବା ସ୍ୱାଭାବିକ । ଏମାନଙ୍କୁ ତେଣୁ ଚୈତନ୍ୟଙ୍କ ପରିକର ରୂପେ ଚିହ୍ନିତ କରିବା ଅତ୍ୟନ୍ତ ଅପ୍ରାସଙ୍ଗିକ" (୬) ମାତ୍ର ପରେ ପରେ ପୁଣି କହିଛନ୍ତି—''ପ୍ରେମଭକ୍ତି''ରେ ଶ୍ରୀକୃଷ୍ଣ-ସଖା ପଞ୍ଚପାଣ୍ଡବଙ୍କ ବିକଳ୍ପରୂପେ, 'ଜ୍ଞାନ-ଭକ୍ତି'ରେ ଅଚ୍ୟୁତାନନ୍ଦ 'ପଞ୍ଚସଖା'ର ପରିଚିତ ପ୍ରସ୍ତୁତ କରିଥିବା ତେଣୁ ଅସମ୍ଭବ ନୁହେଁ । 'ପଞ୍ଚ-ସଖା' ତେଣୁ ଏକ ଐତିହାସିକ ସଙ୍ଘ ନୁହେଁ, ଏହା ଏକ ଭକ୍ତିକ ପରିକଳ୍ପନା ମାତ୍ର ।" (୭)

ଏଇ ପୁଣ୍ୟଭୂମି ଓଡ଼ିଶା ସର୍ବଧର୍ମ ସମନ୍ୱୟର ପୀଠ । ଏହି ଓଡ଼ିଶାର କମ୍ବୁ-କଣ୍ଟକର ଦେବତା କେବଳ ସେହି ସ୍ଥାନର ଦେବତା ନୁହନ୍ତି । ଭୌଗୋଳିକ ସୀମାରେଖା ଡେଇଁ ସେ ହୁଅନ୍ତି ଜଗତରନାଥ (ଜଗନ୍ନାଥ), ଚକ୍ର କ୍ଷେତ୍ରର ଦେବତା ହୁଅନ୍ତି ଭୁବନର ଈଶ୍ୱର (ଭୁବନେଶ୍ୱର) । ଓଡ଼ିଶାରେ ଶୈବ, ବୈଷ୍ଣବର ଭେଦଭାବ ନାହିଁ । ସବୁ ଏକାକାର । ଜଗନ୍ନାଥ 'ବୈଷ୍ଣବ' କିନ୍ତୁ ଏଯାବତ୍ ସେ ଭୈରବ ବା ଶୈବ ମନ୍ତ୍ରରେ ପୂଜିତ ହୋଇ

---

(୩) Archaeolgical Survey of Mayurbhanja—Nagendra Nath Basu.

(୪) ବ୍ରାହ୍ମଣାଞ୍ଚଳ ଓ ଅଣାକାର ସଂହିତା (ପ୍ରାଚୀ ମୁଖବନ୍ଧ)—ଡ଼: ଆର୍ତ୍ତବଲ୍ଲଭ ମହାନ୍ତି

(୫) ଶିଳା ଓ ଶାଳଗ୍ରାମ—ଡ଼: ଚିତ୍ତରଞ୍ଜନ ଦାସ—ପୃ-୬୮

(୬) ଓଡ଼ିଆ ସାହିତ୍ୟର ମଧ୍ୟ ପର୍ବ—ସୁରେନ୍ଦ୍ର ମହାନ୍ତି—ପୃ-୨୧୯

(୭) ତଦୈବ—ପୃ-୨୨୦

ଆସୁଛନ୍ତି । ଜଗନ୍ନାଥଙ୍କ ଭୋଗ ବିମଳା (ରୁଦ୍ରାଣୀ)ଙ୍କ ମନ୍ଦିରରେ ଭୋଗ ହୋଇ ସରିଲା ପରେହିଁ 'ମହାପ୍ରସାଦ' ହୋଇଥାଏ । ଲିଙ୍ଗରାଜ ମନ୍ଦିର ଶୈବ ମନ୍ଦିର ମାତ୍ର ଏହାର ଶୀର୍ଷରେ ଚକ୍ର (ବିଷ୍ଣୁ ଆୟୁଧ) ଓ ତ୍ରିଶୂଳ (ଶିବ ଆୟୁଧ) ଉଭୟ ଏକତ୍ର ଶୋଭାପାଉଛି । ଏଠାରେ ବେଲପତ୍ର (ଶୈବ ପ୍ରତୀକ) ଓ ତୁଳସୀ (ବିଷ୍ଣୁ ପ୍ରତୀକ) ଉଭୟ ପୂଜାରେ ଲାଗେ, ଯାହା ଭାରତ ବର୍ଷର ଅନ୍ୟ କୌଣସିଠାରେ ସମ୍ଭବ ନୁହେଁ । ତେଣୁ ଉତ୍କଳ ସର୍ବଧର୍ମ-ସମନ୍ୱୟ କ୍ଷେତ୍ର ।

ଏଠି ଜୈନ, ବୌଦ୍ଧ, ବୈଷ୍ଣବ, ଶୈବ, ଶାକ୍ତ, ଗାଣପତ୍ୟ, ସୌର ଆଦି ବିଭିନ୍ନ ଧର୍ମ ସଂପ୍ରଦାୟ ଆପଣା ଆପଣା ଭିତରେ ଥିବା ବିଦ୍ୱେଷ ଲୋପକରି ଏକାକାର ହୋଇ ଯାଇଛନ୍ତି । ଏକ ମାନବ ଧର୍ମକୁ ସ୍ୱାଗତ ଜଣାଇଛନ୍ତି । ବିଭିନ୍ନ ଧର୍ମର ମୌଳିକ ନୀତିରେ ଯେପରି ପାର୍ଥକ୍ୟ ରହିଛି ତଦନୁଯାୟୀ ସେହିସବୁ ଧର୍ମର ଆଗମଶାସ୍ତ୍ରରେ ମଧ୍ୟ ପାର୍ଥକ୍ୟ ରହିଛି । ଶୈବମାନଙ୍କର ଆଗମ—'ତନ୍ତ୍ର' ଓ 'ଯୋଗ'; ବୈଷ୍ଣବମାନଙ୍କର ଜ୍ଞାନମିଶ୍ରା ଓ ଶୁଦ୍ଧା ଭକ୍ତିଭାବ । ବୌଦ୍ଧ ଧର୍ମରେ ତାହା 'ପ୍ରଜ୍ଞା', 'ମୁଦିତା' ଓ 'କରୁଣା' । ବୈଷ୍ଣବ ଆଗମ ମୁଖ୍ୟତଃ ଦ୍ୱିବିଧ—'ପାଞ୍ଚରାତ୍ର' ଓ 'ଭାଗବତ' । ଜଗନ୍ନାଥ ଦାସ ଓ ତାଙ୍କ ଅନ୍ୟ ଚାରି ସଖା ଏହି ଭାଗବତ ଆଗମର ଅନୁଗାମୀ ।

ବୌଦ୍ଧଧର୍ମ ହୀନଯାନ ଓ ମହାଯାନ ଦୁଇ ଭାଗରେ ବିଭକ୍ତ ହେଲାପରେ ବୌଦ୍ଧ ହୀନଯାନ ଗୋଷ୍ଠୀ—ସୌତ୍ରାନ୍ତିକ' ଓ 'ବୈଭାଷିକ" ଏବଂ ମହାଯାନ ଗୋଷ୍ଠୀ—'ଯୋଗାଚାର' ଓ 'ମାଧ୍ୟମିକ' ଆଦିରେ ବିଭକ୍ତ ହେଲା । ଏହି ଶେଷୋକ୍ତ 'ମାଧ୍ୟମିକ'ହିଁ ବୌଦ୍ଧ ଶୂନ୍ୟବାଦ ନାମରେ ଅଭିହିତ, ଯାହାକୁ କି ନାଗାର୍ଜ୍ଜୁନ ଖ୍ରୀଷ୍ଟୀୟ ୨ୟ ଶତକରେ ଓଡ଼ିଶାରେ ପ୍ରଚାର କରିଥିଲେ ବୋଲି ବୌଦ୍ଧ ଧର୍ମର ପ୍ରଧାନଗ୍ରନ୍ଥ 'ଅଷ୍ଟସହସ୍ରିକା', 'ପ୍ରଜ୍ଞା ପାରମିତା'ରୁ ସୂଚନା ମିଳେ । 'ବୌଦ୍ଧଗାନ ଓ ଦୋହା'ର ଶୂନ୍ୟ, ତଥତା, ନୈରାତ୍ମ୍ୟ ଆଦି ଏହି ଶୂନ୍ୟବାଦର ଏକ ରୂପାନ୍ତରିତ ପ୍ରଭାବ । ଏହା ଚତୁର୍ବିଧ ୧—ଶୂନ୍ୟ, ୨—ଅତି ଶୂନ୍ୟ, ୩—ମହାଶୂନ୍ୟ, ୪—ପ୍ରଭାସ୍ୱର ଶୂନ୍ୟ, ତୁରୀୟା ନିର୍ବା ବା ନିର୍ବାଣ (୮) । ଏହି ଶୂନ୍ୟର ପରିଭାଷା ହେଲା—"ଅସ୍ତି ନାସ୍ତି ତଦୁଭୟାନୁଭୟ-ଚତୁଷ୍କୋଟୀ ବିନିର୍ମୁକ୍ତଂ ଶୂନ୍ୟଂ" । ଆଉ କେତେକ ମତ ଦିଅନ୍ତି ଯେ ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ପ୍ରଚାରିତ ମାୟାବାଦର ପ୍ରଭାବ ପଞ୍ଚସଖାଙ୍କ ଉପରେ ପ୍ରଭୂତ ଭାବେ ପଡ଼ିଛି । ମାତ୍ର ଏଠି ଦେଖିବାର କଥା ବୌଦ୍ଧଧର୍ମ ଓ ମାୟାବାଦ ପ୍ରଚାରିତ ହେବା ଆଗରୁ ଲିଖିତ—କେନୋପନିଷଦ୍, ଶ୍ୱେତାଶ୍ୱେତୋପନିଷଦ୍, ମଣ୍ଡୁକୋପନିଷଦ୍, ବୃହଦାରଣ୍ୟକ ଉପନିଷଦ୍ ଆଦିରେ 'ଅଶବ୍ଦ', 'ଅସ୍ପର୍ଶ', 'ଅରୂପ, 'ଅବ୍ୟୟ', 'ନିରଞ୍ଜନ' ଆଦି ଶୂନ୍ୟବାଦୀ ଚିନ୍ତା ଦ୍ୟୋତକ ଶବ୍ଦ ଅବିକଳ ପ୍ରଯୁକ୍ତ (୯) । ତେଣୁ

---

(୮) ପଞ୍ଚସଖା ଓଡ଼ିଆ ସାହିତ୍ୟ—ଦେବେନ୍ଦ୍ର ମହାନ୍ତି—ପୃ-୩-୪

(୯) "ଅଶବ୍ଦଂ, ଅସ୍ପର୍ଶଂ ଅରୂପଂ, ଅବ୍ୟୟଂ"—କେନୋପନିଷଦ୍
"ନିଷ୍କଳଂ, ନିଷ୍କ୍ରିୟଂ, ଶାନ୍ତଂ, ନିରବଦ୍ୟଂ, ନିରଞ୍ଜନଂ"—
ଶ୍ୱେତାଶ୍ୱେତ ଉପନିଷଦ । 'ଜଗନ୍ନାଥ ପରିକ୍ରମା' ଲେ—ବ୍ରଜମୋହନ ମହାନ୍ତି

ପଞ୍ଚସଖାଙ୍କ ଶୂନ୍ୟବାଦ ବୌଦ୍ଧ ଧର୍ମରୁ ନ ଆସି ଏତଦ୍‌ଦେଶୀୟ ଉପନିଷଦ, ପ୍ରାଚୀନ ଶାସ୍ତ୍ର, ପାରମ୍ପର୍ଯ୍ୟ ଧର୍ମ ଧାରାରୁ ଆସିଛି ବୋଲି କହିବା ଅଧିକ ଯୁକ୍ତିଯୁକ୍ତ ।

ଅବଶ୍ୟ ପରବର୍ତ୍ତୀ କାଳରେ ଓଡ଼ିଶା ଉପରେ ବୌଦ୍ଧଧର୍ମର ବହୁ ପ୍ରଭାବ ରହିଛି । ଉଦୟଗିରି, ଲଳିତଗିରି, ରତ୍ନଗିରି ଆଦିରେ ବୌଦ୍ଧ ବିହାରମାନଙ୍କର ଭଗ୍ନାବଶେଷ ଦେଖିବାକୁ ମିଳେ । ମୟୂରଭଞ୍ଜର ନାନା ଜାଗାରୁ ଅବଲୋକିତେଶ୍ୱର, ଧାମୀବୁଦ୍ଧ, ପଦ୍ମପାଣି, ଆର୍ଯ୍ୟତାରା, ବଜ୍ରତାରା ଆଦି ବହୁ ବୌଦ୍ଧ ଦେବତାଙ୍କ ଭଗ୍ନାବଶେଷ ମିଳେ । ଏତଦ୍ ବ୍ୟତୀତ 'ନତ୍ୟାହ୍ନିକ ତିଳକମ୍', କାମାକ୍ଷ୍ୟା ଗୁହ୍ୟସିଦ୍ଧି, ଓ 'ଚଣ୍ଡ ସମ୍ଭାରତନ୍ତ୍ର' ଆଦି ଗ୍ରନ୍ଥମାନଙ୍କରୁ ତଦାମୀନ୍ତନ ଓଡ଼ିଶା ବିଷୟରେ ବହୁ ତଥ୍ୟ ମିଳିଥାଏ । ଚୈତନ୍ୟ ଏହି କ୍ଷେତ୍ରକୁ ପବିତ୍ର ଭୂମି ମନେକରି ଶେଷ ଜୀବନରେ ୧୮ ବର୍ଷ କାଳ ଏଠି ରହିଥିଲେ । ଗୌଡ଼ୀୟ ବୈଷ୍ଣବଙ୍କର ଶତ ପ୍ରତିବାଦ ସତ୍ତ୍ୱେ ସେ ଜଗନ୍ନାଥ ଦାସଙ୍କୁ 'ଅତିବଡ଼ୀ' ଉପାଧିରେ ଭୂଷିତ କରିଥିଲେ, ବୃନ୍ଦାବନ ଅପେକ୍ଷା ଶ୍ରୀକ୍ଷେତ୍ରକୁ ଶ୍ରେଷ୍ଠ ବୋଲି ମତ ଦେଇଥିଲେ । ଓଡ଼ିଶାର ଯେଉଁ କ୍ଷେତ୍ରକୁ ଯାଇ ଯେଉଁ ଦେବଦେବୀ ଦର୍ଶନ କରିଛନ୍ତି ସେଥିରେ ସେ ପ୍ରଥମେ ତାଙ୍କୁ ଶୂନ୍ୟ, ଅରୂପ, ଅଲେଖ, ଅବର୍ଣ୍ଣ, ନିରାକାର ଓ ଅଣାକାର ରୂପରେ ଦେଖିଛନ୍ତି । ଯାଜପୁରର ବରାହ ମୂର୍ତ୍ତିରେ ମଧ୍ୟ ସେ ନିରାକାରଙ୍କର ରୂପ କଳ୍ପନା କରିଛନ୍ତି—ମିଳିଲେ ଯାଜ ନଗ୍ର ପୁର—ବରେହା ରୂପେ ନିରାକାର ।'' (୧୦) ଦିବାକର ଦାସଙ୍କର 'ଜଗନ୍ନାଥ ଚରିତାମୃତ', ଈଶ୍ୱର ଦାସଙ୍କର 'ଚୈତନ୍ୟ ଭାଗବତ' ଓ ଗୋପାଳ ଖଣ୍ଡିକଙ୍କର 'ପଦ୍ମକଳ୍ପ ପୁରାଣ'ରେ ପଞ୍ଚସଖାଙ୍କ ସମ୍ବନ୍ଧରେ ବହୁ ଉପାଦେୟ ତଥ୍ୟମାନ ରହିଛି । ଚୈତନ୍ୟ ଭାଗବତରେ ବର୍ଣ୍ଣିତ ଅଛି ଯେ ଚୈତନ୍ୟ ଅବତାର ନେବା ପୂର୍ବରୁ ପଞ୍ଚସଖାଙ୍କୁ ଡାକି କହିଛନ୍ତି—''ଏ ଶାସ୍ତ୍ର ପରାକୃତ କର—ପୁରାଣ ଆଦି ବେଦସାର ।'' ଏଥିରୁ ଜଣାଯାଏ ଯେ ଏମାନେ ଅହଂମନ୍ୟ, ଅଭିମାନୀ, ସଂସ୍କୃତ ପଣ୍ଡିତମାନଙ୍କ କବଳରୁ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ବଜାୟ ରକ୍ଷାକରିବାପାଇଁ ରାମାୟଣ, ହରିବଂଶ, ଭାଗବତ, ବିଭିନ୍ନ ଗୀତା ଆଦିକୁ ନିଜର ମୌଳିକତା ରକ୍ଷା ପୂର୍ବକ ବଳିଷ୍ଠ ପ୍ରାକୃତ ବା ଓଡ଼ିଆ ଭାଷାରେ ଅନୁବାଦ କରି ଯାଇଛନ୍ତି । ଅତକଲ୍ପିଷ୍ଟ, ଅସ୍ପଷ୍ଟ ଶୂନ୍ୟବାଦୀ ଚିନ୍ତା ରହସ୍ୟବାଦୀ ଧର୍ମତତ୍ତ୍ୱକୁ ଯଥା ସମ୍ଭବ ସରଳ, ସାବଲୀଳ ଓ ଶାଳୀନତା ଭିତରେ ପ୍ରକାଶ କରିବାକୁ ସତତ ଚେଷ୍ଟିତ ହୋଇଛନ୍ତି ।

ଏହି ଧର୍ମତତ୍ତ୍ୱ ଦୃଷ୍ଟିରୁ ପଞ୍ଚସଖାଙ୍କୁ କେତେକ ସମାଲୋଚକ 'ସହଜିଆ ବୌଦ୍ଧ' ବୋଲି ଅଭିହିତ କରିଥାନ୍ତି । ମାତ୍ର ତାହା ଅମୂଳକ । କାରଣ ସହଜପନ୍ଥୀ ପ୍ରବୃତ୍ତି ମାର୍ଗର ଉପାସକ, ପଞ୍ଚ ମ'କାର (ମଦ୍ୟ, ମତ୍ସ୍ୟ, ମାଂସ, ମୈଥୁନ, ମୁଦ୍ରା)ର ଅନୁଗାମୀ । ମାତ୍ର ପଞ୍ଚସଖା ନିବୃତ୍ତି ମାର୍ଗର ପ୍ରବର୍ତ୍ତକ । ଏମାନଙ୍କ ଜୀବନ ଶୁଦ୍ଧ, ପୂତ, ପବିତ୍ର । ଏମାନେ ସାକାର ଓ ନିରାକାର ଉଭୟ ମାର୍ଗରେ ପୂଜା କରନ୍ତି । ଏମାନଙ୍କ ପିଣ୍ଡ ବ୍ରହ୍ମାଣ୍ଡ ମତ ସହଜିଆ ଧର୍ମରେ ଆଦୌ ନାହିଁ ।

---

(୧୦) ସାହିତ୍ୟ ଓ ସଂସ୍କୃତି—ଡ: ବଂଶୀଧର ମହାନ୍ତି—ପୃ-୮୪

ଏଠି ସ୍ମରଣ ଯୋଗ୍ୟ ଯେ ଚୈତନ୍ୟ ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରବର୍ତ୍ତକ ନୁହନ୍ତି । ଚୈତନ୍ୟଙ୍କର 'ଅଚିନ୍ତ୍ୟ ଭେଦାଭେଦ ବାଦ' ଓଡ଼ିଶାରେ ପ୍ରଚାରିତ ହେବା ପୂର୍ବରୁ ମଧ୍ୱାଚାର୍ଯ୍ୟଙ୍କ 'ଦ୍ୱୈତବାଦ', ରାମାନୁଜଙ୍କ 'ବିଶିଷ୍ଟାଦ୍ୱୈତବାଦ', ବିଷ୍ଣୁ ସ୍ୱାମୀଙ୍କର 'ଶୁଦ୍ଧାଦ୍ୱୈତବାଦ', ନିମ୍ବାର୍କଙ୍କର 'ଦ୍ୱୈତାଦ୍ୱୈତବାଦ' ଆଦିର ବହୁଳ ପ୍ରଚାର ଶ୍ରୀକ୍ଷେତ୍ରରେ ହୋଇଥିଲା । ସେଥିପାଇଁ ଓଡ଼ିଶାରେ ବହୁ ପ୍ରାଚୀନ ବୈଷ୍ଣବ କ୍ଷେତ୍ର ଯଥା—ଭୁବନେଶ୍ୱରର ଅନନ୍ତ ବାସୁଦେବ ମନ୍ଦିର, ପୁରୀ ଓ ସମ୍ବଲପୁରରେ ନୃସିଂହ ନାଥ, ରେମୁଣାରେ 'କ୍ଷୀରଚୋରା, ଗୋପୀନାଥ' ଓଡ଼ଗାଁରେ 'ରଘୁନାଥ', ଯାଜପୁରରେ 'ବରାହ ନାଥ', କଣ୍ଟିଲୋରେ 'ନୀଳମାଧବ', ଆଦି ବହୁକାଳରୁ ବିଦ୍ୟମାନ । ଏହାକୁ ସମର୍ଥନ କଲାଭଳି ବହୁ ଐତିହାସିକ ତଥ୍ୟ ମଧ୍ୟ ରହିଛି ଯଥା—ଖ୍ରୀଷ୍ଟୀୟ ୬ଷ୍ଠ ଶତାବ୍ଦୀର ରାଜା ପ୍ରଭଞ୍ଜନ ବର୍ମା ନିଜକୁ 'ପରମ ଭାଗବତ', ଶୈଳୋଦ୍ଭବ ବଂଶର ମଧ୍ୟମ ରାଜାଙ୍କର ତାମ୍ର ଶାସନରେ 'ବାମନାବତାର' କଥା, ଭୌମ ବଂଶର ଦୁଇରାଣୀ 'ଦଣ୍ଡୀ' ଓ 'ତ୍ରିଭୁବନ ଦେବୀ' ଆପଣାର ଦାନ ପତ୍ରରେ 'ପରମା ବୈଷ୍ଣବୀ', କର ବଂଶ ତଥା ଅନ୍ୟ କେତେକ ବଂଶର ରାଜାମାନେ—'ପରମ ସୌଗତ', 'ପରମ ମାହେଶ୍ୱର', 'ପରମ ବୈଷ୍ଣବ' ଆଦି ବିଭିନ୍ନ ବୈଷ୍ଣବ ଉପାଧିମାନ ଧାରଣ କରିଥିଲେ । ଏଥିରୁ ଅନୁମିତ ହୁଏ ସେତେବେଳେ ଓଡ଼ିଶାରେ ବୈଷ୍ଣବ ଧର୍ମର ବହୁଳ ପ୍ରଚାର ଥିଲା ଓ ରାଜାମାନେ ଏଥିପ୍ରତି ଅନୁରକ୍ତ ଥିଲେ । (୧୧)

ଅଚ୍ୟୁତାନନ୍ଦଙ୍କ 'ଶୂନ୍ୟ ସଂହିତା' ଓ ଯଶୋବନ୍ତ ଦାସଙ୍କ 'ପ୍ରେମଭକ୍ତି ବ୍ରହ୍ମଗୀତା'ରେ ଏମାନେ ପଞ୍ଚସଖା ବୋଲି ଆପଣାକୁ ପରିଚିତ କରାଇଥିଲେହେଁ 'ଅଚ୍ୟୁତାନନ୍ଦଙ୍କ 'ଗୁରୁଭକ୍ତି ଗୀତା'ରେ ପ୍ରତ୍ୟେକଙ୍କର 'ଚିତା', 'ମନ୍ତ୍ର' ଓ 'ଜପ' ପରସ୍ପରଠାରୁ ସ୍ୱତନ୍ତ୍ର ଥିବା ସୂଚିତ । ଭିନ୍ନ ଭିନ୍ନ ମନ୍ତ୍ରରେ ପ୍ରତ୍ୟେକ ଦୀକ୍ଷିତ । ସେ ସବୁ ନିମ୍ନ ପ୍ରକାର—

| ପଞ୍ଚସଖାଙ୍କ ନାମ | ମନ୍ତ୍ର | ଜପ | ଧାର୍ମିକ ସଂକେତ |
|---|---|---|---|
| ବଳରାମ ଦାସ— | ତାରକ ମନ୍ତ୍ର (କୃଷ୍ଣମନ୍ତ୍ର)— | ଅଜପା — | ରାମତାରକ |
| ଜଗନ୍ନାଥଦାସ— | ଷୋଳକଳା ବତିଶଅକ୍ଷରମନ୍ତ୍ର-(ରାଧାମନ୍ତ୍ର) | ଅଣାକାର— | ହରିମନ୍ଦିର ଚିତାତିଳକ ନାସାର୍ଦ୍ଧରୁ କେଶଯାଏଁ । |
| ଅଚ୍ୟୁତାନନ୍ଦ ଦାସ— | ଅଣାକାର ମନ୍ତ୍ର (ରାମମନ୍ତ୍ର)— | ଶୂନ୍ୟ — | ସମାଧିଥିଲା ଭୁରୀସ୍ଥ, ହରିମନ୍ଦିର ଚିତା । |
| ଯଶୋବନ୍ତ ଦାସ— | ଶ୍ୟାମ ପଞ୍ଚାକ୍ଷରମନ୍ତ୍ର — | ଅବନା— | ନାସାର୍ଦ୍ଧରେ ତିଳକ ଗ୍ରହଣ କରୁଥିଲେ । |
| ଅନନ୍ତ ଦାସ— | ଏକାକ୍ଷରମନ୍ତ୍ର (ଗୋପାଳମନ୍ତ୍ର)— | ଏକାକ୍ଷର— | ତିଳକ ଥିଲା ଊର୍ଦ୍ଧ୍ୱ ପୁଣ୍ଡ୍ରକ । |

(ଗୁରୁଭକ୍ତି ଗୀତା—କଳସ୍ତ ଖଣ୍ଡ ୮୪ ପଟଳ)(୧୨)

(୧୧) ଶିଳା ଓ ଶାଳଗ୍ରାମ—ପୃ-୮୧ ।
(୧୨) ଓଡ଼ିଆ ସାହିତ୍ୟର ମଧ୍ୟ ପର୍ବ—ପୃ-୨୧୭, ଅଣାକାର ସଂହିତା ବ୍ରହ୍ମାଙ୍କୁଳି— ପୃ-୨୫୯

ପୁନଶ୍ଚ ସେମାନଙ୍କ ସମ୍ପ୍ରଦାୟ ମଧ୍ୟ ପରସ୍ପରଠାରୁ ଅଲଗା ଥିଲା । 'ଗୁରୁଭକ୍ତ ଗୀତା'ରେ ଅଛି—

"ଅନନ୍ତ ଶିଶୁ ଯେ ରାମାନନ୍ଦ ବଇଷ୍ଣବ
ଯଶୋବନ୍ତ ଦାସ ମାଧ୍ୱାଚାର୍ଯ୍ୟ ବଇଷ୍ଣବ
ବଳରାମ ଦାସ ବିଷ୍ଣୁ ଶ୍ୟାମ ଦାସ ହୋଇ
ନିତ୍ୟାନନ୍ଦ ବଇଷ୍ଣବ ଅଚ୍ୟୁତ ଅଟଇ ।"

ଅର୍ଥାତ୍ ଶିଶୁ ଅନନ୍ତ ରାମାନନ୍ଦ ସମ୍ପ୍ରଦାୟର ବୈଷ୍ଣବ, ଯଶୋବନ୍ତ ମାଧ୍ୱାଚାର୍ଯ୍ୟ ସମ୍ପ୍ରଦାୟର, ବଳରାମ ବିଷ୍ଣୁଶ୍ୟାମ (ବିଷ୍ଣୁସ୍ୱାମୀ) ସମ୍ପ୍ରଦାୟର ଓ ଅଚ୍ୟୁତ ନିତ୍ୟାନନ୍ଦ ସମ୍ପ୍ରଦାୟର । ମାତ୍ର ଜଗନ୍ନାଥ ଥିଲେ ସ୍ୱ-ସ୍ଥାପିତ 'ଅତିବଡ଼ୀ' ସମ୍ପ୍ରଦାୟର ।

ତାଙ୍କ ରଚନା ଦୃଷ୍ଟିରୁ ମଧ୍ୟ ପ୍ରତ୍ୟେକଙ୍କଠାରୁ ଭିନ୍ନ ଆଦର୍ଶ ଗ୍ରହଣ କରିଛନ୍ତି । ଜଗନ୍ନାଥ ଓ ବଳରାମ ଆଦି ପୁରାଣବାଦୀ ହୋଇ ସଂସ୍କୃତ ପୁରାଣର ଅନୁସରଣରେ ଆଧ୍ୟାତ୍ମିକ ତତ୍ତ୍ୱକୁ ସରଳ ସାବଲୀଳ ଭାବେ ବ୍ୟାଖ୍ୟା କଲାବେଳେ, ଅଚ୍ୟୁତ, ଯଶୋବନ୍ତ, ଅନନ୍ତ ଆଦି ନିଜ ରଚନାରେ କୃଷ୍ଣ ସୃଷ୍ଟି ପ୍ରକରଣ, ସପ୍ତ ପଞ୍ଚାତ୍ମିକା ପ୍ରକରଣ, ନାଡ଼ୀ ତତ୍ତ୍ୱ, ଷଡ଼ଚକ୍ର ବୀଜମନ୍ତ୍ର (ଶ୍ରୀଁ, କ୍ଲୀଁ, ହ୍ରୀଁ, ଧ୍ରୀଁ, ପ୍ଲୀଁ) ଆଦି ଦୁର୍ଭେଦ୍ୟ ତତ୍ତ୍ୱର ପ୍ରଚାର କରିଛନ୍ତି ।

ଜାତି ଦୃଷ୍ଟିରୁ ମଧ୍ୟ ଜଗନ୍ନାଥଙ୍କ ଛଡ଼ା ଅନ୍ୟମାନେ ବ୍ରାହ୍ମଣେତର । ଏମାନେ ସବୁ ଥିଲେ ଶୂଦ୍ର, ବାଉରୀ, ଗୋପାଳ, କରଣ ଇତ୍ୟାଦି । ବୈଷ୍ଣବ ହେବା ପୂର୍ବରୁ ସେମାନଙ୍କ ନାମ ଥିଲା—ବଳରାମ ମହାପାତ୍ର, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଖୁଣ୍ଟିଆ, ଅନନ୍ତ ମହାନ୍ତି, ଯଶୋବନ୍ତ ମଲ୍ଲିକ ।

ପୂର୍ବୋକ୍ତ ଆଲୋଚନାରୁ ଆମେମାନେ ଜାଣୁ ଯେ ପଞ୍ଚସଖାଙ୍କ ମଧ୍ୟରେ ବହୁ ବୈଭିନ୍ନ୍ୟ ରହିଛି । ଏସବୁ ସତ୍ତ୍ୱେ ସେମାନଙ୍କ ମଧ୍ୟରେ ଏକ ଏକତ୍ୱ ଭାବ ବା ଅନନ୍ୟ ଭାବ-ସମ୍ପର୍କ ଥିଲା । ଭିନ୍ନ ଭିନ୍ନ ନାମ, ମନ୍ତ୍ର ଓ ଜପରେ ଧ୍ୟାନ କରୁଥିଲେହେଁ ସେସବୁ ଏକ ଶୂନ୍ୟର ନାମାନ୍ତର ବା ଶୂନ୍ୟର ବିଭିନ୍ନ ପରିଭାଷା ମାତ୍ର । ସେମାନଙ୍କ ବୀଜମନ୍ତ୍ର ଓ ନାମମନ୍ତ୍ର ସବୁ ଏକ ଓ ଅଭିନ୍ନ ।

ତେଣୁ ଓଡ଼ିଆ ସାହିତ୍ୟରେ ପଞ୍ଚସଖା ଚୈତନ୍ୟଙ୍କ ପାଞ୍ଚଜଣ ଅନୁଗତ ପରିକର ନୁହନ୍ତି ବା ଚୈତନ୍ୟରୂପୀ ମହାଦ୍ରୁମର ପାଞ୍ଚୋଟି ଶାଖା ନୁହନ୍ତି । ବରଂ ଏମାନେ ସ୍ୱୟଂସମ୍ପୂର୍ଣ୍ଣ ଏକ ଚିନ୍ତା-ସରିତର ପାଞ୍ଚଟି ପ୍ରବାହ, ପାଞ୍ଚଟି ଶାଖା (ନଦୀ) । ଗୋଟିଏ ଚୈତନ୍ୟରୂପୀ ସୂର୍ଯ୍ୟର ଏମାନେ ପାଞ୍ଚଟି ଜ୍ୟୋତିଃହୀନ ଗ୍ରହ (ଯେଉଁମାନେ ତାର ଆଲୋକରେ ଆଲୋକିତ ହୁଅନ୍ତି) ନୁହନ୍ତି, ବରଂ ବୈଷ୍ଣବ-ସୌରମଣ୍ଡଳର ଗୋଟିଏ ଗୋଟିଏ ନକ୍ଷତ୍ର । ଯେଉଁମାନେ ଅବସ୍ଥିତି ଦୃଷ୍ଟିରୁ ଆମକୁ ଆକାରରେ କ୍ଷୁଦ୍ର ଜଣାଯାଉଛନ୍ତି, ମାତ୍ର ସ୍ୱୀୟ ଆଲୋକରେ ଦୀପ୍ତିମନ୍ତ, ସ୍ୱୀୟ ଔଜଲ୍ୟରେ ପ୍ରତିଭାତ । ଅଧିକନ୍ତୁ ସେମାନେ ଗୋଟିଏ ଆଧ୍ୟାତ୍ମିକ ଅଗ୍ନି ପିଣ୍ଡର ପାଞ୍ଚଟି ଶିଖା, ଯେଉଁମାନେ ଅଭିନ୍ନଭାବେ ଏକ ଧର୍ମ 'ଆଧ୍ୟାତ୍ମିକ-ଉତ୍ତାପ' ଓଡ଼ିଶାରେ ପ୍ରଦାନ କରିଗଲେ ।

---

# ଓଡ଼ିଆ ଲାଳିକା-ସାହିତ୍ୟ

ଶ୍ରୀ ଭଗବାନ ମହାପାତ୍ର
୬ଷ୍ଠ ବର୍ଷ ଓଡ଼ିଆ

ଲାଳିକା ଇଂରାଜୀ Parodyର ଏକ ପ୍ରତିଶବ୍ଦ । ପୂର୍ଣ୍ଣଚନ୍ଦ୍ର ଭାଷାକୋଷର ୭୦୬୭ ପୃଷ୍ଠାରେ ଲାଳିକାର ସଂଜ୍ଞା ସମ୍ପର୍କରେ ଲେଖାଅଛି—"ଲାଳିକାର ଅର୍ଥ ହେଉଛି ଆମୋଦଜନକ ଉତ୍ତର ବା ରହସ୍ୟପୂର୍ଣ୍ଣ ଉତ୍ତର ବା ଦୁଇ ଅର୍ଥଯୁକ୍ତ ରହସ୍ୟ (A riddle with two meanings)" କିନ୍ତୁ ବ୍ୟାବହାରିକ କ୍ଷେତ୍ରରେ ଲାଳିକା ହେଉଛି ପୂର୍ବ-ପ୍ରସିଦ୍ଧ କୌଣସି ଉକ୍ତିର ବିକୃତ ରୂପାନ୍ତରୀକରଣ । ଲାଳିକାର ସ୍ୱରୂପ ଯଦିଓ ସଂସ୍କୃତ ସାହିତ୍ୟ ଓ ପ୍ରାଦେଶିକ ସାହିତ୍ୟରେ ପୂର୍ବରୁ ରହିଥିଲା ତଥାପି ଏହାର ରୂପ-ସ୍ୱାତନ୍ତ୍ର୍ୟ ସମାଲୋଚକମାନଙ୍କ ଦ୍ୱାରା ଆଲୋଚିତ ବା ସ୍ୱୀକୃତ ହୋଇ ନ ଥିଲା । ବିନୋଦ ରାଉତରାୟଙ୍କ ମତରେ ବ୍ରଜନାଥଙ୍କ ରଚିତ 'ଚଗ ଚମାଳି ଗୁଳିକ ଗୀତ' ଓ ବ୍ରଜମୋହନଙ୍କ 'କେଳିଯୁକ୍ତ କବିତ୍ୱ' ଓଡ଼ିଆ ସାହିତ୍ୟର ପ୍ରାଚୀନ ଲାଳିକା । 'ଗୁଳିକ ଗୀତ'ରୁ ଗୁଳିକା ବା ଲାଳିକା ଶବ୍ଦର ପ୍ରଚଳନ ହୋଇଅଛି । (କାନ୍ତକବିଙ୍କ ବ୍ୟଙ୍ଗ କବିତା—ଡଗର ୨୪ ବର୍ଷ ୮ମ ସଂଖ୍ୟା) ।

ସାଧାରଣତଃ କାବ୍ୟ, କବିତା ଓ ସଙ୍ଗୀତର ସ୍ୱର, ଛନ୍ଦ ଓ ଭାଷାଭଙ୍ଗୀକୁ ଲାଳିକା କରାଯାଇଥାଏ । ଲାଳିକା କରିବା ପାଇଁ ଉଚ୍ଚାଙ୍ଗ ଓ ସୁପରିଚିତ କାବ୍ୟ କବିତାର ଅଂଶ ବିଶେଷ ଆବଶ୍ୟକ ଓ ତା ସଙ୍ଗେ ସଙ୍ଗେ ଲେଖକଙ୍କର ପାରଦର୍ଶିତା ଥିବା ଦରକାର । ଦେଶର ପୂର୍ବବର୍ତ୍ତୀ କବିମାନଙ୍କର ଯେଉଁ କେତେକ କବିତା ବା ସଂଗୀତ ଲୋକ ମନରେ ପ୍ରତିଷ୍ଠା ଲାଭ କରିଥାଏ ସେହି ସେହି କବିତାର ଲାଳିକା ଲୋକ ମନରେ ସଫଳ ପ୍ରଭାବ ପକାଇ ପାରେ । ଲାଳିକାରେ ପୂର୍ବବର୍ତ୍ତୀ ରଚନାର ଭାଷାର ସାମାନ୍ୟ ପରିବର୍ତ୍ତନ କରାଯାଇଥାଏ କିନ୍ତୁ ଶବ୍ଦଗୁଡ଼ିକ ବିକୃତ କରି ହାସ୍ୟୋଦ୍ଦୀପକ କରାଗଲାବେଳେ ଛନ୍ଦ, ସ୍ୱର ଓ ଧ୍ୱନିକୁ ଅକ୍ଷୁଣ୍ଣ ରଖାଯାଇଥାଏ ।

ଲାଳିକା ରଚନା ଏକ ପ୍ରତିଭାସାପେକ୍ଷ କଳା । ଛନ୍ଦର ଅନୁକୃତି ଭିତରେ ଭାଷା ଓ ଭାବର ବିକୃତି ଲାଳିକାର ମୁଖ୍ୟ ବିଭବ, ପ୍ରତିଷ୍ଠିତ ଓ ସମାଦୃତ ଛନ୍ଦର ରାଗ ଓ ତାଳକୁ ଲକ୍ଷ୍ୟ ରଖି ପରିଚିତ ଗ୍ରନ୍ଥ ଭିତରେ ଅପରିଚିତକୁ ପରିବେଷ୍ଟନୀ କରିବା ସାମାଜିକ ଓ ରାଜନୀତିକ ଅସଂଗତି, ଅନ୍ୟାୟ ଓ ଅବିଚାରକୁ ବିଦ୍ରୂପ କରିବା ଲାଗି ଲେଖକ 'ଲାଳିକା'କୁ ଏକ ସଫଳ ଅସ୍ତ୍ର ରୂପେ ଗ୍ରହଣ କରିଥାଏ ।

ଓଡ଼ିଆ ଲଳିକା ସାହିତ୍ୟର ଜଣେ ପ୍ରାଚୀନ ପ୍ରବକ୍ତା ହେଉଛନ୍ତି ବ୍ରଜନାଥ ବଡ଼ଜେନା । ଶଙ୍କରାଚାର୍ଯ୍ୟଙ୍କ ମୋହମୁଦ୍‌ଗରର ସେ ମର୍ମସ୍ପର୍ଶୀ ଲଳିକା କରିଛନ୍ତି । ନିଜର ମିତ ନିଯମକୁ ଗ୍ରହଣ ସମାଜରେ ଧର୍ମ ନାମରେ ବିନା ଦ୍ୱିଧାରେ ନାନା କୁସଂସ୍କାର କରି-ଯାଉଥିବା ବ୍ରାହ୍ମଣମାନଙ୍କୁ ସେ ସମାଲୋଚନା କରିଛନ୍ତି ।

"ବଙ୍କଟ କେଙ୍କଟ ମଣ୍ଡୁକ ତୁଣ୍ଡା
ବକଟ ମୁହା ଅତି ଝାମ୍ପୁରି ମୁଣ୍ଡା
ଲୋହିତ ଈକ୍ଷଣ ଶୋହିତ ଆରୁ
ବୈଦିକ ବ୍ରାହ୍ମଣ ଚଳେ ଏ ବାରୁ ।"

ମୂଳ ଲେଖାରେ ଅଛି—

"ଅଙ୍ଗଂ ଗଳିତଂ ପଳିତଂ ମୁଣ୍ଡଂ
ଦନ୍ତବିହୀନଂ ଜାତଂ ତୁଣ୍ଡମ୍ ।
କରଧୃତ କମ୍ପିତ ଶୋଭିତ ଦଣ୍ଡଂ
ତଦପି ନ ମୁଞ୍ଚତ୍ୟାଶାଭାଣ୍ଡମ୍ ।"

ପଣ୍ଡିତ ରଜାଙ୍କୁ ଆଶୀର୍ବାଦ କରିବା ଛଳରେ ବ୍ରଜନାଥ ଲେଖିଛନ୍ତି—

"ଅଷ୍ଟ ଚଣ୍ଡୀ କରାଳୀ ଚ ଚାମୁଣ୍ଡା ଭଦ୍ରକାଳିକା
ଖାଇ ବଂଶ ତୁଚ୍ଛା ଚୋର କରନ୍ତୁ ନିଜ ମନ୍ଦିରେ
ସନ୍ନିପାତ ତ୍ରିଦୋଷଂ ଚ ଉଦରୀ ଗ୍ରହଣୀ ହଗା
ତାଳୁକା କାମଳ ବ୍ୟାଧି ପାଇ ସର୍ବେ ସୁଖୀ ହୁଅ ।"

ଲଳିକା ସୃଷ୍ଟି କ୍ଷେତ୍ରରେ ବ୍ୟାସକବି ଫକୀର ମୋହନ ହେଉଛନ୍ତି ବ୍ରଜନାଥଙ୍କ ଉତ୍ତର ଓ ଉତ୍ତର ଦାୟାଦ । ଫକୀର ମୋହନ ସମାଜରେ ନାନା କୁସଂସ୍କାର, ଅନ୍ଧ ବିଶ୍ୱାସକୁ ଦୂର କରିବା ପାଇଁ ଆପ୍ରାଣ ଚେଷ୍ଟା କରିଥିଲେ । ଲଳିକାକୁ ଏହି ଅଶ୍ୱପ୍ରସା-ସାଧନର ଏକ ବଳିଷ୍ଠ ଅସ୍ତ୍ର ରୂପେ ସେ ଗ୍ରହଣ କରିଛନ୍ତି । 'ଛ ମାଣ ଆଠଗୁଣ୍ଠ'ରେ ଚମ୍ପାର ରୂପ ବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି—

"କଜ୍ଜ୍ୱଳ ପୂରିତ ଲୋଚନ ଭାଲେ
ଗୁଣ୍ଡି ମିଶା ଖିଲି ଗୁଞ୍ଜିତ ଗାଲେ
ତୈଳ ହରିଦ୍ରା ବୋଳିତ ଦେହେ
କଳୁଷିବ ଶୀଘ୍ରଂ ଧାବତି ଗେହେ ।"

ଏହା କାଳିଦାସଙ୍କର ବାଗ୍-ଦେବୀଙ୍କ ବନ୍ଦନାର ଲଳିକା—

"କଜ୍ଜ୍ୱଳ ପୂରିତ ଲୋଚନ ଧାରେ
ସ୍ତନ ଯୁଗ ଶୋଭିତ ମୁକ୍ତାହାରେ ।"

ବୁଢ଼ୀ ମଙ୍ଗଳାଙ୍କ ବନ୍ଦନା କରିବାକୁ ଯାଇ ସେ ଜଗଦୁର୍ଗାଙ୍କ ସ୍ତୋତ୍ରର ଲଳିକା କରିଛନ୍ତି—

"ଯା ଦେବୀ ବୃକ୍ଷ ମୂଳେଷୁ ଶିଳା ରୂପେଣ ସସ୍ଥିତା
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ
ମୁଣ୍ଡିକାଶ୍ଚ ଗଜାରୂଢା ବନ୍ଧ୍ୟାସ୍ତ୍ରୈ ପୁତ୍ରଦାୟିନୀ
ବାଡ଼ ସହାଣୀ ଦେବୀ ନାଗେଶ୍ୱରୀ ନମୋସ୍ତୁତେ ।"

କିନ୍ତୁ ଜୟଦୁର୍ଗାଙ୍କ ସ୍ତୋତ୍ରରେ ଅଛି—

"ଯା ଦେବୀ ସର୍ବଭୂତେଷୁ ଶକ୍ତିରୂପେଣ ସସ୍ଥିତା
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ ।

ତତ୍କାଳୀନ ବ୍ରାହ୍ମଣ ସମାଜ ପ୍ରତି ତୀବ୍ର ସମାଲୋଚନା କରି ସେ ଲେଖିଛନ୍ତି—

"ଶୁଣ ପଦ୍ମାକ୍ଷ ନରନାଥ । ତାମ୍ପଡ଼ା ଶୁଖୁଆ ପଖାଳ ଭାତ ॥
ଯି ଅକ୍ଷର ବ ବର୍ଜିତ । ଚଟା ପଇତାଦ ଶୋଭିତ ॥

× × ×

ପୋଥିରୁ ନ ଫିଟେ ତୋରି । ଯଜମାନ ଗୃହଳ ଗ୍ରେଷୀ
ସଭିରେ ନ ଫିଟେ ପାଟି । ନାମଟି ସୁନ୍ଦର ତ୍ରିପାଠୀ ॥"

ଫକୀର ମୋହନଙ୍କ ପରେ ଗୋପାଳ ଚନ୍ଦ୍ର ପ୍ରହରାଜ ଲାଳିକା ସୃଷ୍ଟି ଦିଗରେ ଏକ ସ୍ମରଣୀୟ ପ୍ରତିଭା । ତାଙ୍କର 'ବାଇମହାନ୍ତି ପାଞ୍ଜି', 'ନନାଙ୍କ ବସ୍ତାନି' ଓ 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା ଇତ୍ୟାଦିରେ କେତେକ ଲାଳିକା ଦେଖାଯାଏ । ସେଥିରେ ସମାଜର ବହୁ ଅଶିକ୍ଷିତ, ଅର୍ଦ୍ଧଶିକ୍ଷିତ ଓ ପଣ୍ଡିତମନ୍ୟ ବ୍ୟକ୍ତିମାନଙ୍କୁ ସେ ଲାଳିକା ଶରର ଶରବ୍ୟ କରିଛନ୍ତି—

"କେଶା କର୍ଷଣ ହାବୁଡ଼ା ଗଡ଼ ଗଡ଼ା
ଗୃପୁଡ଼ା ବଧା କଡ଼ି ।

× × ×

ଝଙ୍କା ବାହୁଛଟା ସମର୍ଥ ଗୋଇଠା ମୁଷି ଚେଙ୍ଗିକା
ଶାଙ୍କୋଳି ଉଉକନ୍ତି ଗୃଣୁକ ଚ୍ଛିଦ୍ର ତୋଟ୍ୟାଧି କନ୍ଧାଧିକା ।"

ସର୍ବଦା ସଂସ୍କୃତ ଗ୍ରନ୍ଥରେ ଓଡ଼ିଆ ସାହିତ୍ୟକୁ ପକାଇବା ପାଇଁ ଅପପ୍ରୟାସ କରୁଥିବା ସେହି ସଂସ୍କୃତ ପଣ୍ଡିତ ପ୍ରତି ଏ ଲାଳିକା କମ୍ ଏକ ଆଘାତ ନୁହେଁ ।

ଲାଳିକା ରଚୟିତା ଭାବରେ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ସ୍ଥାନ ବୋଧହୁଏ ଓଡ଼ିଆ ସାହିତ୍ୟରେ ସର୍ବୋଚ୍ଚ । ସମାଜରେ ବ୍ୟାପିଥିବା ବହୁ ଦୁର୍ନୀତି, ଦୁର୍ବିଗ୍ରହ, ଅନ୍ଧବିଶ୍ୱାସ, କୁସଂସ୍କାର ଓ ଅସଂଗତିକୁ ଦୂର କରିବାଲାଗି ସେ ଲାଳିକା ମାଧ୍ୟମରେ ସାଜିଛନ୍ତି କାଳିକା । ତାଙ୍କ ଲେଖାରେ ସମାଜର କୌଣସି ସ୍ତରର ବ୍ୟକ୍ତି ବାଦ୍ ଯାଇ ନାହାନ୍ତି । ସେ ଲାଳିକା ରଚନା କରିଛନ୍ତି ଉଭୟ ପଦ୍ୟରେ ଓ ଗଦ୍ୟରେ । 'ବେତାଳ ପଞ୍ଚବିଂଶତି' ଅନୁକରଣରେ ତାଙ୍କର 'ମଉଣ୍ଡି ତାଳ ବେତାଳ' ଗଳ୍ପ ତାଙ୍କର କାଳଜୟୀ କଳ୍ପନାର ପରିଚୟ ଦିଏ । କବିସମ୍ରାଟ ବଳଦେବଙ୍କ 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ'ର ଆଦର୍ଶରେ ଆଧୁନିକ ଯୁଗର

ଯୁବକ ଯୁବତୀମାନଙ୍କୁ ଶ୍ଳେଷ କରି ସେ ରଚନା କରିଛନ୍ତି 'ଚଟକ ଚନ୍ଦ୍ରହାସ୍ୟ ଚମ୍ପୂ' । ତାଙ୍କ ଲିଖିତ ଲାଳକା ମଧ୍ୟରେ'ତୋ ଲାଗି ଅଦା ପଦା ମୁଦା କାଳିଆ ବୋଦା', 'ପଥ' ଗୁଡ଼ିଦେ ମୁଁ ଯିବି ଓଲି ଖୋଳି', 'ଧନୁ ଧନୁ ନନ୍ଦ ତନୟ ଗୋ ନବ ନବ ଦଶେ ମିତ', 'ଅନୁସରିତ ମୋର କାଳଯାକ ଗଳ ସରିତ', ଇତ୍ୟାଦି 'ତୋ ଲାଗି ଗୋପଦାଣ୍ଡ ମନା ରେ କାଳିଆ ସୁନା', 'ପଥ' ଗୁଡ଼ି ଦେ ମୁଁ ଯିବି ଫୁଲ ତୋଳି,' ଧନୁ ଧନୁ ନନ୍ଦ ତନୟ ଗୋ ନବ ନବ ପରି ମିତ', ଅନୁସରିତ ପ୍ରଶ୍ନେ କାଳଯାକ ଗଳ୍ପ ସରିତ' ଇତ୍ୟାଦିର ଉଲ୍ଲେଖ ଯୋଗ୍ୟ ହନୁକରଣ । ବିଂଶ ଶତାବ୍ଦୀର ନବ୍ୟ ସଭ୍ୟ ଓ ସଭ୍ୟାମାନଙ୍କୁ ଆକ୍ଷେପ କରିବା ଦିଗରେ କବିଙ୍କ ଚଟକ ହାସ୍ୟ ଚମ୍ପୂ ଏକ ସାର୍ଥକ ସୃଷ୍ଟି । କବିସୂର୍ଯ୍ୟଙ୍କ 'କ' ସଙ୍ଗୀତ ହେଉଛି —

"କି ହେଲାରେ, ନହିତ ନୁହଇ ଶରତରେ,
କାଳି ଯା ଦୂରରୁ ଦେଖି କଳନା କଲି ମୋ ଆଖି
କଳା ଇନ୍ଦୀବର ଆରତରେ ।"

ଏହାର ଲାଳକା କରି କବି ଲେଖିଛନ୍ତି—

"କି ହେଲାରେ କହି ତ ନୁହଇ ଶରତରେ
କାଲି ଯା କେନାଲ କୂଳେ କଳନା କଲି ମୋ ତୋଳେ
କଳା କମଳାର ମୂରତରେ ।" -

ଆଜ କାଲିକାର ଶସ୍ତା ପ୍ରେମ ଓ ନୂତନ ଫେସନରେ ଯାଉଥିବା ଯୁବକ ଯୁବତୀଙ୍କ ପ୍ରତି ସେ ଶାଣିତ ଦୃଷ୍ଟି ନିକ୍ଷେପ କରିଛନ୍ତି । କେନାଲ କୂଳର ପ୍ରୀତିର ଆଶା କରିବାର ସଙ୍କେତ ଓ ତାର ଅନୁଚିନ୍ତା ଉକ୍ତ କବିତାରେ ପ୍ରକାଶ ପାଇଛି । ସେଥିପାଇଁ ମିସ୍ ସ୍ୱାଧୀନା ତାର ସଖୀ ମିସ୍ ନବୀନାକୁ ଚେତାବନୀ ଶୁଣାଇ ଦେଇଛି 'ଖ' ସଙ୍ଗୀତରେ—

"ଖରାପ ତୁ ହେଲୁରେ
ଖେଳା ଳୋଳା ଖୋଳା ଆଖି କ ସାହସ କଲୁରେ
ଖଣ୍ଡେଠେଇଁ ଜାଣି ଜାଣି ଚିଣ୍ଟି ପଠାଇଲୁରେ
ଖଚଡ଼ା ଜନେ ଗୁପତ ନାଟ ବତାଇଲୁରେ
ଖଟା ଖାଇ ଜର ପେଟେ ପିଳେହି ପାଳିଲୁ ରେ
ଖଇରୁ ଝାଡ଼ାରେ ଖିଣ୍ଟି ଖେଚଡ଼ି ଗିଳିଲୁ ରେ ।"

କବିଙ୍କ ମୂଳ ସଙ୍ଗୀତରେ ଅଛି—

"ଖରାପ ତୁ ହେଲୁ ରେ
ଖେଳ ଳୋଳ ଖଞ୍ଜନାକ୍ଷି କ ସାହସ କଲୁ ରେ
ଖଙ୍ଗ ହୋଇ ସୁରତରୁ କୁସୁମ ବାଛିଲୁ ରେ ।
ଖେଦବୀଜ ନିଜ ହୃଦ-କେଦାରେ ବିଞ୍ଚିଲୁ ରେ ।
ଖିଆଲ ପରି କ ଧନ ମନରେ ଭାଳିଲୁ ରେ,
ଖଳକାର ନୋହି କଳା ନାଗକୁ ଖେଳିଲୁ ରେ ।"

ମିସ୍ ନଷ୍ଟନାକୁ ଏ ପଥରୁ ଓହରି ଆସିବା ପାଇଁ ସେ ଅନୁରୋଧ କରନ୍ତି । ଶେଷରେ ମିସ୍ ନଷ୍ଟନା ଏଥିରୁ ରକ୍ଷା ପାଇବା ପାଇଁ ସଖୀକୁ ଉପାୟ ପଚାରନ୍ତି । ସଖୀ 'ଘ' ସଙ୍ଗୀତରେ ଉତ୍ତର ଦେଉଛି—

"ଯେନାଇ ଆମ୍ଭେ ହେତେ କହିଲୁ ରେ
ଯେହ୍ନଲୁ ନାହିଁ ବାଲା ପହିଲୁ ରେ ।
ଘିଅ ଘଡ଼କୁ ସଖି ରଖି ନିଆଁରେ ରଖି
ଘିମିଶ ଦେହା ଏହା ସହିଲୁ ରେ ।"

କବିସୂର୍ଯ୍ୟ 'ଘ' ସଙ୍ଗୀତରେ ଲେଖିଛନ୍ତି—

"ଯେନାଇ ଅମ୍ଭେ ଯେତେ କହିଲୁ ରେ,
ଯେହ୍ନଲୁ ନାହିଁ ବାଲା ପହିଲୁ ରେ ।
ଘୃତ ଘଟକୁ ଶିଖି-ଶିଖା ପାଖରେ ରଖି,
ଶିଖିପ ଦେହା ଏହା ସହିଲୁ ରେ ।"

କାନ୍ତକବିଙ୍କ ରଚିତ ଅନ୍ୟ କେତୋଟି ଲଳକାର ଉଦାହରଣ ନିମ୍ନରେ ଦିଆଗଲା—ପଥ ଛାଡ଼ଦେ ମୁଁ ଯିବ ଫୁଲତୋଳ ଆରେ ବନମାଳି ଅନୁକରଣରେ ଲିଖିତ—

"ପଥ ଛାଡ଼ ଦେ ମୁଁ ଯିବି ଓଲ ଖୋଳି ଆରେ ବନମାଳି
ମୋତେ ଚଳୁଁ ନାହୁଁ ପର୍ ଦେଉ ଗାଳି
ମୁଁ ଯେ ସାନ ସାଆନ୍ତଙ୍କ ଗେହ୍ଲାଶାଳୀ ।
× × ×
ଏତେ ବେଳୁଁ ଟାରେ ତୁହେ ଭଲ
କସି ଭୂଆସୁଣୀ ସଙ୍ଗେ ଗେଲ
ପଲ ପଲ ଲୋକ ମାଡ଼ ପଡ଼ୁଛନ୍ତି
କାହା ରୁଣ୍ଡେ ବଣ୍ଡା ଦେବ ବୋଲି ।"

ମୂଳ ରଚନା ଓ ତାର ଅନୁକରଣର କେତୋଟି ଉଦାହରଣ ନିମ୍ନରେ ଦିଆଗଲା—

"ଧନ୍ୟ ଧନ୍ୟ ନନ୍ଦ ତନୟ ଗୋ !
ନବ ନବ ପରମାମିତ !
ନିତ ଦେଖୁଥିଲେ ପ୍ରୀତି ବଢୁଥାଇ,
ତୃପତି ନୁହଇ ଚିତ୍ତ ଗୋ ମିତ ।"

ଏହାର ଅନୁକରଣରେ—

"ଧନ୍ୟ ଧନ୍ୟ ନନ୍ଦ ତନୟ ଗୋ
ନବ ନବ ପର ମିତ
ନିତ ଦେଖୁଥିଲେ ସ୍ଵାଦ ବଢୁଥାଇ
ଶୀତ ଶୀତ ହୁଏ ଚିତ୍ତ ।"

"ରେ ମୁରଲି ! ତୋରେ ଶରଣ ଗଲି ରେ
ଆଉ ନ ଡାକିବୁ ରାଧିକା ବୋଲି ରେ
ସେ ନନ୍ଦ ସୁତ ମୁଁ ରାଜ କୁମାରୀ
ବଂଶୀ ଦେଲୁ ସିନା ପରଚେ କରିରେ"—ଅନୁକରଣରେ

"ରେ ପୁଲିସ, ତୋରେ କରିବି କସ
ଆଉ ନ ଦେଖା ତୋ ଝୁରୁଡ଼ା ନିଶ ।
ମୁଁ ମଫସଲ ସେ ରାଜ କଚେରି
ଧୁନ୍ଧ ଦେଲୁ ସିନା ପରଚେ କରି ।"

ଅନୁସରତ ପ୍ରଭୋ କାଳଯାକ ଗଲି ସରତ ଅନୁକରଣରେ—

"ଅନୁ ସରତ ! ମୋର କାଳଯାକ ଗଲା ସରତ
କର୍ମ ଅବେଳକୁ ମୋହର ବେଳକୁ ଶୁଖିଲା କରୁଣା ସରିତ ।
ପଡ଼ି ଗଡ଼ି ଗଡ଼ି ନାକ ଗଲା ଛଡ଼ି ରକତ ହୋଇଲା ଝିଠ ତ,
ହରଡ଼ ଘଣାକୁ ପେଡ଼ି ନ ପଡ଼ିଲା ଟୋପାଏ ମାଲପା ଝରିତ ।"

ଉକ୍ତ ଲାଳିକାର ମୂଳ ରଚନା ହେଉଛି—

"ଅନୁସରତ ! ପ୍ରଭୋ ! କାଳଯାକ ଗଲି ସରତ ।
କଣ ବିତରଣ କଲେ କେତେ ଊଣା ହୁଅନ୍ତା କରୁଣା ସରିତ
ଅଶରଣ ଜନ ବନ୍ଧୁପଣ ଯଶ ସଂସାରେ ହୋଇଛି ଉଦିତ
ପଥର ହୋଇ ପଥରେ ପଡ଼ିଥିଲା ଅହଲ୍ୟାକୁ ଦେଲ ତାରିତ ।"

ସେହିପରି ଯୁଗସ୍ରଷ୍ଟା ରାଧାନାଥଙ୍କ ମହାଯାତ୍ରା ଅନୁକରଣରେ—

"ଉତ୍କଳ ଭାରତୀ ମାଗୋ ଝଙ୍କଡ଼ ବାସିନି
ପୂଜିବାକୁ ତୋର ପଦ ବଳାଇଛି ମନ ।
ମଡର୍ଣ୍ଣ ଫେସନ ମାଝ ପୂଜା ଆୟୋଜନ
କରୁ କରୁ ପାଇଲିଣି ବହୁ ତକଲିଫ୍ ।"

କିନ୍ତୁ ରାଧାନାଥଙ୍କ ମହାଯାତ୍ରାରେ ଲେଖାଅଛି—

"ପଙ୍କଜବାସିନି, ଦେବି, ଉତ୍କଳ ଭାରତି
ହାରିଲେ, କି କଲେ, କହ କୁରୁ ଚୂଡ଼ାମଣି
ଶୁଣିଲେ ଯେ କାଲେ ବୀର ବାର୍ତ୍ତାବହ ମୁଖେ
ପ୍ରଭାସେ ଯାଦବଙ୍କର ଜ୍ଞାତି-କ୍ଷୟକାରୀ ।"

ସତ୍ୟବାଦୀର ବନ ବିଦ୍ୟାଳୟରେ ଯେଉଁ କେତେଜଣ ସାହିତ୍ୟ ସାଧକ, ସମାଜ, ସଂସ୍କାରକ, ଜାତୀୟତାବାଦୀ କବି ତଥା କର୍ମୀ ଥିଲେ ତନ୍ମଧ୍ୟରେ ନୀଳକଣ୍ଠ ଅନ୍ୟତମ । ସେତେବେଳର ରକ୍ଷଣଶୀଳ ବ୍ରାହ୍ମଣ ସମାଜ କୁସଂସ୍କାର ମୂଳକ ସାମାଜିକ ପ୍ରଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି 'ମୋ ନିଶ' ଶୀର୍ଷକ ଏକ ପ୍ରବନ୍ଧ ଲେଖିଥିଲେ । ସମାଜରେ ଦେଖା

ଯାଉଥିବା ବିକ୍ଷୋଭ ଏଥିରେ ପ୍ରତିଫଳିତ । ଏଥିରେ ନିଶ ଦେବତାଙ୍କ ପୂଜା ପାଇଁ ବ୍ରାହ୍ମଣଙ୍କ ସନ୍ଧ୍ୟା ଉପାସନା ଭଳି ମନ୍ତ୍ରକୁ ଲେଖିଥିଲେ । ସେଥିରେ ଥିବା ସ୍ତୋତ୍ର ନିମ୍ନରେ ପ୍ରଦତ୍ତ ହେଲା—

"ନମସ୍ତେ ନିଶ ଦେବାୟ ନମୋ ବ୍ରହ୍ମତ୍ୱ ରୂପିଣେ
ଉତ୍ତେ୍ର ସଂସ୍କାର ରୂପାୟ ଅସଖା ସିପନାତ୍ ସତେ ।
ମୋ ସୌଭାଗ୍ୟାତ୍ ସିନା ଦେବ କେତେ ଲୋକ ନାହାନ୍ତି ହେ
ତବ ଭକ୍ତାସ୍ତୁ ସଂସାରେ ଖାନାସ୍ତଂ ସଦସ୍ତୋ ଭବନ୍ ।"

ଲଳିକା ରଚନାର ପଥ ପ୍ରଦର୍ଶକ ହେଉଛନ୍ତି 'ଡଗର' । ନିତ୍ୟାନନ୍ଦ ମହାପାତ୍ର ସରଳ ଶିଶୁ ପ୍ରାଣ ପାଠକଙ୍କୁ ନିର୍ମଳ ଆନନ୍ଦ ପ୍ରଦାନ କରିବାକୁ ଯାଇ ବହୁ ଲଳିକା ପ୍ରକାଶ କରିଛନ୍ତି । ତାଙ୍କର 'ନବ ଦରବାର' ଏକ ଉତ୍କୃଷ୍ଟ ଲଳିକା । ଏହା ରାଧାନାଥଙ୍କ 'ଦରବାର' କାବ୍ୟର ଅନୁକରଣରେ ଲିଖିତ । ଏଥିରେ ସେ ଏ ଦେଶର ଦୋଷ ତ୍ରୁଟିକୁ ସମାଲୋଚନା କରିଛନ୍ତି ।

"ତୁହେଁ ବାଟସ୍ଥିତ ପ୍ରେତ ପନ୍ଥ ନିକେ
ନବ ଦରବାରେ ହୋଇଥିବ ବିକେ ।
ବିଶ୍ରୋଧ ତୁହେଁ ସେ ଅଭ୍ରାନ୍ତ ଘଣ୍ଟିକା
ବାମ କରେ ତାର ଶ୍ରମ ବିଜ୍ଞପ୍ତିକା ।
× × ×
ସେ ଦରବାରେ ତ ଗଣା ହେବ ନାହିଁ
ମନ୍ତ୍ରୀପଦ, ସଭ୍ୟପଦ ଦରମା ହିଁ ।"

ରାଧାନାଥ ଦରବାରରେ ଲେଖିଛନ୍ତି—

"ସେହି ବୈଶ୍ୱାନର ଦରବାରେ ନିକେ
ପ୍ରେତ ପନ୍ଥ ସଭାପତି ରୂପେ ବିକେ
ଥରେ ମନେ କର ସେହି ଦରବାର
କି ଭଳି ଆସନ ଲଭିବ ସେଠାରୁ ।
× × ×
ସେ ଦରବାରେ ତ ଗଣା ହେବ ନାହିଁ
ଉଚ୍ଚ ପଦ ତୋର କମ୍ପା ଦରମାହିଁ ।"

ଅତ୍ୟାଧୁନିକ ଯୁଗର ଶ୍ରେଷ୍ଠ ଲଳିକା ରଚୟିତା ଭାବରେ ଗୋଦାବରୀଶ ମହାପାତ୍ରଙ୍କର ଅବଦାନ ଅନନ୍ୟ ସାଧାରଣ । ସମସାମୟିକ ସମାଜ ଓ ରାଜନୀତି କ୍ଷେତ୍ରରେ ପଥଭ୍ରଷ୍ଟ ବିପଥଗାମୀ ବ୍ୟକ୍ତି ବିଶେଷ ଓ ଶାସକଗୋଷ୍ଠୀକୁ ନିଆଁଖୁଣ୍ଟା ମାଧ୍ୟମରେ ସେ ନିଆଁଖୁଣ୍ଟା ଖେଞ୍ଚିଛନ୍ତି । ମଧୁସୂଦନଙ୍କ 'ନନ୍ଦାସିତର ବିଲାପ' ରାଧାନାଥଙ୍କ 'ମେଘଦୂତ' ଓ ଭକ୍ତ ଚରଣଙ୍କ 'ମନବୋଧ ଚଉତିଶା' ଉପେନ୍ଦ୍ର ଭଞ୍ଜଙ୍କ 'ବିଭୂଷଣ ପୁଷ୍ପେ ଯା କାନ୍ତି କାଣ' ଗ୍ରନ୍ଥର ବେଶ୍ ଆସ୍ୱାଦ୍ୟ ଲଳିକା କରିଛନ୍ତି । ଏତଦ୍ ବ୍ୟତୀତ 'ନାନା ବାୟା ଗୀତ'

ଖଟାଅ ମୋତେ ତୋ ମୋଟର ଖେଳିବା ଖଟଣୀରେ ଦବା ନାଁ,' ବଜୁବାବୁ ବଦନ କରି ଅବଲୋକନ କେଉଁ କରମହୀନ ଜନ' ଇତ୍ୟାଦି ଲଳିକାରେ ତାଙ୍କର କୃତିତ୍ୱ ପରିସ୍ଫୁଟ ହୋଇଛି । ଲଳିକା ରଚନା ପାଇଁ ଲୋକଗୀତର ସମୁଦ୍ରକୁ ମଧ୍ୟ ତନ୍ନ ତନ୍ନ କରି ମନ୍ଥନ କରିଛନ୍ତି । ମାୟାଧର ମାନସିଂହ ଓ ସଚ୍ଚି ରାଉତରାୟଙ୍କର ଅନେକ ଗୀତ ମଧ୍ୟ ତାଙ୍କ 'ଲଳିକା' ରଚନାର ଉତ୍ସ ରୂପେ ବିବେଚିତ ହୋଇଛି । ନିର୍ଭୀକ ସମ୍ପାଦକ ଶ୍ରୀ ମହାପାତ୍ର ଶାଣିତ ବ୍ୟଙ୍ଗରେ ସମାଜ ଓ ସାମାଜିକ ବ୍ୟକ୍ତିକୁ ଛିଲା ଛିଲା ଜର୍ଜରିତ କରିଛନ୍ତି । ଭଞ୍ଜଙ୍କ 'ବିଭୂଷଣ ପୁଷ୍ପେ ଯା କାନ୍ତି ଜାଣ'ର ଲଳିକା କରିବାକୁ ଯାଇ ଲେଖିଛନ୍ତି—

"ବିଦୂଷ ଗଣ ମନ ଦେଇ ଶୁଣ
ବିଭୂଷଣେ ମଦ ଅଫିମ ଆଣ
ବାରଣ ଶିରେ ପଦ ଦେଇ ଆସୁ
ବରଣ କରି ସଭାମନ ତୋଷୁ
ବିକ୍ରମୀ ରାଜେନ୍ଦ୍ର ସିଂହ ସେ
ବୋଲି ଦେଲ ପ୍ରାୟ ଗୋଲା ଚନ୍ଦନକୁ ବିଧାନ ସଭ୍ୟ ସେ ।"

ଉପେନ୍ଦ୍ର ଭଞ୍ଜଙ୍କ ଗ୍ରନ୍ଥଟି ହେଉଛି ଠିକ୍ ଏହିପରି—

"ବିଭୂଷଣ ପୁଷ୍ପେ ଯା କାନ୍ତି ଜାଣ, ବିଭୂଷଣ କରି କନ୍ୟାକୁ ଆଣ ।
ବାରଣ ଶିରେ ପାଦ ଦେଇ ଆସୁ, ବରଣ କରି ରାମ ମନ ତୋଷୁ ସେ
ବୋଲିଦେଲେ କଉଶିକ ସେ ।
ବୋଲି ଦେଲା ପ୍ରାୟେ ଗୋଳି ଚନ୍ଦନକୁ ହୋଇଲେ ରଘୁବଂଶିକ ସେ ।"

ଲୋକ ସାହିତ୍ୟକର ଲୋକ କବିତାକୁ ନେଇ ଲଳିକା କରିଛନ୍ତି—

"ଦୁଇ ମାଇପର ଘଇତା
ତବତ ଖାଇବୁ କି ପଖାଳ ଖାଇବୁ
ବେଲ ଥାଉ ଥାଉ କହିଥା ।"

ଦୀନକୃଷ୍ଣ ଦାସଙ୍କର 'କୃପାସିନ୍ଧୁ ବଦନ କରି ଅବଲୋକନ'ର ଲଳିକା କରି ସେ ଲେଖିଛନ୍ତି—'ବଜୁବାବୁ ବଦନ କରି ଅବଲୋକନ' ।

"ବଜୁବାବୁ ବଦନ କରି ଅବଲୋକନ କେଉଁ କରମହୀନ ଜନ
କାକୁସ୍ଥତର ହୋଇ କରଯୋଡ଼ି ଜଣାଇ ତୁଳସୀପୁର ସନ୍ନିଧାନ ହେ
ବଜୁବାବୁ ।"

ଦୀନକୃଷ୍ଣଙ୍କ ଜଣାଣଟି ହେଉଛି—

"କୃପାସିନ୍ଧୁ ବଦନ କରି ଅବଲୋକନ କେଉଁ କରମହୀନ ଜନ
କାକୁସ୍ଥତର ହୋଇ କରଯୋଡ଼ି ଜଣାଇ ଗରୁଡ଼ସ୍ତମ୍ଭ ସନ୍ନିଧାନ ହେ
ମହାପ୍ରଭୁ ।"

'ଖୋରଧା ବୋଧ ଚଉତିଶା'ରେ ଲେଖିଛନ୍ତି—

"କହଇ ମନ ଆରେ ମୋ ବୋଲ କର
କିଞ୍ଚିତେ ଖୋରଧାକୁ ଦେଖିବା ଚାଲ ।"

'ମନବୋଧ ଚଉତିଶା'—

"କହଇ ମନ ଆରେ ମୋ ବୋଲ କର
କଳା ଶ୍ରୀମୁଖ ଦାରେ ଦେଖିଲା ଚାଲ ।"

ମଧୁସୂଦନଙ୍କ 'ନବାସିତର ବିଳାପ' ଅନୁକରଣରେ—

"ବରଂ ନିବାସ ଭଲ କାରାଗାରରେ
ଖାଣ୍ଟି ସୋରିଷ ତେଲ ଯେଉଁଠି ମିଳେ ।
ଖୋଲା ବଜାରେ କିନ୍ତୁ ହୋଇ ସ୍ୱାଧୀନ
ନିପଟ ବୋକା ଛଡ଼ା ନ ହେବ ଆନ ।"

ନବାସିତର ବିଳାପ'ରେ ଅଛି—

"ବରଂ ନିବାସ ଭଲ ରଣ କ୍ଷେତ୍ରରେ
ଭୟରେ ସଦା ଯହିଁ ହୃଦୟ ଥରେ ।
କିନ୍ତୁ ଏ କ୍ଷେମ ସ୍ଥଳେ ରାଜ୍ୟ ପ୍ରାପତ
ଅଟଇ ମୋ ବିଚାରେ ଅଧମ ଗତ ।"

ସାଂପ୍ରତିକ ଯୁଗରେ ଲଳିକା ରଚୟିତାମାନଙ୍କର ସଂଖ୍ୟା ମୁଷ୍ଟିମେୟ । ଏମାନଙ୍କ ମଧ୍ୟରେ ପୁଲିନ ବିହାରୀ ରାୟ ଓ ବିଦ୍ୟୁତ୍ ପ୍ରଭାଦେବୀଙ୍କୁ ସ୍ମରଣ କରାଯାଇପାରେ । ପୁଲିନ ବିହାରୀ ରାୟଙ୍କ 'ତରୁଣ କରାଣୀ ଆଶା' ମାନସିଂହଙ୍କ 'ତରୁଣ କବିର ଆଶା'ର ଏକ ଅନୁକରଣ ।

"ଏଡ଼େ ବିରାଟ ସେ ପାଏ କି ଭାଷା
ହାୟରେ ତରୁଣ କରାନୀ ଆଶା ।
× × ×
କାହିଁ ରାଧା କାହିଁ ବେତସ ଲୀଳା
ଅଫିସରେ ଦିଏ ହାକିମ କଳା ।
ଭେକଲ ପେଟରେ ହେବାକୁ ଗେଲ
କାହିଁ ତା ବେଲ ।"

ମାନସିଂହ 'ତରୁଣ କବିର ଆଶା'ରେ ଲେଖିଛନ୍ତି—

"ଏତେ ବିରାଟ ସେ, ପାଏ କି ଭାଷା
ହାୟରେ ତରୁଣ କବିର ଆଶା
× × ×

ନାହିଁ ଗ୍ରୀଧା, ନାହିଁ ବେଡସ ମାଳା ।
ନାହିଁ ପାଶେ ବେଣୀହେଲ ଛଇଳା ।
ପ୍ରଣୟରେ ମାତ ହେବାକୁ ଗେଲ
କାହିଁ ତା ବେଳ ।"

ନାସ୍ତି କବି ବନ୍ଧ୍ୟୋତ୍ର ପ୍ରବନ୍ଧ 'ମାତୃପୂଜା' ଆଉ ଏକ ଲଳକା ଏଥିରେ ସେ ନବ୍ୟ ସଭ୍ୟା ଓ ଫେସନରେ ପହଁରୁଥିବା ଯୁବତୀମାନଙ୍କୁ ସମାଲୋଚନା କରି ଲେଖିଛନ୍ତି—

"କଜ୍ଜଳ ପୂରିତ ଲୋଚନ ଧାରେ
କଣ୍ଠ ବଶୋଭିତ ବଲ୍ ବଗ୍ଧହାରେ
ଭ୍ୟାନିଟ୍ ବ୍ୟାଗ୍ ଧୃତ ପୁସ୍ତକ ହସ୍ତେ
ସରସ୍ୱତୀ ତୁମକୁ ମୁଁ ଦୂରୁ ନମସ୍ତେ ।
× × ×
ହାଇହିଲ ସୁପାଦେ ବେଣୀଟି ଦୋଳାଇ
କ୍ଷୁଧିତ ନୟନର କ୍ଷଣ ସୁଖଦାୟୀ ।"

ହାସ୍ୟରସ ମାଧ୍ୟମରେ ସମାଜ ସଂସ୍କାର ପାଇଁ 'ଲଳକା' ଏକ ଅବ୍ୟର୍ଥ ପାଶୁପତ କହିଲେ ଅତ୍ୟୁକ୍ତି ହେବ ହେବନାହିଁ । ଉକ୍ତର ଅନୁକୃତ ଓ ବକୃତ ମଧ୍ୟରେ ମାନବିକ ଓ ସାମାଜିକ ପ୍ରକୃତ ପ୍ରତି ଯେପରି ଭବରେ ଶଲ୍ୟ ପ୍ରୟୋଗ କରାଯାଇ ମାନବିକ ଓ ସାମାଜିକ ବ୍ୟାଧିକୁ ଚକିତ୍ସା କରାଯାଏ ବୋଧହୁଏ ଅନ୍ୟ କୌଣସି ସାହିତ୍ୟକ ମାଧ୍ୟମ ଦ୍ୱାରା ତାହା ସମ୍ଭବ ନୁହେଁ । ଅନ୍ୟବିଧ ଅନେକ ହାସ୍ୟରସରେ ରହିପାରେ ବ୍ୟକ୍ତିଗତ କୁତ୍ସା, ଭର୍ତ୍ସନା ଓ ଆକ୍ଷେପ କିନ୍ତୁ ଲଳକାର ଲକ୍ଷ୍ୟ ପବିତ୍ର, ରୂପ ତାର ବୈଚିତ୍ର୍ୟପୂର୍ଣ୍ଣ, ଆତ୍ମାର ନିନାଦ ତାର ମର୍ମସ୍ପର୍ଶୀ, ଆଙ୍ଗିକ ଓ ଆଧାତ୍ମିକ ଉଭୟ ମାହାତ୍ମ୍ୟରେ 'ଲଳକା' ମହିମାନ୍ୱିତ ।

———

# ସିଂହଭୂମିର ଓଡ଼ିଆ ଭାଷା

**ପ୍ରସନ୍ନ କୁମାର ପ୍ରଧାନ**
ଷଷ୍ଠ ବାର୍ଷିକ ଓଡ଼ିଆ

ଓଡ଼ିଆ ଭାଷାଭାଷୀ ଲୋକମାନଙ୍କର ଶତାଧିକ ବର୍ଷ ବ୍ୟାପୀ ଅବିରତ ଆନ୍ଦୋଳନ ଫଳରେ ଓଡ଼ିଶା ପ୍ରଦେଶ ଏକ ସ୍ୱତନ୍ତ୍ର ପ୍ରଦେଶରୂପେ ଗଠିତ ହେଲା ୧୯୩୬ ମସିହା ଏପ୍ରିଲ ମାସ ୧ ତାରିଖରେ କିନ୍ତୁ ଓଡ଼ିଶା ତାହାର କେତେକ ଓଡ଼ିଆଭାଷୀ ଅଞ୍ଚଳକୁ ହରାଇ ବସିଲା । ବଙ୍ଗ ଦେଶର ଅଧୀନରେ ରହିଗଲା ମେଦିନୀପୁର ଅଞ୍ଚଳ, ବିହାର ପ୍ରଦେଶ ଅଧିକାର କଲା ସିଂହଭୂମି ଏବଂ ମଧ୍ୟପ୍ରଦେଶ ଓ ଆନ୍ଧ୍ରପ୍ରଦେଶରେ ମଧ୍ୟ କେତେକ ଓଡ଼ିଆ ଅଞ୍ଚଳ ରହିଗଲା, ଯାହାକି ବର୍ତ୍ତମାନ ଯୁଗରେ ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳ ବୋଲି ଖ୍ୟାତିଲାଭ କରିଛି । ମେଦିନୀପୁରର ଓଡ଼ିଆ ଲୋକେ ଓଡ଼ିଆ ଭାଷାରେ ଶିକ୍ଷା ବ୍ୟବସ୍ଥା ନଥିବାରୁ ଧୀରେ ଧୀରେ ବଙ୍ଗଳା ଭାଷାକୁ ଆଦରି ନେଲେ । ମଧ୍ୟପ୍ରଦେଶବାସୀ ଓଡ଼ିଆଭାଷୀ ହିନ୍ଦୀ ଭାଷା ଶିକ୍ଷା କରି ଓଡ଼ିଆ ଭାଷାକୁ ଭୁଲି ଯାଉଛନ୍ତି । (1) ଏବଂ ବିଚ୍ଛିନ୍ନାଞ୍ଚଳ ସିଂହଭୂମିର ଓଡ଼ିଆ ଭାଷା ମଧ୍ୟ ହିନ୍ଦୀ ଓ ବଙ୍ଗଳା ଭାଷା ଦ୍ୱାରା ପ୍ରଭାବିତ ହୋଇ ନିଜର ଏକ ସ୍ୱତନ୍ତ୍ର ରୂପ ପରିଗ୍ରହ କରିବାକୁ ବସିଛି । ଓଡ଼ିଆ ଭାଷା ଶିକ୍ଷା କରିବାରେ ଅସୁବିଧା ଏବଂ ହିନ୍ଦୀ ଭାଷାର ଅଯଥା ଚାପ ଓଡ଼ିଆ ଭାଷାକୁ, ଓଡ଼ିଆ ଜାତିକୁ ଏହି ଅଞ୍ଚଳରୁ ଲୋପ କରିବାକୁ ବସିଛି । ପ୍ରତ୍ୟକ୍ଷଦର୍ଶୀ ଅନୁଭବୀ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ସିଂହଭୂମି ଜିଲ୍ଲାର ଅଧିକାଂଶ ଗାଁ ଗହଳି ପରିଭ୍ରମଣ କରି ଅନେକ ସମ୍ବାଦ ଓ ତଥ୍ୟ ସଂଗ୍ରହ କରିବାରେ ସମର୍ଥ ହୋଇଥିଲେ । ସେତେବେଳେ ସିଂହଭୂମିର ଓଡ଼ିଆ ଲୋକମାନଙ୍କର ଦୁରବସ୍ଥାର ଚିତ୍ରଣ କରିବାକୁ ଯାଇ ୧୯୧୯ ମସିହାରେ ସିଂହଭୂମିର ତତ୍କାଳୀନ ଡେପୁଟୀ କମିଶନର ମିଃ ଗ୍ୟାରେଟଙ୍କ ନିକଟକୁ ଲେଖିଥିବା ଖଣ୍ଡିଏ ପତ୍ରରେ ଲେଖିଥିଲେ, "କହିବାକୁ ଗଲେ, ଏଠାରେ ଓଡ଼ିଆମାନେ ଅନ୍ଧକାରାଚ୍ଛନ୍ନ, ଲୋକଲୋଚନ ଅଗୋଚରରେ ଥିବା ବଣ ଜଙ୍ଗଲ ମଧ୍ୟରେ ଏକ ପ୍ରକାର ଆର୍ତ୍ତନାଦ କରି କୌଣସି ମତେ ଜୀବନ ସଂଗ୍ରାମ ଚଳାଇ ତିଷ୍ଠି ରହିଛନ୍ତି............ସେମାନେ ଯେଉଁ ଦୁଃଖ ନିର୍ଯ୍ୟାତନା ଭିତରେ ଭିଡ଼ି ଓଟାରି ହୋଇ ଚାଲିଛନ୍ତି, ତାହା ତାଙ୍କର ଜୀବନୀ ଶକ୍ତିକୁ ଏକବାର ଶୋଷି ଦେଲାଣି ଏବଂ ଗୋଟିଏ ସ୍ୱତନ୍ତ୍ର ଜାତି ହିସାବରେ ସେମାନଙ୍କର ଅସ୍ତିତ୍ୱକୁ ମଧ୍ୟ ବିପନ୍ନ କଲାଣି ।"(2)

ବାସ୍ତବରେ ସିଂହଭୂମିର ଓଡ଼ିଆମାନଙ୍କ ଅବସ୍ଥା ତତ୍କାଳୀନ ଅବସ୍ଥା ଅପେକ୍ଷା ଆହୁରି ଶୋଚନୀୟ ହୋଇ ପଡ଼ିଛି । ଓଡ଼ିଆ ଶିକ୍ଷାନୁଷ୍ଠାନ ସବୁ ହିନ୍ଦୀ ଶିକ୍ଷାନୁଷ୍ଠାନ-ମାନଙ୍କରେ ପରିଣତ ହେଉଅଛି । ଓଡ଼ିଆ ପୁଅ ବାଧ୍ୟ ହୋଇ ଅବସ୍ଥା ଚକ୍ରରେ ପଡ଼ି

ହିନ୍ଦୀ ପଢ଼ିବାକୁ ଓ କହିବାକୁ ବାଧ୍ୟ ହେଉଛନ୍ତି । ଓଡ଼ିଆ ପତ୍ର ପତ୍ରିକାର ସ୍ଥାନରେ ହିନ୍ଦୀ ପତ୍ର ପତ୍ରିକାର ବିଶେଷ ପ୍ରଚଳନ ଦେଖାଯାଉଛି । କାଳର ଏହି କରାଳ ଗଡ଼ରେ ଉପ୍ରାବଦ୍ଧ ସଙ୍ଘର୍ଷର ସମ୍ମୁଖୀନ ହୋଇ ଆଜି ଓଡ଼ିଆ ଲୋକ ସଂସ୍କୃତି, ଓଡ଼ିଆ ଚଳଣି, ଓଡ଼ିଆ ଐତିହ୍ୟ ସହିତ ଓଡ଼ିଆ ଭାଷା ଓ ସାହିତ୍ୟ ମଧ୍ୟ ଲୋପ ପାଇବାକୁ ବସିଛି । "ଓଡ଼ିଶା ସହିତ ସିଂହଭୂମିର ସମ୍ପର୍କ କ୍ଷୀଣତର ହୋଇ ଆସିଛି । ସିଂହଭୂମି ଭୌଗୋଳିକ ଭାବରେ ନୁହେଁ, ଓଡ଼ିଶାର ଅନ୍ତଃନାଡ଼ିରୁ ବି କ୍ରମେ ବିଚ୍ଛିନ୍ନ ହୋଇ ଉଠୁଛି ।" (3)

ବିଚ୍ଛିନାଞ୍ଚଳ ସିଂହଭୂମି କେବଳ ସ୍ୱାଧୀନତା ପ୍ରାପ୍ତିର ଅବ୍ୟବହିତ ପୂର୍ବରୁ ଯେ ଓଡ଼ିଶା ସହିତ ସମ୍ପର୍କ ସ୍ଥାପନ କରିଥିଲା ତା ନୁହେଁ, ବରଂ ବହୁ ପ୍ରାଚୀନ କାଳରୁ ଏହା ଥିଲା ଓଡ଼ିଶା ପ୍ରଦେଶର ଏକ ଅଭିନ୍ନ ଅଙ୍ଗ । Stirling. R. D. Banarjee ଏବଂ J. C. Bose ଆଦି ସୁପ୍ରସିଦ୍ଧ ଐତିହାସିକମାନେ ମଧ୍ୟ ଏହାକୁ ଓଡ଼୍ରଦେଶର ଅନ୍ତର୍ଗତ କରିଛନ୍ତି । ଐତିହାସିକ Stirling ତାଙ୍କର Asiatic Research Vol-XV Chap-Vରେ କହିଛନ୍ତି ଯେ "ଆଇନ-ଏ-ଆକବରୀ (Ain-i-Akbari) କାଳରୁ ସିଂହଭୂମି ଓଡ଼ିଶାର ଏକ ଅଙ୍ଗ ଥିଲା । (4) ଭାରତ ଇତିହାସର ମଧ୍ୟକାଳରେ ମଧ୍ୟ ସିଂହଭୂମି କମ୍ବା ସରେଇକଲା ଓ ଖରସୁଆଁ ବିହାରସ୍ଥ ଛୋଟନାଗପୁର ମହାରାଜାଙ୍କ ସଙ୍ଗେ କୌଣସି ସମ୍ପର୍କ ସ୍ଥାପନ କରି ନଥିଲା । ବିହାର ଓ ଓଡ଼ିଶା ବଙ୍ଗଳାଠାରୁ ଅଲଗା ହୋଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କଲେ ୧୯୧୨ ଅଗଷ୍ଟ ପହିଲାରେ । (5) ପୁଣି "In 1916 they were placed under the commissioner of Chhotanagpur assisted by the political agent, Orissa till in 1922 they were transfered to the Orissa Agency." (6) । ୧୯୨୨ରୁ ୧୯୪୮ ପର୍ଯ୍ୟନ୍ତ ସିଂହଭୂମି ଓଡ଼ିଶା Feudatory States ମାନଙ୍କଦ୍ୱାରା ପରିଚାଳିତ ହେଉଥିଲା । କିନ୍ତୁ ଏକ ରାଜନୈତିକ ଷଡ଼ଯନ୍ତ୍ର ହେତୁ ୧୯୪୮ ମସିହାରୁ ପୁଣି ସିଂହଭୂମି ଅଧିବାସୀ ଇଚ୍ଛା ନ କରି ମଧ୍ୟ ନିଜର ମାତୃକୋଳ ପରିତ୍ୟାଗ କରିବାକୁ ବାଧ୍ୟ ହେଲେ । ୧୯୪୮ରେ ପୁଣି ସିଂହଭୂମି ବିହାରର ଅନ୍ତର୍ଭୁକ୍ତ ହୋଇ ରହିଲା ।

୧୯୧୧ ମସିହାରେ ହୋଇଥିବା ଜନଗଣନାନୁଯାୟୀ ସିଂହଭୂମିର ଓଡ଼ିଆ ଭାଷାଭାଷୀ ଲୋକଙ୍କ ସଂଖ୍ୟା ୧,୨୪,୫୯୩ ଥିବା ସ୍ଥଳେ ୧୯୨୧ ଓ ୧୯୩୧ରେ ଯଥାକ୍ରମେ ୧,୪୦,୮୨୧ ଓ ୧,୭୧,୮୮୭ ହୋଇଥିଲା, ଏବଂ ୧୯୪୧ ମସିହାରେ ଭାଷା ବା ଜାତି ସୂତ୍ରରେ ଜନଗଣନା ହୋଇଥିଲେ ଓଡ଼ିଆ ସଂଖ୍ୟା ଅଢ଼େଇ ଲକ୍ଷ ଟପିଥାନ୍ତା । (7) । ସିଂହଭୂମି କହିଲେ ଅଧିକାଂଶ ଓଡ଼ିଶାବାସୀ ସାଧାରଣତଃ ସରେଇକଲା ଓ ଖରସୁଆଁକୁ ହିଁ ବୁଝି ଥାଆନ୍ତି ଏବଂ ସେହି ସରେଇକଲା ଓ ଖରସୁଆଁ ଅଞ୍ଚଳର ଭାଷା ହିଁ ସମ୍ପୂର୍ଣ୍ଣ ସିଂହଭୂମିର କଥିତ ଭାଷା ବୋଲି ଭାବି ନେଇଥାନ୍ତି । କିନ୍ତୁ ଆଞ୍ଚଳିକ ପ୍ରଭେଦ ଦୃଷ୍ଟିରୁ ଭାଷାର କଥନଭଙ୍ଗୀ ଓ ଶବ୍ଦ ପ୍ରଚଳନରେ ମଧ୍ୟ ଯେପରି କେତେକ ପାର୍ଥକ୍ୟ ଦେଖାଦେଇଥାଏ ସେହିପରି ସିଂହଭୂମିର ଅନ୍ୟାନ୍ୟ ଅଞ୍ଚଳଗୁଡ଼ିକର କଥିତ ଭାଷା ସହିତ ସରେଇକଲା ଓ ଖରସୁଆଁ ଅଞ୍ଚଳର କଥିତ ଭାଷାରେ ମଧ୍ୟ ସାମାନ୍ୟ ପାର୍ଥକ୍ୟ ପରିଲକ୍ଷିତ ହୁଏ । କାରଣ, "The language of Singhbhum

has been mostly influenced firstly by Oriya, then by Bengali and now by Hindi.'' (8) ତେଣୁ ଅଞ୍ଚଳର ପ୍ରଭେଦ ଦୃଷ୍ଟିରୁ ହିନ୍ଦୀ ଓ ବଙ୍ଗ ଭାଷାର ପ୍ରଭାବ ମଧ୍ଯ କମ୍ ବେଶି ପଡ଼ିଛି । ଉକ୍ତ ପ୍ରବନ୍ଧଟିରେ ସିଂହଭୂମିର କେତେକ ଓଡ଼ିଆ ଅଞ୍ଚଳ ଯେପରି କି ଚକ୍ରଧରପୁର, ଶଣୁଆ, ଖରସୁଆଁ, ମନୋହରପୁର, ଗୋଇଲକେରା, ଚଇବାସା, ଗୁଆ ଇତ୍ୟାଦି ଆଖପାଖ ଅଞ୍ଚଳର ଗ୍ରାମ୍ୟ କଥିତ ଓଡ଼ିଆ ଭାଷାର ଆଲୋଚନା କରାଯାଇଛି । ଓଡ଼ିଆ ଭାଷା ହିନ୍ଦୀ ଓ ବଙ୍ଗଭାଷା ଦ୍ଵାରା ପ୍ରଭାବିତ ହୋଇ ସେଠାରେ କେତେକ ସ୍ଥାନରେ ନିଜର ଏକ ସ୍ଵତନ୍ତ୍ର ରୂପ ଧାରଣ କରିଛି ଏବଂ ପ୍ରାମାଣିକ ଓଡ଼ିଆଭାଷାଠାରୁ ତାହା ପୃଥକ୍ ବୋଧ ହେଉଛି ତାହା ହିଁ ଦର୍ଶାଇ ଦେବା ଏହି ପ୍ରବନ୍ଧର ଉଦ୍ଦେଶ୍ୟ ।

୧ । ଆଧୁନିକ ଭାରତୀୟ ଆର୍ଯ୍ୟଭାଷାମାନଙ୍କ ମଧ୍ୟରେ ସିନ୍ଧୀ ଓ ଓଡ଼ିଆ ଭାଷାକୁ ଛାଡ଼ିଦେଲେ ଅନ୍ୟ ସମସ୍ତ ଭାଷାର ପ୍ରତ୍ୟେକ ଶବ୍ଦ ଶେଷରେ 'ହଲନ୍ତ' ଉଚ୍ଚାରିତ ହୋଇଥାଏ । ସିଂହଭୂମି ଅଞ୍ଚଳର ଭାଷା ଓଡ଼ିଆ ହେଲେ ହେଁ ହିନ୍ଦୀ ଓ ବଙ୍ଗ ଭାଷାଦ୍ଵାରା ପ୍ରଭାବିତ ହୋଇ ଅନ୍ୟାନ୍ୟ ସମସ୍ତ ଆଧୁନିକ ଭାରତୀୟ ଆର୍ଯ୍ୟ ଭାଷାମାନଙ୍କ ପରି ଶବ୍ଦ ଶେଷରେ ହଲନ୍ତର ପ୍ରୟୋଗ ଥାଇ ଉଚ୍ଚାରିତ ହୋଇଥାଏ । ଯେପରି କି—

| ପ୍ରାମାଣିକ ଓଡ଼ିଆ | ସିଂହଭୂମି ଓଡ଼ିଆ |
|---|---|
| ଲୋକ | ଲୋକ୍ |
| ଭୋଗ | ଭୋଗ୍ |
| ରଂଗ | ରଂଗ୍ |
| ଚାଉଳ | ଚାଉଳ୍ |
| ଭାତ | ଭାତ୍ |
| ଘର | ଘର୍ |

ଏପରି ଉଚ୍ଚାରଣ ଦ୍ଵାରା ପ୍ରାମାଣିକ ଓଡ଼ିଆର ଶବ୍ଦ ଶେଷରେ ନିହିତ 'ଅ' ଧ୍ଵନି ଲୋପ ପାଇ ସିଂହଭୂମି ଭାଷାରେ ଉଚ୍ଚାରିତ ହୋଇଥାଏ । କାରଣ ପ୍ରାମାଣିକ ଓଡ଼ିଆର ଲୋକ (ଲ+ଓ+କ+ଅ) ସିଂହଭୂମି ଓଡ଼ିଆରେ ଲୋକ୍ (ଲ+ଓ+କ) ।

୨ । ପ୍ରାମାଣିକ ଓଡ଼ିଆ ଭାଷାରେ ବ୍ୟବହୃତ ହେଉଥିବା ସମ୍ବୃତ ସ୍ଵରଧ୍ଵନି ବା (Closed vowels) ସିଂହଭୂମି ଭାଷାରେ ବିବୃତ ସ୍ଵରଧ୍ଵନି (Open vowels)ର ରୂପ ନେଇ ଉଚ୍ଚାରିତ ହୁଏ । ଯଥା—

| ପ୍ରା : ଓଡ଼ିଆ | ସିଂ : ଓଡ଼ିଆ |
|---|---|
| ବଗିଚା | ବାଗାନ୍ (ଇ>ଆ) |
| ଗାଁଇଠି | ଗାଁଇଠା ( ,, ) |
| ଆଞ୍ଜୁଳି | ଅଞ୍ଜଲା ( ,, ) ଇତ୍ୟାଦି |

୩ । କେତେକ ସ୍ଥଳେ ସାଧୁ ଓଡ଼ିଆର ସଂବୃତ ସ୍ୱରଧ୍ୱନି ବା Closed vowelsକୁ ସିଂହଭୂମି ଭାଷାଭାଷୀ ଲୋକେ ଅର୍ଦ୍ଧ ସଂବୃତ (Half closed) ସ୍ୱରଧ୍ୱନି ବା ଅର୍ଦ୍ଧ ବିବୃତ (Half open) ସ୍ୱରଧ୍ୱନିରୂପେ ଉଚ୍ଚାରଣ କରିଥାନ୍ତି । ଯଥା:—

| ସାଧୁ ଓଡ଼ିଆ | ସିଂହଭୂମି ଓଡ଼ିଆ |
|---|---|
| ହାକୁଟି | ହେଁକୁଟ୍ (ଆ>ଏ) |
| ସିପାହି | ସିପେଇ ( „ ) |

୪ । ଦକ୍ଷିଣ ଓଡ଼ିଶାର ଭାଷା ପ୍ରାମାଣିକ ଓଡ଼ିଆ ଭାଷାର ଅର୍ଦ୍ଧ ବିବୃତ ସ୍ୱର କିମ୍ବା ଅର୍ଦ୍ଧ ସଂବୃତ ସ୍ୱରଧ୍ୱନିକୁ ସଂବୃତ ସ୍ୱର ରୂପେ ଉଚ୍ଚାରଣ କରି 'ଗୋଡ଼' ଓ 'ଗୋରୁ'କୁ ଯଥାକ୍ରମେ 'ଗୁଡ଼' ଓ 'ଗୁରୁ' କହିଥାଏ ; କିନ୍ତୁ ସିଂହଭୂମି ଭାଷାରେ 'ଗୋଡ଼' ଓ 'ଗୋରୁ'କୁ 'ଗୋଡ଼' ଓ 'ଗୋରୁ' କହିଲେ ମଧ୍ୟ ଅନ୍ୟ କେତେକ ଶବ୍ଦରେ ଏହି ପ୍ରକାର ପରିବର୍ତ୍ତନ ଲକ୍ଷ୍ୟ କରାଯାଇଥାଏ । ଯଥା:—

| ପ୍ରାମାଣିକ ଓଡ଼ିଆ | ସିଂହଭୂମି ଓଡ଼ିଆ |
|---|---|
| ବୋଦା | ବୁଦା (ଓ>ଉ) |
| ଜୋତା | ଜୁତା ( „ ) |
| ଗୋବର | ଗୁବର ( „ ) |
| ଓସାର | ଉସାର୍ ( „ ) |
| ପୋଥି | ପୁଥି ( „ ) |
| ଗୋଛା | ଗୁଛା ( „ ) |
| ଖୋଲ | ଖୁଲ ( „ ) |
| ଖୋରାକ | ଖୁରାକ୍ ( „ ) |
| ଧୋବା | ଧବା ( „ ) |
| କୋଦାଳ | କୁଦାଲ୍ ( „ ) |
| କୋଲଥ | କୁଲଥ୍ ( „ ) |
| ପୋଡ଼ିବା | ପୁଡ଼ିବା ( „ ) ଇତ୍ୟାଦି ଅନେକ ଶବ୍ଦ |

୫ । ପ୍ରାମାଣିକ ଓଡ଼ିଆ ଭାଷାରେ ଉଚ୍ଚାରିତ କୁଞ୍ଚିତ ସ୍ୱରଧ୍ୱନି (Rounded vowels) ସିଂହଭୂମି ଓଡ଼ିଆ ଭାଷାରେ କେତେକ ସ୍ଥଳେ ପ୍ରସୃତ ସ୍ୱରଧ୍ୱନି (Retracted vowels) ରୂପେ ଉଚ୍ଚାରିତ ହୋଇଥାଏ । ଯଥା:—

| ପ୍ରାମାଣିକ ଓଡ଼ିଆ | ସିଂହଭୂମି ଓଡ଼ିଆ |
|---|---|
| ସିଂହ | ସିଂହ (ଅ>ଇ) |
| ଚଣ୍ଡାଣ | ଚୁଣ୍ଡାଣି ( „ ) |
| ଗୋଟିଏ | ଗୁଟେଇ (ଏ>ଇ) |
| କଦଳୀ | କଦଲ୍ (ଅ>ଇ) |

୬ । ପୁଣି କେତେକ Retracted vowels ବା ପ୍ରସୃତ ସ୍ୱରଧ୍ୱନି ଯାହା କି ପ୍ରାମାଣିକ ଓଡ଼ିଆରେ ଉଚ୍ଚାରିତ ହୋଇଥାଏ ତାହାକୁ ସିଂହଭୂମି ଭାଷାରେ Rounded vowels ବା କୁଞ୍ଚିତ ସ୍ୱରଧ୍ୱନି ରୂପେ ଉଚ୍ଚାରଣ କରୁଥିବା ମଧ୍ୟ ଦେଖାଯାଏ । ଯଥା—

| ପ୍ରାମାଣିକ ଓଡ଼ିଆ | ସିଂହଭୂମି ଓଡ଼ିଆ | |
|---|---|---|
| ଚିହ୍ନ | ଚେହ୍ନ | (ଇ>ଏ) |
| ଗୋଟିଏ | ଗୁଟେଇ | ( „ ) |
| ଓଡ଼ିଶ | ଉଡ଼ଶ୍ | (ଇ>ଅ) |
| କଳିକା | କଲକା | ( „ ) ଇତ୍ୟାଦି |

୭ । ପ୍ରାମାଣିକ ଓଡ଼ିଆରେ ଉଚ୍ଚାରିତ ଅଗ୍ରସ୍ୱର 'ଇ' କେତେକ ସ୍ଥଳେ ସିଂହଭୂମି ଭାଷାରେ 'ଉ' ହୋଇ ଉଚ୍ଚାରିତ ହୁଏ ।

କୁଣିଆ>କଣୁଆ (ଇ>ଉ)

୮ । ସେହିପରି କେତେକ ଶବ୍ଦର ଅଗ୍ରସ୍ୱର ସିଂହଭୂମି ଭାଷାରେ ମଧ୍ୟସ୍ୱରରେ ପରିବର୍ତ୍ତିତ ହୋଇ ଉଚ୍ଚାରିତ ହୁଏ । ଯଥା: –

| ପ୍ରା: ଓଡ଼ିଆ | ସିଂ: ଓଡ଼ିଆ | |
|---|---|---|
| ନାସପାତି | ନାସପତି | (ଆ>ଅ) |
| ମାଗୁର | ମଘୁର୍ (ମତ୍ସ୍ୟ ବିଶେଷ) | ( " ) |
| ଆଞ୍ଜୁଳି | ଅଞ୍ଜଲା | ( „ ) |
| ପାନିଆ | ପନିଆ | ( „ ) |
| ଆଳସ୍ୟ | ଅଲସ୍ | ( „ ) |
| କଠାଉ | କଠଉ | ( " )ଇତ୍ୟାଦି |

୯ । ପ୍ରାମାଣିକ ଓଡ଼ିଆ ଭାଷାରେ ଉଚ୍ଚାରିତ ପଶ୍ଚାତ୍ତ୍ୱ ସ୍ୱରଧ୍ୱନି 'ଉ' ମଧ୍ୟ ଅନେକ ସ୍ଥଳେ ସିଂହଭୂମି ଓଡ଼ିଆ ଭାଷାରେ ମଧ୍ୟ ସ୍ୱରଧ୍ୱନି 'ଅ'ରେ ପରିଣତ ହୋଇ ଉଚ୍ଚାରିତ ହୋଇଥାଏ । ଯଥା :—

| ପ୍ରାମାଣିକ ଓଡ଼ିଆ | ସିଂହଭୂମି ଓଡ଼ିଆ | |
|---|---|---|
| ମୁଚୁଳା | ମୁଚଲା | (ଉ>ଅ) |
| ଶିକୁଳି | ଶିଂକଳି | ( „ ) |
| ସାବୁନ୍ | ସାବନ୍ | ( „ ) |
| କୁକୁଡ଼ା | କୁକଲା | ( „ ) |
| ଗାମୁଛା | ଗାମଛା | ( „ ) |
| ଡଷୁ | ଭୂଷ | ( „ ) |

୧୦ । ଅ>ଆ, ଅର୍ଥାତ୍ ପ୍ରାମାଣିକ ଓଡ଼ିଆର ମଧ୍ୟସ୍ୱର 'ଅ' ସିଂହଭୂମି ଓଡ଼ିଆରେ ଅଗ୍ରସ୍ୱର 'ଆ'ରେ ଅନେକ ସ୍ଥାନରେ ଉଚ୍ଚାରିତ ହୋଇଥାଏ ।ଯଥା:—

| ପ୍ରାମାଣିକ ଓଡ଼ିଆ | ସିଂହଭୂମି ଓଡ଼ିଆ | |
|---|---|---|
| ଦବା | ଦାବାଇ | (ଅ>ଆ) |
| ବଗିଚ୍ଚ | ବାଗାନ୍ | ( „ ) |
| ଚଣା | ଚ୍ଛନା | ( „ ) |
| ପାଗଳ | ପାଗଲ୍ | ( „ ) |
| ମହାପୁରୁଷ | ମାହାପୁରୁଷ | ( „ ) |
| ଗାତ | ଗାତା | ( „ ) |
| ଚଦର | ଚ୍ଛଦର | ( „ ) |
| ଛମଣା | ଛାମଣା | ( „ ) |
| ଚକ | ଚ୍ଛକା | ( „ ) |
| ନାଳ, ନଳା | ନାଲ୍ | ( „ ) |
| ରଜା | ରାଜା | ( „ ) |
| ବାକ୍ସ | ବାକ୍ସା | ( „ ) |
| ଲଡ଼ୁ | ଲଡ୍ଡୁ | ( „ ) |
| ପୁଣି – ଫଣା | ଫେଣ | (ଅ>ଏ ) |

**ବ୍ୟଞ୍ଜନ ଧ୍ୱନି ଉଚ୍ଚାରଣରେ ବୈସାଦୃଶ୍ୟ—**

୧ । ପ୍ରାମାଣିକ ଓଡ଼ିଆ ଭାଷାରେ ବ୍ୟବହୃତ ହେଉଥିବା 'ଳ' ଏବଂ 'ଣ' ବ୍ୟଞ୍ଜନ ଧ୍ୱନି ପଶ୍ଚିମାଞ୍ଚଳ ଆଞ୍ଚଳିକ ଭାଷାରେ ବ୍ୟବହୃତ ହୁଏ ନାହିଁ କିନ୍ତୁ ଏହି 'ଳ' ଏବଂ 'ଣ' ବ୍ୟଞ୍ଜନ ଦ୍ୱୟର ବହୁଳ ବ୍ୟବହାର ସିଂହଭୂମିର ଓଡ଼ିଆ ଅଧିବାସୀମାନେ କରନ୍ତି । ପ୍ରାମାଣିକ ଓଡ଼ିଆ ଭାଷାର ମୂର୍ଦ୍ଧନ୍ୟ ବ୍ୟଞ୍ଜନ ଧ୍ୱନିର ଡ ବର୍ଣ୍ଣ ସିଂହଭୂମିଠାରେ ଦନ୍ତମୂଳୀୟ ବର୍ଣ୍ଣ 'ଳ'ରେ ଉଚ୍ଚାରିତ ହେବା ବହୁଳଭାବେ ପରିଲକ୍ଷିତ ହୁଏ । ଯଥ :—

| ପ୍ରାମାଣିକ ଓଡ଼ିଆ | ସିଂହଭୂମି ଓଡ଼ିଆ | |
|---|---|---|
| ଗୁଡ଼ | ଗୁଲ୍ | (ଡ>ଲ) |
| ଘୋଡ଼ା | ଘୂଲା | ( „ ) |
| ଦୌଡ଼ା ବା ଦଉଡ଼ା | ଦୌଲା ବା ଦଉଲା | ( „ ) |
| ପାହାଡ଼ | ପାହାଲ୍ | ( „ ) |
| ମଡ଼ା | ମଲା | ( „ ) |
| ତେନ୍ତୁଡ଼ | ତେନ୍ତୁଲ୍ | ( „ ) |
| ମାଙ୍କଡ଼ | ମାଙ୍କଲ୍ | ( „ ) |
| ଅଗାଡ଼ି | ଅଗାଲ୍ | ( „ ) |
| ଚୁଡ଼ | ଚୁଲ୍ | ( „ ) |
| ଘଡ଼ | ଘଲ୍ | ( „ ) |

ପୁଣି ମୂର୍ଦ୍ଧନ୍ୟ ବର୍ଣ୍ଣର 'ଢ' ମଧ୍ୟ 'ଲ'ରେ ପରିଣତ ହୋଇଅଛି । ଯଥା—

ଚଢ଼େଇ > ଚଲେଇ (ଢ > ଲ)

୨ । ସାଧୁ ଓଡ଼ିଆର ଦନ୍ତମୂଳୀୟ ବ୍ୟଞ୍ଜନ ଧ୍ୱନି ସିଂହଭୂମି ଓଡ଼ିଆ ଭାଷାରେ ମୂର୍ଦ୍ଧନ୍ୟ ଧ୍ୱନିରେ ଉଚ୍ଚାରିତ ହୋଇଅଛି । ଯେପରିକି—

ଆମଲା > ଆମଠା ଅର୍ଥାତ୍ (ଲ > ଠ) ।

୩ । ପ୍ରାମାଣିକ ଓଡ଼ିଆର ଦନ୍ତ୍ୟ ବର୍ଣ୍ଣ ଧ୍ୱନିକୁ ସିଂହଭୂମବାସୀ ମୂର୍ଦ୍ଧନ୍ୟ ଧ୍ୱନିରେ ପରିବର୍ତ୍ତନ କରି ଉଚ୍ଚାରିତ କରନ୍ତି । ଯଥା—

| ପ୍ରାମାଣିକ ଓଡ଼ିଆ | ସିଂହଭୂମି ଓଡ଼ିଆ | |
|---|---|---|
| ଗାତ | ଗାଢ଼ା | (ତ > ଢ଼ା) |
| ଧଣ୍ଡ | ଢଣ୍ଡ | (ଧ > ଢ଼) |
| ବାଲତ | ବାଲଟି | (ତ > ଟ) |

୪ । ଧ୍ୱନି ଉଚ୍ଚାରଣ କରିବା ସମୟରେ ଅପେକ୍ଷାକୃତ ଅଳ୍ପ ଶକ୍ତିର ପ୍ରୟୋଗ ହେଉଥିବା ପ୍ରାମାଣିକ ଓଡ଼ିଆର ଅଳ୍ପ ପ୍ରାଣଧ୍ୱନି ବା Unaspirated consonant ସିଂହଭୂମି ଭାଷାରେ ଉଚ୍ଚାରଣ କାଳରେ ଅପେକ୍ଷାକୃତ ଅଧିକ ଶକ୍ତି ପ୍ରୟୋଗ ହେଉଥିବା ମହା ପ୍ରାଣଧ୍ୱନି ବା Aspirated cosonantରେ ପରିଣତ ହୋଇ ଉଚ୍ଚାରିତ ହୋଇ ଅଛି । ଯଥା—

| ପ୍ରାମାଣିକ ଓଡ଼ିଆ | ସିଂହଭୂମି ଓଡ଼ିଆ | [ମହାପ୍ରାଣୀ କରଣ] | |
|---|---|---|---|
| ଡେକଚ | ଡେଗଚ | (କ > ଗ) | |
| ଡାକନ୍ତ୍ | ଡାଙ୍ଗତ୍ | ( ,, ) | |
| ଦାରୋଗା | ଦରଘା | (ଗ > ଘ) | |
| ମଗର | ମଘର୍ | ( ,, ) | |
| ମାଗୁର | ମଘୁର୍ | ( ,, ) | |
| ଉକୁଣି | ଉଖୁଣ୍ | (କ > ଖ) | ଇତ୍ୟାଦି |

୫ । ପୁଣି ଠିକ୍ ଏହାର ବିପରୀତ ପ୍ରାମାଣିକ ଓଡ଼ିଆର ମହାପ୍ରାଣ ଧ୍ୱନି ମଧ୍ୟ କେତେକ ସ୍ଥଳରେ ଅଳ୍ପ ପ୍ରାଣ ଧ୍ୱନିରେ ପରିବର୍ତ୍ତିତ ଭାବେ ଉଚ୍ଚାରିତ ହୋଇଥାଏ । ଯଥା :—

ଖୋଳିବା > କୁଡ଼ିବା (ଖ > କ)

ନଡ଼ା > ନଟ୍ (ଡ଼ > ଟ)

୬ । ସାଧୁ ଓଡ଼ିଆ ଭାଷାରେ 'ଣ' ଧ୍ୱନି ସିଂହଭୂମି ଓଡ଼ିଆ ଭାଷାରେ କେତେକ ସ୍ଥାନରେ 'ନ' ହେବା ସ୍ଥଳେ 'ନ' ଧ୍ୱନି ମଧ୍ୟ କେତେକ ସ୍ଥଳେ 'ଣ' ହୋଇଥାଏ । ଯଥା :—

ଚଣା > ଚୁନା (ଣ > ନ)
ଆଶ୍ୱିନ > ଅଶିଣ୍ (ନ > ଣ)

୭ । ପ୍ରାମାଣିକ ଓଡ଼ିଆର କଂପିତ ବ୍ୟଞ୍ଜନ ଧ୍ୱନି 'ଲ' ସିଂହଭୂମି ଭାଷାରେ ଦନ୍ତ୍ୟ ବ୍ୟଞ୍ଜନ ଧ୍ୱନି 'ନ' ରୂପେ ଉଚ୍ଚାରିତ ହୋଇଥିବାର ମଧ୍ୟ ଦୃଷ୍ଟାନ୍ତ ମିଳେ । ଯଥା :—

ଲୁଣ > ନୁଣ (ଲ > ନ)

୮ । ପୁଣି ଷ୍ଟାଣ୍ଡାର୍ଡ ଓଡ଼ିଆର ଦନ୍ତମୂଳୀୟ ବ୍ୟଞ୍ଜନ ଧ୍ୱନି ସିଂହଭୂମି ଓଡ଼ିଆ ଭାଷାରେ କଂପିତ ବ୍ୟଞ୍ଜନ ଧ୍ୱନିରେ ଉଚ୍ଚାରିତ ହୋଇଥାଏ । ଯଥା :—

| ଷ୍ଟାଣ୍ଡାର୍ଡ ଓଡ଼ିଆ | ସିଂହଭୂମି ଓଡ଼ିଆ | |
|---|---|---|
| ନାଳ | ନାଲ | (ଳ > ଲ) |
| ବଦଳ | ବଦଲ୍ | ( ,, ) |

୯ । ଅକ୍ଷର ଲୋପ ହୋଇ ସଂସ୍କୃତ ଭାଷାର 'ମାତା' ଶବ୍ଦ ଯେପରି 'ମା' ଓଡ଼ିଆରେ ଠିକ୍ ସେହିପରି ପ୍ରାମାଣିକ ଓଡ଼ିଆର 'ଭଦ୍ରବ' ଓ 'କଅଣ' ଶବ୍ଦ ଦୁଇଟି ଯଥାକ୍ରମେ 'ଭଦ' ଓ 'କ' ହୋଇଛି ସିଂହଭୂମି ଭାଷାରେ ।

୧୦ । ମୃଦୁ ଉଚ୍ଚାରଣ, ଉଚ୍ଚାରଣରେ ଶୀଘ୍ରତା କିମ୍ବା ସ୍ୱରାଘାତ ଯୋଗୁଁ ଶବ୍ଦ-ସ୍ଥିତ ଧ୍ୱନିର ଲୋପ ବା Elision ହୋଇଥାଏ । ପ୍ରାମାଣିକ ଓଡ଼ିଆ ଭାଷାର କେତେକ ଶବ୍ଦରୁ ଏହିପରି ମଧ୍ୟବ୍ୟଞ୍ଜନ ଓ ଅନ୍ତ୍ୟବ୍ୟଞ୍ଜନ ଲୋପ ପାଇ ସିଂହଭୂମି ଓଡ଼ିଆ ଭାଷାରେ ଉଚ୍ଚାରିତ ହୋଇଥାଏ । ଯଥା :—

| ପ୍ରାମାଣିକ ଓଡ଼ିଆ | ସିଂହଭୂମି ଓଡ଼ିଆ |
|---|---|
| ବ୍ରାହ୍ମଣ | ବାମଣ୍ (ମଧ୍ୟସ୍ଥିତ 'ର' ଓ 'ହ' ବ୍ୟଞ୍ଜନର ଲୋପ ହୋଇଛି) |
| ମାଙ୍କଡ଼ | ମାକଲ୍ ( ,, 'ଙ' ,, ,, ,, ) |
| ଜନ୍ତୁ | ଜନ୍ ( ,, 'ତୁ' ,, ,, ,, ) |
| କୋହ୍ଲ | କୋଲ୍ ( ,, 'ହ' ,, ,, ,, ) |

ପୁଣି—

| | | |
|---|---|---|
| ୧୧ । | ସିପାହି | ସିପେଇ (ଅନ୍ତ୍ୟ ବ୍ୟଞ୍ଜନ 'ହ' ଲୋପ ହୋଇଅଛି ।) |
| | ଡାଳିମ୍ବ | ଡାଲିମ୍ ( ,, ,, 'ବ' ,, ,, ) |
| | ଆମ୍ବ | ଆମ୍ ( ,, ,, 'ବ' ,, ,, ) |

୧୨ । ପ୍ରାମାଣିକ ଓଡ଼ିଆର 'ବାଡ଼' ଶବ୍ଦରେ ମଧ୍ୟ ଅକ୍ଷରାଗମ ହୋଇ ସିଂହଭୂମ ଭାଷାରେ 'ବାଦାଡ଼' ହୋଇଛି । ଏଠାରେ ଶବ୍ଦ ମଧ୍ୟରେ ବ୍ୟଞ୍ଜନ ବର୍ଣ୍ଣ 'ଦା'ର ଆଗମ ହୋଇଛି ।

୧୩ । ପ୍ରାମାଣିକ ଓଡ଼ିଆର 'ତମ୍ବୁ' ଓ 'ମରଚ' ଶବ୍ଦ ଦୁଇଟିରେ ଦୂରବର୍ତ୍ତୀ ସ୍ୱର ବିପର୍ଯ୍ୟୟ ଘଟି ଯଥାକ୍ରମେ ସିଂହଭୂମି ଭାଷାରେ 'ତୁମ୍ବ' ଓ ମରଚ' ହୋଇଛି ।

୧୪ । ପ୍ରାମାଣିକ ଓଡ଼ିଆରେ ବିଭିନ୍ନ ସ୍ଥାନରେ ବ୍ୟବହାର ହେଉଥିବା ବିନ୍ଧୁଛି, ମୋଡ଼ୁଛି, କାଟୁଛି, ପୋଡୁଛି ଇତ୍ୟାଦି ଶବ୍ଦ ସିଂହଭୂମି ଭାଷାରେ ବ୍ୟବହୃତ ନ ହୋଇ କେବଳ ଗୋଟିଏ ଶବ୍ଦ 'ବଥାଉଛି' ଦ୍ୱାରା ଏହାର ମର୍ମ ପ୍ରକାଶ ପାଏ । ଯଥା :—

| | |
|---|---|
| ମୁଣ୍ଡ ବଥଉଛି | (ବିନ୍ଧୁଛି ସ୍ଥାନରେ) |
| ପେଟ ବଥଉଛି | (ମୋଡ଼ୁଛି ,, ) |
| ଘାଆ ବଥଉଛି | (ପୋଡ଼ୁଛି ,, ) |
| ପିଠି ବଥଉଛି | (କାଟୁଛି ,, ) |

୧୫ । ସିଂହଭୂମି ଓଡ଼ିଆ ଭାଷାର ଏକ ପ୍ରଧାନ ବୈଶିଷ୍ଟ୍ୟ ହେଉଛି ଯେ ସେଠାରେ 'କଅଣ' ଓ 'ଅପଣ' ଶବ୍ଦର ପ୍ରଚଳନ ନାହିଁ । ସମ୍ମାନସୂଚକ ସମ୍ବୋଧନ ଆପଣ ସ୍ଥାନରେ ସିଂହଭୂମିର ଜନସାଧାରଣ 'ତୁମେ' ଶବ୍ଦ ବ୍ୟବହାର କରିଥାନ୍ତି । ସେହିପରି 'କଅଣ' ନ କହି 'କି' କହନ୍ତି । ସ୍ୱର୍ଗତ ପଣ୍ଡିତ ଗୋଦାବରୀଶ ମିଶ୍ର ସିଂହଭୂମି (ଚକ୍ରଧରପୁର)ରେ ପ୍ରଧାନ ଶିକ୍ଷକ ଥିବା ସମୟରେ ଏହି 'କଣ' ଓ 'କି'ର ବ୍ୟବହାର ପାର୍ଥକ୍ୟ ଯୋଗୁଁ 'କଣ ହେଡମାଷ୍ଟର' ନାଁଆ ପାଇଥିଲେ । କାରଣ ସିଂହଭୂମିରେ ଆଉ ସମସ୍ତେ 'କି କରୁଛ', 'କି ଲେଖୁଛ', 'କି ଦେଖୁଛ', 'କି ପଢ଼ୁଛ', କହିବା ବେଳେ ପଣ୍ଡିତ ମିଶ୍ର 'କଣ କରୁଛ', 'କଣ ଲେଖୁଛ', କଣ ଦେଖୁଛ' ଓ 'କଣ ପଢ଼ୁଛ' କହୁଥିଲେ । (ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ ପୃ: ୨୦୩)

୧୬ । ଓଡ଼ିଆରେ ଗୋଟିଏ ପ୍ରବଚନ, "ଓଡ଼ିଆଏ ରାଗିଲେ ହିନ୍ଦୀ କହନ୍ତି ।" କିନ୍ତୁ ସିଂହଭୂମି ନିବାସୀ ଓଡ଼ିଆମାନେ କାହା ଉପରେ ନ ରାଗି ମଧ୍ୟ ହିନ୍ଦୀ କହି ଥାଆନ୍ତି । କେବଳ ହିନ୍ଦୀ ନୁହେଁ ହିନ୍ଦୀ ମିଶା ଓଡ଼ିଆ ମଧ୍ୟ । କାରଣ ନକହିଲେ ନଚଳେ । ତେଣୁ ହିନ୍ଦୀ ଭାଷାକୁ ସର୍ବଦା ଅନିଚ୍ଛା ସତ୍ତ୍ୱେ ପାଖରେ ରଖି ତାହାଦ୍ୱାରା ପ୍ରଭାବିତ ହେବା ସ୍ୱାଭାବିକ୍ । ହିନ୍ଦୀ ଭାଷାରେ କ୍ରିୟା ପୂର୍ବରେ ନାହିଁ ଅବ୍ୟୟ ଯୋଗ ହୋଇ ଯେପରି ବାକ୍ୟ ଗଠନ ହୁଏ ଠିକ୍ ସେହିପରି ହିନ୍ଦୀ ପ୍ରଭାବିତ ସିଂହଭୂମର ଭାଷା ମଧ୍ୟ କ୍ରିୟା ପୂର୍ବରୁ ନାହିଁ ଅବ୍ୟୟ ଯୋଗକରି ତାହାର ଅନ୍ୟ ଏକ ବୈଶିଷ୍ଟ୍ୟ ଦର୍ଶାଇ ପ୍ରାମାଣିକ ଓଡ଼ିଆଠାରୁ ଭିନ୍ନ ହୋଇଯାଏ । ଯଥା—

| ପ୍ରାମାଣିକ ଓଡ଼ିଆ | ସିଂହଭୂମି ଓଡ଼ିଆ | ହିନ୍ଦୀ |
|---|---|---|
| ମୁଁ ଖାଇବି ନାହିଁ । | ମୁଁଇ ନାହିଁ ଖାଇବି । | ମୈଂ ନହୀଂ ଖାଉଁଗା । |
| ସେ ପଢ଼ିବ ନାହିଁ । | ସିଏ ନାହିଁ ପଢ଼ିଆକ୍ । | ବହ ନହୀଂ ପଢେଗା । |

ତୁ ଯିବୁ ନାହିଁ । ତୁଇ ନାଇଁ ଯିବେ । ତୁମ ନଷ୍ଟାଂ ଜାଓଗେ ।
ତୁମ୍ଭେମାନେ ରହିବ ନାହିଁ । ତୁମେ ନାଇଁ ରହିବ । ତୁମଲୋକ ନଷ୍ଟାଂ ରହୋଗେ ।
ଇତ୍ୟାଦି ।

**ବିଭକ୍ତି**—ପ୍ରାମାଣିକ ଓଡ଼ିଆର ଦ୍ୱିତୀୟା ବିଭକ୍ତିରେ ବ୍ୟବହୃତ ହେଉଥିବା 'କୁ' ପ୍ରତ୍ୟୟ ବଦଳରେ ସିଂହଭୂମି ଭାଷାରେ 'କେ' ପ୍ରତ୍ୟୟ ବ୍ୟବହାର ହୁଏ । ଯଥା :—

| ପ୍ରାମାଣିକ ଓଡ଼ିଆ | ସିଂହଭୂମି ଓଡ଼ିଆ |
|---|---|
| ମୁଁ ଘରକୁ ଯାଉଅଛୁ । | ମୁଁଇ ଘରକେ ଯାଉଛଇଁ । |
| ସେ ଖାଇବାକୁ ଯିବ । | ସିଏ ଖାଉକେ ଯିଆକ୍ । |
| ତୁ ସେଠାକୁ ଯିବୁ । | ·ତୁଇ ସେଠକେ ଯିବେ । |

**ସର୍ବନାମ** :—

| | | ପ୍ରାମାଣିକ ଓଡ଼ିଆ | ସିଂହଭୂମି ଓଡ଼ିଆ |
|---|---|---|---|
| ପ୍ରଥମ ପୁରୁଷ | ଏକବଚନ | ମୁଁ | ମୁଁଇ |
| ,, | ବହୁବଚନ | ଆମ୍ଭେ, ଆମେ, ଆମେମାନେ | ଆହ୍ମେ |
| ଦ୍ୱିତୀୟ ପୁରୁଷ | ଏକବଚନ | ତୁ | ତୁଇ |
| ,, | ବହୁବଚନ | ତୁମ୍ଭେମାନେ, ତୁମେ, ତୁମ୍ଭେ | ତୁହ୍ମେ |
| ତୃତୀୟ ପୁରୁଷ | ଏକବଚନ | ସେ | ସିଏ |
| ,, | ବହୁବଚନ | ସେମାନେ | ସେମାନେ |

**ଅବ୍ୟୟ** :—

| ପ୍ରମାଣିକ ଓଡ଼ିଆ | ସିଂହଭୂମି ଓଡ଼ିଆ |
|---|---|
| ଏହା | ଏଟା, ଏଇଟା |
| ତାହା | ସେଟା, ସେଇଟା। |
| ଯେଉଁ | ଯେଁ |
| କାହିଁ | କାଇଁ |
| କଅଣ | କ |
| କାହିଁକି | କ କର |
| ସେଥିପାଇଁ | ସେଇକର, ସେଇପାଇଁ |
| କମ୍ପାଇଁ | କପେଇଁ |
| କୁଆଡ଼େ | କେଁଆଡ଼େ, କେଁଆଡ଼େ |

**କ୍ରିୟା** :—(ଖା ଧାତୁକୁ ନେଇ ଆଲୋଚିତ)

**ଅତୀତକାଳ**

| ପୁରୁଷ | ବଚନ | ଶୁଦ୍ଧ | ଅସମ୍ପନ୍ନ | ସମ୍ପନ୍ନ |
|---|---|---|---|---|
| ପ୍ରଥମ ପୁରୁଷ | ଏକ ବଚନ | ଖାଇଲି | ଖାଉଥିଲି | ଖାଇଥିଲି |
| ,, | ବହୁବଚନ | ଖାଇଲୁ | ଖାଉଥିଲୁ | ଖାଉଥିଲୁ |

| | | | | |
|---|---|---|---|---|
| ୨ୟ ପୁରୁଷ | ଏକବଚନ | ଖାଇଲେ | ଖାଉଥିଲେ | ଖାଇଥିଲେ |
| ,, ,, | ବହୁବଚନ | ଖାଇଲ | ଖାଉଥିଲ | ଖାଇଥିଲ |
| ୩ୟ ପୁରୁଷ | ଏକବଚନ | ଖାଇଲା | ଖାଉଥିଲା | ଖାଇଥିଲା |
| ,, ,, | ବହୁବଚନ | ଖାଇଲେଇ | ଖାଉଥିଲେଇ | ଖାଇଥିଲେଇ |

**ବର୍ତ୍ତମାନ କାଳ—**

| ପୁରୁଷ | ବଚନ | ଶୁଦ୍ଧ | ଅସମ୍ପନ୍ନ | ସମ୍ପନ୍ନ |
|---|---|---|---|---|
| ୧ମ ପୁରୁଷ | ଏକବଚନ | ଖାଇଁ | ଖାଉଛଇଁ | ଖାଇଛଇଁ |
| ,, ,, | ବହୁବଚନ | ଖାଉଁ | ଖାଉଛୁଁ | ଖାଇଛୁଁ |
| ୨ୟ ପୁରୁଷ | ଏକବଚନ | ଖାସ୍ | ଖାଉଛସ୍ | ଖାଇଛସ୍ |
| ,, ,, | ବହୁବଚନ | ଖାଉ | ଖାଉଛ | ଖାଇଛନ୍ |
| ୩ୟ ପୁରୁଷ | ଏକବଚନ | ଖାଇ | ଖାଉଛୁ | ଖାଇଛୁ |
| ,, ,, | ବହୁବଚନ | ଖାନ୍ | ଖାଉଛନ୍ | ଖାଇଛନ୍ |

**ଭବିଷ୍ୟତ କାଳ—**

| ପୁରୁଷ | ବଚନ | ଶୁଦ୍ଧ | ଅସମ୍ପନ୍ନ | ସମ୍ପନ୍ନ |
|---|---|---|---|---|
| ୧ମ ପୁରୁଷ | ଏକବଚନ | ଖାଇବ | ଖାଉଥିବ | ଖାଇଥିବ |
| ,, ,, | ବହୁବଚନ | ଖାଇମୁ | ଖାଉଥିମୁ | ଖାଇଥିମୁ |
| ୨ୟ ପୁରୁଷ | ଏକବଚନ | ଖାଇବେ | ଖାଉଥିବେ | ଖାଇଥିବେ |
| ,, ,, | ବହୁବଚନ | ଖାଇବ | ଖାଉଥିବ | ଖାଇଥିବ |
| ୩ୟ ପୁରୁଷ | ଏକବଚନ | ଖାଇଆକ୍ | ଖାଉଥିଆକ୍ | ଖାଇଥିଆକ୍ |
| ,, ,, | ବହୁବଚନ | ଖାଇମେଇଁ | ଖାଉଥିମେଇଁ | ଖାଇଥିମେଇଁ |

**ସମ୍ଭାବ୍ୟ—**

| ପୁରୁଷ | ବଚନ | ଶୁଦ୍ଧ | ଅସମ୍ପନ୍ନ | ସମ୍ପନ୍ନ |
|---|---|---|---|---|
| ୧ମ ପୁରୁଷ | ଏକବଚନ | ଖାଇଢ | ଖାଉଥିଢ | ଖାଇଥିଢ |
| ,, ,, | ବହୁବଚନ | ଖାଇରୁଁ | ଖାଉଥିରୁଁ | ଖାଇଥିରୁଁ |
| ୨ୟ ପୁରୁଷ | ଏକବଚନ | ଖାଇତେ | ଖାଉଥିତେ | ଖାଇଥିତେ |
| ,, ,, | ବହୁବଚନ | ଖାଇତ | ଖାଉଥିତ | ଖାଇଥିତ |
| ୩ୟ ପୁରୁଷ | ଏକବଚନ | ଖାଇତା | ଖାଉଥିତା | ଖାଇଥିତା |
| ,, ,, | ବହୁବଚନ | ଖାଉତେଇଁ | ଖାଇଥିତେଇଁ | ଖାଇଥିତେଇଁ |

| ପ୍ରାମାଣିକ ଓଡ଼ିଆ | ସିଂହଭୂମି ଓଡ଼ିଆ |
|---|---|
| ଆଉ | ମାନାର୍ |
| ଜହ୍ନି | ଝିଙ୍ଗା |
| ଝୁଡ଼ଙ୍ଗ, ବରଗୁଡ଼ା | ବୁହ୍ନା |

| ପ୍ରାମାଣିକ ଓଡ଼ିଆ | ସିଂହଭୂମି ଓଡ଼ିଆ |
|---|---|
| ଧୋତି | ପିନ୍ଧା |
| କବାଟ | ଟାଟି, କବାଟ |
| ଝରକା | ଜାଲଣା |
| ଏଣ୍ଡୁଅ | କେଂକଟ୍ |
| ହାଡ଼ | ଆଳି |
| ଅଖା | ବୋରା |
| ଖଟା | ଚେଂକା |
| ମିଠା | ସୁଆଦ୍ |
| ସୋରଷତେଲ | ଭଲ୍ ତେଲ୍ |
| ମାନସିକ | ଶହଣି |
| ବେଙ୍ଗଲା | ମଡ଼ା |
| ଡାଳ | ଡଣ୍ଟି |
| ଡାଣ୍ଟିଆ | ଗିନା |
| ଦର୍ପଣ | ଆର୍ସି |
| ବୟସ | ବରଷ୍ |
| ରକ୍ତ | ରକତ୍ |
| ଦାସକାଠିଆ, ଘାମକାଠି | ଘାମଠିଲକା, ଦାସକାଠିଆ |
| ପବନ | ହାବା |
| ପୋଲ | ପୁଲ |
| ଦମାକ୍ | ଦମାଗ୍ |
| ଝାଡ଼ୁଆ | ଗଉଡ଼ |
| ଭଜି | ଭଉଣୀ |
| ଗାଇଁ | ଭଣୋଇ ଇତ୍ୟାଦି । |

ସିଂହଭୂମର ଓଡ଼ିଆ ଭାଷାରେ ଉତ୍କୃଷ୍ଟ ସାହିତ୍ୟ ସୃଷ୍ଟି ହୋଇନାହିଁ ସତ କିନ୍ତୁ ସିଂହଭୂମି ଭାଷାର ପ୍ରାଚୀନ ଢଗ, ଢମାଳି, ପ୍ରବଚନ, ଲୋକଗୀତ, ଲୋକ କାହାଣୀ ରହିଛି । ଯେଉଁଥିରେ କି ସିଂହଭୂମିର ଓଡ଼ିଆ ଲୋକଙ୍କର ନିତ୍ୟ ପ୍ରଚଳିତ ଭାଷାର ଦୃଷ୍ଟାନ୍ତ ମିଳିଥାଏ । ଅଧ୍ୟାପକ ଡଃ କୁଞ୍ଜବିହାରୀ ଦାଶଙ୍କର ଗଭୀର ପ୍ରଚେଷ୍ଟା ଫଳରେ ସିଂହଭୂମର ଯେଉଁ କେତେକ ଲୋକଗୀତ ଓ ଲୋକଗଳ୍ପ ସଂଗ୍ରହ ହୋଇଛି ସେଥିରେ ସିଂହଭୂମ ଭାଷାର ଶବ୍ଦ ତା'ର ସ୍ୱାତନ୍ତ୍ର୍ୟ ରକ୍ଷା କରିଛି । ଯଥା—

"ଝାଡ଼ୁଆ ସାଇରେ କାଳିଆ ଘୋଡ଼ା
କିଏ ବାନ୍ଧିଦେବ ଲେଟୁଣି ଜୁଡ଼ା ?
ଭଜି ରେ ।"

ଝାଡ଼ୁଆ—ଗଉଡ଼, କାଳିଆ—କଳା, ଭଜି—ଭଉଣୀ, ଇତ୍ୟାଦି ।

ଏତଦ୍ ବ୍ୟତୀତ ସିଂହଭୂମ ଜିଲାର ପୂର୍ବାଞ୍ଚଳ ବଙ୍ଗଳାର ଅତି ନିକଟବର୍ତ୍ତୀ ଘାଟ-ଶୀଳା, ବହଡ଼ାଗୋଡ଼ା ଓ ଚାକୁଳିଆ ଇତ୍ୟାଦି ଅଞ୍ଚଳମାନଙ୍କରେ କଥିତ ହେଉଥିବା ଓଡ଼ିଆ ଭାଷାର ମଧ୍ୟ ନିଜସ୍ୱ ବିଶେଷତ୍ୱ ରହିଛି । ଓଡ଼ିଆ ଭାଷାଦ୍ୱାରା ବିଶେଷଭାବେ ଏହି ଭାଷା ପ୍ରଭାବିତ ହୋଇଅଛି । ବଙ୍ଗଳା ଭାଷାର ଜଣେ ସମାଲୋଚକ ଡଃ ଧୀରେନ୍ଦ୍ରନାଥ ସାହାଙ୍କ ମତରେ—"ଏହି ଉପଭାଷା ଉପରେ ଓଡ଼ିଆର ପ୍ରଭାବ ଦୀର୍ଘପ୍ରସାରୀ । ଓଡ଼ିଆର ଏହି ପ୍ରଭାବା-ଧିକ୍ୟ ଫଳରେ ଏହାକୁ ଓଡ଼ିଆର ବିଭାଷା ବୋଲି ମନେହେଲେ ମଧ୍ୟ ଏହି ଉପଭାଷାକୁ ଓଡ଼ିଆର ଅଙ୍ଗଗତ କରାଯାଏ ନାହିଁ ।" (10)

ଏହି ଅଞ୍ଚଳମାନଙ୍କରେ କଥିତ ହେଉଥିବା ଓଡ଼ିଆ ଭାଷା ପ୍ରାମାଣିକ ଓଡ଼ିଆ ଭାଷାର ଯେ କେତେ ନିକଟବର୍ତ୍ତୀ ତାହା କେତେକ ଉଦାହରଣରୁ ସ୍ପଷ୍ଟ ହେବ ।

୧ । ଘାଟଶୀଳା ଅଞ୍ଚଳରେ କଥିତ ଓଡ଼ିଆ :—

"ଏକ ଲୋକର ଚାରଟା ପୁଅ ଥିଲା । ଚାର ପୁଅ ଖୁବ କୁଢ଼ିଆ । ଯେତେ ଖଣେ ସେଇ ଲୋକଟାର ମରିବାର ସମୟ ହେଲା, ସେତେ ଖଣେ ତାର ପୁଅ ପାସକେ ଡାକ କରି କହିଲା, "ଦେଖୋ, ଜେ ଖେତଟା ଆମ୍ହେ ଜୋତ କରୁଛୁଁ ସେଇ ଖେତଟା ଅନେକ ଟାକା ରୂପୀ ରଖିଛୁଁ । ମୁଁ ଇ ମରିଗେଲେ, ସେଇ ଖେତକେ ମାଟି କୁଲ ଗାଡ଼ା ତାଡ଼ିବୋ । କେଣୀ ଜାଇଗାଇ ନାଇ କେଣୀ ଜାଇଗାଇ ଧନ ଜରୁର ମିଲିବୋ ।" (11)

୨ । ବହଡ଼ାଗୋଡ଼ା ଅଞ୍ଚଳର କଥିତ ଓଡ଼ିଆ—

"ତାକର ଚାରଟୀ ଟୋକା ଥିଲା । ଚାରୋଟିଜାକୁ ଅଲସୁଆ ଥିଲେ । ଜଖଣ ତାଙ୍କର ମରିବାର ସମୟ ହେଲା ତାଙ୍କର ଟୋକାମାନଙ୍କୁ ଡାକ କରି କହିଲେ, "ଦେଖ ନେଁ । ଜମିଟାଇ ଆମ୍ହର ଚାଷ କରୁଛୁ, ସେଇଟାର ଭିତରେ ଟଂକା ପୁତା ଅଛି । ମୁଁ ଇ ମରିବାର ପରେ ତୁମ୍ହରମାନେ ଗମ୍ଭୀର କରି ତାଡ଼ । କାହିଁ ନାହିଁ କାହିଁ ତୁମ୍ହରମାନେ ସେଇ ଟଂକା ପାଇଜିବ ।" (12)

୩ । ଚାକୁଳିଆ ଅଂଚଳର କଥିତ ଓଡ଼ିଆ—

ଗୁଟେ ମୁନିସର ଚାରଟା ଟୋକା ଥିଲା । ଚାର ଟୋକା ବଲେ ଅଲସୁଆ ଥିନଇ । ଯେବେ ସେଇ ମୁନିସଟା ମରତେ ଥିଲା ସେଇ ସମୟ ତାର ଟୋକା ଗାକେ ପାସେ ଡାକି କରି କହିଲା—ଦେଖୋ ନେଁ । ଖେତଟା ମୋଇଁ ଚାସ କରୁଁ ସେଟାର ବଡ଼ ଧନ ଗଡ଼ା ହୋଇଛି । ମୋଇଁ ମରିଗଲେଁ ସେଟା କେ ଖୁନ୍ ଗାଡ଼ କଡ଼ବେ । କଁପିପାଥରେ ନିଚ୍ଛଇ ପାଇବେ ।"

## ସହାୟକ ଗ୍ରନ୍ଥ ସୂଚୀ—

1. ଓଡ଼ିଆ ଭାଷାତତ୍ତ୍ୱର ଭୂମିକା—ଡଃ. ବଂଶୀଧର ମହାନ୍ତି ପୃ: ୧୨୭, ୧୨୯ ।
2 ହେ ସାଥି ହେ ସାରଥି—ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀ. ପୃ: ୨୨୫-୨୨୭

3. ବିଚ୍ଛିନ୍ନ ଅଂଚଳର ଲୋକ ସଂସ୍କୃତି (ପ୍ରବନ୍ଧ)—ଅଧ୍ୟାପକ ଡଃ. କୁଞ୍ଜବିହାରୀ ଦାଶ ।
4. ଦୈନିକ ପତ୍ର 'ସମାଜ' ତା ୧-୪-୧୯୭୨. ପୃ: ୫
5. A History of Orissa—by W. W. Hunter, Andrew Stiring, John Beams and N. K. Sahu—Page No. 399.
6. History of Orissa—H. K. Mahatab—Page No.—478.
7. ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ—ପ. ଗୋଦାବରୀଶ ମିଶ୍ର ପୃ: ୨୦୫
8. Literature and Social life in Mediaeval Orissa—
Dr. K.C. Sahoo. Page No.-103
9. ଅର୍ଦ୍ଧଶତାବ୍ଦୀର ଓଡ଼ିଆ ଓ ତହିଁରେ ମୋ ସ୍ଥାନ—ଗୋଦାବରୀଶ ମିଶ୍ର ପୃ: ୨୦୨
10. ଭାଷାତତ୍ତ୍ୱ ଓ ଭାରତୀୟ ଆର୍ଯ୍ୟଭାଷା—ଡଃ. ଧୀରେନ୍ଦ୍ର ନାଥ ଶାହା—ପୃ: ୨୪୦
11. Linguistic Survey of Sardar Subdivision of Manbhum & Dalbhum (Singhbhum) by—Bishwanath Prasad & Sudhakar Jha Shatri— P. No. 27
12. Linguistic Survey of Sardar Subdivision of Manbhum & Dalbhum (Singhbhum) by—Bishwanath Prasad & Sudhakar Jha Shastri—P. No. 28.
13. Linguistic of Survey of Sardar Subdivision of Manbhum & Dalbhum (Singhbhum) by—Biswanath Prasad & Sudhakar Jha Shatri—P, No. 29.

---

# ଓଡ଼ିଆ ଜୀବନୀ ସାହିତ୍ୟ

ଗୀତା ଉଦ୍‌ଗାତା

ବ୍ୟକ୍ତି ବିଶେଷଙ୍କ ଜୀବନୀ ଯେଉଁ ସାହିତ୍ୟରେ ରୂପାୟିତ ହୁଏ ସେ ସାହିତ୍ୟ ହୁଏ ଜୀବନୀ ସାହିତ୍ୟ । କୌଣସି ସୁ ଲେଖକଙ୍କ ଲେଖା ପଢ଼ିଲେ ସାଧାରଣତଃ ସେହି ଲେଖକଙ୍କ ବିଷୟରେ ଅନେକ କିଛି ଜାଣିବା ପାଇଁ ପ୍ରବୃତ୍ତି ଜାତ ହୁଏ । ଏହି ପ୍ରବୃତ୍ତି ହିଁ କେତେକ ପରିମାଣରେ ଜୀବନୀ ସାହିତ୍ୟ ସୃଷ୍ଟିର ପ୍ରେରକ ହୋଇପାରେ । କିନ୍ତୁ ଯୋଗଜନ୍ମା ମହା-ମନୀଷୀଙ୍କ କର୍ମ ଏବଂ ବାଣୀକୁ ଚିରକାଳ ବଞ୍ଚେଇ ରଖିବାର ପ୍ରେରଣା ହେଉଛି ଜୀବନୀ ସାହିତ୍ୟ ସୃଷ୍ଟିର ମୁଖ୍ୟ ଉଦ୍ଦେଶ୍ୟ । ଯୁଗେ ଯୁଗେ କେତେ କ୍ଷଣଜନ୍ମା ମହାପୁରୁଷ, ପ୍ରତିଭା-ବାନ ବ୍ୟକ୍ତି ନିଜସ୍ୱ ସୁରଭିରେ ସମଗ୍ର ଜଗତକୁ ସୁରଭିତ କରି ଯାଇଅଛନ୍ତି । କେତେ ବୀର, ଦେଶ ବତ୍ସଳ, ଜାତୀୟବାଦୀ ନେତା ସ୍ୱୀୟ ବୀରତ୍ୱରେ, ଜାତୀୟତାରେ ଦେଶବାସୀଙ୍କୁ ମୁଗ୍ଧ କରି ଅଛନ୍ତି । ଦେଶ ପାଇଁ, ଜାତି ପାଇଁ ନିଜ ଜୀବନକୁ ତିଳ ତିଳ କରି ଉତ୍ସର୍ଗ କରି ଅଛନ୍ତି । ମାନବ ସେବା ଓ ଜାତି, ତଥା ଦେଶର ସେବାରେ ସେମାନେ ନିଜକୁ ସମ୍ପୂର୍ଣ୍ଣ ଭାବେ ଭୁଲିଯାଇ ଅଛନ୍ତି । ସେହି କର୍ମହିଁ ସେମାନଙ୍କୁ କରିଛି ଚିର ଅମର । "ଜାତସ୍ୟ ହି ଧ୍ରୁବୋ ମୃତ୍ୟୁ ମୃତୋ ଜନ୍ମ ଧ୍ରୁବସ୍ୟ ଚ" ନିୟମର ଲଂଘନ କରି ଏମାନେ ହୋଇଛନ୍ତି କାଳଜୟୀ, ମୃତ୍ୟୁଞ୍ଜୟୀ । ମୃତ୍ୟୁ ସେମାନଙ୍କ ଅକ୍ଷୟ ପବିତ୍ର ଆତ୍ମାକୁ ସ୍ପର୍ଶ କରି ପାରିନି । ଜାତି ତାଙ୍କୁ ଭୁଲିନି, ଭୁଲି ପାରିବନି । ରକ୍ତ ରଞ୍ଜିତ କେତେ ସଭ୍ୟ ରାଜ୍ୟ ବିଲୁପ୍ତ ହୋଇଛି । କେତେ ସୌଧ ଧ୍ୱଂସପ୍ରାପ୍ତ ହୋଇ ଯାଇଛି, କିନ୍ତୁ ସାହିତ୍ୟରେ ଯାହା ଥରେ ସ୍ଥାନ ପାଇଛି ତାହା ରହିଛି ଚିରକାଳ ପାଇଁ । ପ୍ରତିଭାବାନ ବ୍ୟକ୍ତି ତାର ଜୀବଦ୍ଦଶାରେ ଯେତିକି ସମ୍ମାନ ପାଏ, ମୃତ୍ୟୁ ପରେ କିନ୍ତୁ ତାଠାରୁ ଅଧିକ ସମ୍ମାନ ପାଏ ଲୋକଙ୍କ ହୃଦୟରେ ଏକ ଅଲଭାଗାର ସୃଷ୍ଟି କରି । ଜାତି ସେହିମାନଙ୍କ ଜୀବନୀ, କର୍ମ ଓ ବାଣୀକୁ ସାହିତ୍ୟରେ ଚିରଦିନ ବଞ୍ଚାଇ ରଖେ, ସଞ୍ଚାଇ ରଖେ । ଏହିମାନଙ୍କ ଜୀବନୀ ରଚନା କରିବାରେ ସାହିତ୍ୟ ହୁଏ ଗୌରବାନ୍ୱିତ, ଲେଖକ ନିଜ କଲମ ମୁନରେ ଏମାନଙ୍କ ଜୀବନୀ ରଚନା କଲାବେଳେ ନିଜକୁ ସୌଭାଗ୍ୟବାନ୍ ମନେ କରେ । ଏହି ଭଳି ଏକ ମହତ୍ ଉଦ୍ଦେଶ୍ୟ ନେଇ ଜୀବନୀ ସାହିତ୍ୟରେ ସୃଷ୍ଟି । ଜୀବନୀ ସାହିତ୍ୟ ଦୁଇ ଭାଗରେ ବିଭକ୍ତ । ୧ । ଜୀବନୀ ( Biography ) ୨ । ଆତ୍ମ ଜୀବନୀ ( Autobiography ) । ଜଣେ ବ୍ୟକ୍ତି ଅନ୍ୟ ଜଣେ ବ୍ୟକ୍ତିର ଜୀବନୀ ରଚନା କଲେ ତାହା ହୁଏ Biography କିନ୍ତୁ ଜଣେ ବ୍ୟକ୍ତି ନିଜେ ନିଜର ଜୀବନ ରଚନା କଲେ ତାହା ହୁଏ Autobiography ।

ଜୀବନୀ ସାହିତ୍ୟକୁ ଏକ ସର୍ବଶ୍ରେଷ୍ଠ କଳାଭାବେ, ତଥା ସର୍ବାଙ୍ଗ ସୁନ୍ଦର କରି ଗଢ଼ିବା ପାଇଁ କେତୋଟି ଦିଗ ପ୍ରତି ଦୃଷ୍ଟି ଦେବା ଆବଶ୍ୟକ । ଯଥା—

ଜୀବନୀ ସାହିତ୍ୟ ଏପରି ହେବା ଉଚିତ ଯେଉଁଥିରୁ କି ପ୍ରକୃତ ରକ୍ତମାଂସଧାରୀ ମନୁଷ୍ୟର ମୂର୍ତ୍ତି ଫୁଟି ଉଠୁଥିବ ।

ଜୀବନୀ ସାହିତ୍ୟ କେବଳ ଜୀବନର କେତେକ ବିଶିଷ୍ଟ ଘଟଣା ତଥା ଜନ୍ମମୃତ୍ୟୁର ଟିପାଖାତା ହେବ ନାହିଁ । ସୁରେନ୍ଦ୍ର ମହାନ୍ତିଙ୍କ ମତରେ, "ବସ୍ତୁତଃ ଜୀବନ ଚରିତ ସାଲସନ ତାରିଖର ଫର୍ମା ଭିତରେ ବନ୍ଧା ଏକ ଶୁଷ୍କ ନିଷ୍ପ୍ରାଣ ତଥ୍ୟର ସମାହାର ନୁହେଁ, ପ୍ରତ୍ୟେକ ଘଟଣାର ନେପଥ୍ୟରେ ରହିଥାଏ ଜୀବନର ଗଭୀର ସ୍ପନ୍ଦନ ।" ଜୀବନୀ ନାୟକର ବ୍ୟକ୍ତିତ୍ୱ ସେହି ଯୁଗକୁ ନେଇ ଚିତ୍ରିତ ହେବ ନାହିଁ ତାହା ହେବ ସାର୍ବଯୁଗୀନ ସାର୍ବଜନୀନ ଯାହାକି ସବୁ ସମୟରେ ପ୍ରଭାବିତ କରିପାରୁଥିବ । ଯାହା ବିଷୟରେ ଜୀବନୀ ଲେଖାଯିବ ତା ପ୍ରତି ଶ୍ରଦ୍ଧା ତଥା ସମ୍ମାନ ଏବଂ ସହାନୁଭୂତି ଥିବ । ନ ହେଲେ ସେହି ଜୀବନୀରେ କେବଳ ଦୋଷ ଓ ଦୁର୍ବଳତା ଚିତ୍ରିତ ହେବ । ଜୀବନୀ ଲେଖକର ସହାନୁଭୂତି ଗୁଣଟି ଅତ୍ୟାବଶ୍ୟକ । ସମାଲୋଚକ Hudsonଙ୍କ ମତରେ, "To reach the best in literature as in life, sympathy is a preliminary condition, only through sympathy can we ever get into living touch with another soul." ଜୀବନୀ ଯାହା ବିଷୟରେ ଲେଖାଯିବ ତା ସହିତ ବାସ୍ତବ କ୍ଷେତ୍ରରେ ଲେଖକର ସମ୍ବନ୍ଧ ଥିବା ଆବଶ୍ୟକ । ତା ହେଲେ ଜୀବନୀ ଅନେକାଂଶରେ ପ୍ରକୃତ ତଥା ବାସ୍ତବ ରୂପ ଧାରଣ କରିବ । Carlyle ଏହି ସମ୍ପର୍କରେ ଏକ ସୁନ୍ଦର ମତ ପ୍ରଦାନ କରି ଅଛନ୍ତି । ସେ ମତଟି ହେଉଛି, "You cannot look upon a greatman however imperfectly without gaining something by his contact." ଜୀବନୀ ଲେଖକ ବିଗ୍ଭରବନ୍ତ ଭାବେ କାର୍ଯ୍ୟକରି ଜୀବନୀ ରଚନା କରିବା ଆବଶ୍ୟକ । ଆବଶ୍ୟକୀୟ ତଥ୍ୟକୁ ସ୍ଥାନ ଦେଇ ଅନାବଶ୍ୟକକୁ ବାଦ୍ ଦେବା ପାଇଁ ପଡ଼ିବ ।

ଜୀବନୀ ରଚନା ଏକ କଷ୍ଟସାଧ୍ୟ କଳା । ତାହା ସଂଗ୍ରହ କରିବା ସମୟରେ ଲେଖକ ଅନେକ ଅସୁବିଧାର ସମ୍ମୁଖୀନ ହୁଏ । ତେଣୁ ଲେଖକ ଧୈର୍ଯ୍ୟଶୀଳ ହୋଇ, ଆଗ୍ରହ ପ୍ରକାଶ କରି ପ୍ରକୃତ ସତ୍ୟର ଉଦ୍‌ଘାଟନ କରିବା ଆବଶ୍ୟକ ନଚେତ୍ ଜୀବନୀ କେବଳ ମିଥ୍ୟାରେ ପୂର୍ଣ୍ଣ ହୋଇଯିବାର ସମ୍ଭାବନା ଥାଏ ।

ଜୀବନୀକାର ତତ୍କାଳୀନ ସମାଜ ସଚେତନ ହୋଇଥିବା ଆବଶ୍ୟକ । ଚରିତ୍ର ଗଠନ, ସମସାମୟିକ ଅନ୍ୟାନ୍ୟ ବିଶିଷ୍ଟ ବ୍ୟକ୍ତିଙ୍କ ବିଷୟରେ ମଧ୍ୟ ଲେଖିବାକୁ ହେବ । କେବଳ ବୀର ପୂଜାରେ ବିମୂଢ଼ ହେବା ମୂର୍ଖତାର ପରିଚାୟକ ହେବ ।

ନିଜ ବିଷୟରେ ଜୀବନୀ ଭିତରେ କହିବା ଅନାବଶ୍ୟକ । ଜୀବନୀରେ ଦୋଷ, ତ୍ରୁଟି ବର୍ଜ୍ଜିତ ହୋଇଥିବ ନଚେତ ଜୀବନୀ କେବଳ ଆଦର୍ଶ ପ୍ରଗ୍ଭରର ସ୍ଥଳୀ ହୋଇଯିବ । ସାହିତ୍ୟ ଏକ ଶିଳ୍ପାତ୍ମକ କଳା । ଆଦର୍ଶର ବହୁଳ ପ୍ରଗ୍ଭରରେ ତା' ଶୃଙ୍ଖଳା ଓ ସୌନ୍ଦର୍ଯ୍ୟ ତିରୋହିତ ହୋଇଯାଏ ।

ଜୀବନୀ ରଚୟିତା ଜୀବନୀ ରଚନା କରିବା ସମୟରେ ନିଜର ସ୍ୱାର୍ଥକୁ ସମ୍ପୂର୍ଣ୍ଣଭାବେ ବଳିଦେବା ଆବଶ୍ୟକ । ତାହେଲେ ପ୍ରକୃତ ଜୀବନୀ ସାହିତ୍ୟ ସୃଷ୍ଟି ହୋଇପାରିବ ।

ନିଜ ଜୀବନୀ ନିଜେ ଲେଖିବା ଦ୍ୱାରା ସେଥିରେ ସମସ୍ତ ବିବରଣ ପ୍ରକାଶ ପାଇ ପାରିବ । ଆତ୍ମଜୀବନୀରେ ଲେଖକଙ୍କ ଜୀବନର ପରିବାର, ଆଦର୍ଶ, ରୀତିନୀତି ବିଷୟରେ ସମ୍ପୂର୍ଣ୍ଣ ଧାରଣା କରିହୁଏ ଏବଂ ଅନେକ ସତ୍ୟ ଘଟଣା ପ୍ରକାଶିତ ହେବାର ସୁଯୋଗ ଥାଏ । ଜନ୍‌ସନ୍‌ଙ୍କ ଏହି ବିଷୟରେ ଏକ ମତ ହେଉଛି, "Every man's life may be best written by himself, had he be employed in the presentation of his own history, that clearness of narration and eloquence of knowledge in which he has embalmed so many eminent persons, the world probably have had the most perfect example of biography that was ever contributed".

ଭାରତୀୟ ସାହିତ୍ୟରେ ଜୀବନୀ ରଚନା ସମ୍ପୂର୍ଣ୍ଣ ଅଜ୍ଞାତ ନ ଥିଲା । କିନ୍ତୁ ତାର ଉଦ୍ଦେଶ୍ୟ ଥିଲା କେବଳ ଧର୍ମ ପ୍ରଚାର କରିବା । ଅଶ୍ୱଘୋଷଙ୍କର ବୁଦ୍ଧ-ଚରିତ ସର୍ବପ୍ରଥମ ଜୀବନୀ ବୋଲି ମନେହୁଏ । ବଙ୍ଗଳାରେ ଚୈତନ୍ୟ-ଚରିତାମୃତ ସେହିଭଳି ସର୍ବପ୍ରଥମ । ପରବର୍ତ୍ତୀ କାଳରେ ଅନେକ ଜୀବନୀ ରଚିତ ହୋଇଅଛି ।

ଓଡ଼ିଆ ସାହିତ୍ୟରେ ଜୀବନୀ ଧାରାଟି ସମ୍ପୂର୍ଣ୍ଣ ଦୁର୍ବଳ ତଥା ଅର୍ବାଚୀନ ମନେହୁଏ । ଓଡ଼ିଆ ସାହିତ୍ୟର ଆଦିଯୁଗ ଓ ମଧ୍ୟଯୁଗ ସାଧାରଣତଃ ପୌରାଣିକତା ଓ କାଳ୍ପନିକତାକୁ ନେଇ ପର୍ଯ୍ୟବସିତ ଥିଲା । ଓଡିଶାର ସରଳ, ତରଳ, ଜନଜୀବନ ଧର୍ମକୁ ଆବୋରି ନେଇ ସୃଷ୍ଟି କରିଥିଲା ଧର୍ମ ସାହିତ୍ୟ । ସ୍ୱଚ୍ଛନ୍ଦ, ସମସ୍ୟାହୀନ ଲୋକମନ କଳ୍ପନାରେ ଭାସିଗଲା, କଳ୍ପନାରେ ଦେବତାଙ୍କୁ ଅବତରଣ କରାଇ ସୃଷ୍ଟି କରିଥିଲା କାଳ୍ପନିକ ସାହିତ୍ୟ, ପୁରାଣ ସାହିତ୍ୟ । ଏହି ସାହିତ୍ୟର ଚରିତ୍ରଗୁଡ଼ିକ ଥିଲେ କାଳ୍ପନିକ ଦେବଲୋକର ଶିବ, ଦୁର୍ଗା, ରାମ, ସୀତା ପ୍ରଭୃତି ଦେବଦେବୀମାନେ । ଓଡ଼ିଆ ସାହିତ୍ୟର ପ୍ରଥମ ଗଦ୍ୟରଚନା "ମାଦଳା ପାଞ୍ଜି"ରୁ ଅନେକ ରାଜାଙ୍କ ବିବରଣୀ ମିଳେ କିନ୍ତୁ ତାହା ସାହିତ୍ୟ ପର୍ଯ୍ୟାୟଭୁକ୍ତ ନ ହୋଇ ହେବ ଇତିହାସର । ଦିବାକର ଦାସଙ୍କ 'ଜଗନ୍ନାଥ ଚରିତାମୃତ' ହେଉଛି ଓଡ଼ିଆ ସାହିତ୍ୟର ପ୍ରଥମ ଚରିତ ସାହିତ୍ୟ । ସପ୍ତଦଶ ଶତକରେ ଏହା ପଦ୍ୟରେ ରଚିତ । ଜଗନ୍ନାଥଙ୍କ ଜୀବନୀ ବର୍ଣ୍ଣନା ହେବା ସଙ୍ଗେ ସଙ୍ଗେ ଏଥିରେ ଅନ୍ୟାନ୍ୟ ବହୁ କବି ତଥା ଭକ୍ତଙ୍କ ଜୀବନୀ ରୂପାୟିତ ହୋଇଅଛି ।

ପଦ୍ୟମୂଳକ ରଚନାର ପର୍ଯ୍ୟାୟଭୁକ୍ତ ହୋଇଥିବା ଦାର୍ଢ୍ୟତାଭକ୍ତି ଏକ ଶ୍ରେଷ୍ଠ କୃତୀ । ଓଡ଼ିଆ ସାହିତ୍ୟର ଅମଳିନ, ଚିର ସଜୀବ ଏହି ଭକ୍ତ ଜୀବନୀମାଳା ରାମଦାସଙ୍କ ଦ୍ୱାରା ଲିଖିତ । ସହଜ, ସରଳ, ବୋଧ ଭାଷାରେ ଏହା ରଚିତ ହୋଇଅଛି ଓ ୫୦ ଜଣ ଭକ୍ତଙ୍କ ଜୀବନୀ ଏଥିରେ ସନ୍ନିବେଶିତ ହୋଇଅଛି । ସେହି ଅଷ୍ଟାଦଶ ଊନବିଂଶ ଶତାବ୍ଦୀ ମଧ୍ୟରେ ଦେବ-ଦେବୀ, ରାଜା ରାଣୀ ଓ କୁମାର କୁମାରୀଙ୍କୁ ନେଇ ଅନେକ ଅଲୌକିକ କାବ୍ୟ ରଚିତ ହୋଇଅଛି । ସେଥିରେ ସେମାନଙ୍କର ବାଲ୍ୟ, ପୌଗଣ୍ଡ, କୈଶୋର, ଯୌବନ, ପ୍ରଣୟ ଓ

ବିବାହ, ଅଗ୍ନି ଦୁର୍ଗ ଇତ୍ୟାଦି ଚର୍ଚ୍ଚିତ ହୋଇଅଛି । ଏହି ସମୟର ଅନ୍ୟ ଏକ ଜୀବନୀଗ୍ରନ୍ଥ ହେଉଅଛି ଈଶ୍ୱର ଦାସଙ୍କ 'ଚୈତନ୍ୟ-ଚରିତାମୃତ' । ଏତଦ୍ ବ୍ୟତୀତ ଓଡ଼ିଆ ସାହିତ୍ୟର ପ୍ରାଚୀନ ତଥା ମଧ୍ୟ ଯୁଗରେ ଅନ୍ୟ କୌଣସି ଜୀବନ ଚରିତ ଦୃଷ୍ଟିଗୋଚର ହୁଏନାହିଁ ।

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଜାତୀୟ ଜାଗରଣ ଫଳରେ ଭାରତରେ ଅନେକ ବୀର, ନେତାଙ୍କ ଜୀବନୀ ରଚିତ ହେଲା । ଏହି ସମୟରେ ଭାରତ ବର୍ଷରେ ଜୀବନୀ ସାହିତ୍ୟର ବିକାଶ ସଙ୍ଗେ ସଙ୍ଗେ ଓଡ଼ିଶାରେ ମଧ୍ୟ ଏହାର ଅଭିବୃଦ୍ଧି ଘଟିଲା । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଗଦ୍ୟ ସାହିତ୍ୟର ବିକାଶ ସଙ୍ଗେ ସଙ୍ଗେ ଓଡ଼ିଶାରେ ବିସ୍ତାର ଲାଭ କଲା ଉପନ୍ୟାସ ସାହିତ୍ୟ, କାହାଣୀ, କ୍ଷୁଦ୍ରଗଳ୍ପ, କବିତା, ଭ୍ରମଣ ସାହିତ୍ୟ, ପ୍ରବନ୍ଧ ସାହିତ୍ୟ ଓ ଜୀବନୀ ସାହିତ୍ୟ । ଓଡ଼ିଆ ମାନସରେ ପ୍ରତିଭା ପ୍ରକାର ସ୍ଫୁରଣ ଘଟିଲା । ଜୀବନୀ ସାହିତ୍ୟର ଉପାଦେୟତା ପଦେ ପଦେ ଉପଲବ୍ଧି କଲା ଓଡ଼ିଆ ଜାତି । ଆଦର୍ଶର ପ୍ରଚାର ପାଇଁ ଭକ୍ତ କବି ମଧୁସୂଦନ ଜୀବନୀ ସାହିତ୍ୟକୁ ପ୍ରଥମ ପଦକ୍ଷେପ ଭାବେ ଗ୍ରହଣ କଲେ ଓ ଶିଶୁମାନଙ୍କୁ ଉଦ୍‌ବୁଦ୍ଧ କରିବା ପାଇଁ ଦେଶର ଅନେକ ବୀର ପୁରୁଷ, ଜାତୀୟ ନେତା ପ୍ରଭୃତିଙ୍କ ଜୀବନୀମାନ ରଚନା କଲେ । ଦ୍ୱିତୀୟ ଜୀବନୀ ରଚୟିତା ହେଉଛନ୍ତି ହରିଶ୍ଚନ୍ଦ୍ର ସରକାର । ତାଙ୍କର 'ଶିବାଜୀ' ନାମକ ଏକ ଜୀବନୀ ୧୮୮୯ରେ ବାଲେଶ୍ୱରରେ ପ୍ରକାଶିତ ହୋଇଥିଲା ।

ବିଂଶ ଶତାବ୍ଦୀର ପ୍ରଥମ ଭାଗ ହିଁ ସାହିତ୍ୟ ଜଗତରେ ସର୍ବାଙ୍ଗୀନ ଉନ୍ନତି ସାଧନର ଶତାବ୍ଦୀ । ଏହି ଶତାବ୍ଦୀରେ ଲେଖକ, ତଥା ଓଡ଼ିଆ ଜାତି ଜୀବନୀ ସାହିତ୍ୟ ପ୍ରତି ବିଶେଷ ଆଗ୍ରହୀ ହୋଇ ଦେଶ ଓ ଜାତିର ମହାନ୍ ବୀର, ତ୍ୟାଗୀ ନେତା, ବିଶିଷ୍ଟ ସାହିତ୍ୟିକଙ୍କ ଜୀବନୀ ରଚନା କରିବାକୁ ଲାଗିଲା । ବିଂଶ ଶତାବ୍ଦୀର ସଭ୍ୟ ତଥା ଆଧୁନିକ ଓଡ଼ିଆ ମାନବ ମର୍ମେ ମର୍ମେ ଉପଲବ୍ଧି କଲା—

> "Lives of Great men all remind us,
> We can make our lives sublime.
> And departing leave behind us
> Footprints on the sands of time".
>
> (Longfellow)

ଏହି ମନ୍ତ୍ର ହିଁ ଓଡ଼ିଆ ଜାତିର ପ୍ରାଣରେ ଜଗାଇ ଥିଲା ଉନ୍ମାଦନା, ତା ଲେଖନୀରେ ଭରିଥିଲା ଉତ୍ସାହ । ତା ଲେଖନୀ ତା ଜାତି ଓ ଦେଶର ଯୋଗଜନ୍ମା ବୀର ପୁରୁଷ ତଥା ସାହିତ୍ୟିକଙ୍କ ଜୀବନୀକୁ ରୂପାୟିତ କରିବା ପାଇଁ ଶତମୁଖୀ ହୋଇ ଉଠିଲା । ଏଠାରେ କର୍ମୀର ଅଭାବ ନାହିଁ, ନାହିଁ ଆଦର୍ଶ ଓ ସତ୍ୟର ଅଭାବ, ନାହିଁ ବୀର ଓ ଜାତିଦ୍ରୁମଙ୍କ ଅଭାବ । ତା ଦେଶର ଯୁଗମାନବଙ୍କ ଜୀବନୀକୁ ସାହିତ୍ୟରେ ରୂପାୟିତ କରି ଉପଯୁକ୍ତ ସମ୍ମାନ ପ୍ରଦର୍ଶିତ କଲା । ଏହି ସମୟରେ ଓଡ଼ିଆରେ ଅଗଣିତ ଜୀବନୀ ରଚନା ହୋଇଅଛି । ସେଗୁଡ଼ିକୁ କେତେକ ପର୍ଯ୍ୟାୟଭୁକ୍ତ କରାଯାଇପାରେ । ଯଥା—ଐତିହାସିକ, ସାହିତ୍ୟିକ, ଧାର୍ମିକ, ବୈଜ୍ଞାନିକ, ରାଜନୀତିକ ନେତାମାନଙ୍କର ଜୀବନୀ ଅନେକଙ୍କ କ୍ଷୁଦ୍ର ବୃହତ୍ ଆକାରରେ ଲିପିବଦ୍ଧ ହୋଇଅଛି ।

ଐତିହାସିକ ଜୀବନୀ ଦେଶର ବିଶିଷ୍ଟ ବୀରମାନଙ୍କୁ ନେଇ ରଚିତ ହେଲା । ଏମାନଙ୍କ ଜୀବନୀ ସ୍ୱତନ୍ତ୍ର ପୁସ୍ତକ ଆକାରରେ ଏବଂ ପ୍ରବନ୍ଧ ଆକାରରେ ପାଠ୍ୟପୁସ୍ତକମାନଙ୍କରେ ପ୍ରକାଶିତ ହେଲା । ସେମାନଙ୍କ ମଧ୍ୟରେ ନେପୋଲିୟନ୍, ଅଶୋକ, ଶିବାଜୀ, ଖାରବେଳ, ରାଣାପ୍ରତାପ, ଝାନ୍‌ସି ରାଣୀ ଲକ୍ଷ୍ମୀବାଈ, ବକ୍‌ସି ଜଗବନ୍ଧୁ, ବୀର ସୁରେନ୍ଦ୍ର ସାଏ, ବାଘା ଯତୀନ, କ୍ଷୁଦିରାମ ପ୍ରଭୃତି ବୀରମାନଙ୍କ ଜୀବନୀ ରଚିତ ହୋଇ ସେମାନଙ୍କର ବୀରତ୍ୱ ଓ ସାହସିକତାର ଏକ ସୁନ୍ଦର ଆଲେଖ୍ୟ ଜଗତ ସମ୍ମୁଖରେ ପ୍ରଦତ୍ତ ହୋଇଅଛି ।

ସାହିତ୍ୟର ସ୍ରଷ୍ଟା ଭାବରେ ଅନେକ ସାହିତ୍ୟିକଙ୍କ ଜୀବନୀ ଓଡ଼ିଆ ସାହିତ୍ୟରେ ରଚିତ ହୋଇଅଛି । ଷୋଡ଼ଶ, ଅଷ୍ଟାଦଶ ଶତାବ୍ଦୀଠାରୁ ଆରମ୍ଭ କରି ଏ ପର୍ଯ୍ୟନ୍ତ ବହୁ ସାହିତ୍ୟିକଙ୍କ ଜୀବନୀ ରଚିତ ହୋଇଅଛି । ମାଟିର ମହାକବି ସାରଳା ଦାସ, ଜଗନ୍ନାଥ ଦାସ, ବଳରାମ ଦାସ, ଯଶୋବନ୍ତ ଦାସ, ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ ସାମନ୍ତସିଂହାର, ଦୀନକୃଷ୍ଣ, କବିସୂର୍ଯ୍ୟ ବଳଦେବ ରଥ, ଗୋପାଳକୃଷ୍ଣ, ସାମନ୍ତ ଚନ୍ଦ୍ରଶେଖରଙ୍କ ଠାରୁ ଆରମ୍ଭ କରି ରାଧାନାଥ, ଫକୀର ମୋହନ, ମଧୁସୂଦନ ରାଓ, ନନ୍ଦକିଶୋର, ଗଙ୍ଗାଧର, ଲକ୍ଷ୍ମୀ ନାରାୟଣ ସାହୁ, ଗଣକବି ବୈଷ୍ଣବ ପାଣି, କବି ଗୋଦାବରୀଶ ମିଶ୍ର, ଗୋଦାବରୀଶ ମହାପାତ୍ର, ନୀଳକଣ୍ଠ ଦାସ, ସାହିତ୍ୟିକ ଗୋପବନ୍ଧୁ, କୁନ୍ତଳା କୁମାରୀ, ବ୍ରଜସୁନ୍ଦର ଦାସ, କବିଶେଖର ଚିନ୍ତାମଣି, ବିଚ୍ଛନ୍ଦଚରଣ ପଟ୍ଟନାୟକ, କବି କାଳିଦାସ ପ୍ରଭୃତି ବହୁ ଆଦି-ଯୁଗୀୟ, ମଧ୍ୟଯୁଗୀୟ ଓ ଆଧୁନିକ ଯୁଗର କବି ଓ ସାହିତ୍ୟିକମାନଙ୍କ ଜୀବନୀ ରଚନା କରି ଓଡ଼ିଆ ସାହିତ୍ୟ ଧନ୍ୟ ହୋଇଅଛି ।

ଧର୍ମଧାରାରେ ପରିପ୍ଲୁତ ଧାର୍ମିକ ଦେଶରେ ଧର୍ମ ପ୍ରଚାରକଙ୍କ ସଂଖ୍ୟା କଳ୍ପନାତୀତ । ଯୁଗେ ଯୁଗେ ଏ ଦେଶରେ ବିଭିନ୍ନ ଧର୍ମପ୍ରଚାରକଗଣ ଜନ୍ମଗ୍ରହଣ କରି ସ୍ୱ ସ୍ୱ ଧର୍ମରେ ଜଗତ ତଥା ଜଗତବାସୀଙ୍କୁ ଦୀକ୍ଷିତ ଓ ଅଭିମନ୍ତ୍ରିତ କରି ସେମାନଙ୍କ ଜୀବନ ଧର୍ମାଲୋକରେ ଭରି ଦେଇଛନ୍ତି । ସେମାନଙ୍କ ମଧ୍ୟରେ ବୁଦ୍ଧ, ଯୀଶୁ, ମହାବୀର, ମହମ୍ମଦ, ଶଙ୍କରାଚାର୍ଯ୍ୟ, ସ୍ୱାମୀ ରାମାନନ୍ଦ, ଚୈତନ୍ୟ, ଶ୍ରୀ ମା, ଅରବିନ୍ଦ, ରାମକୃଷ୍ଣ, ସ୍ୱାମୀ ବିବେକାନନ୍ଦ, ପରମହଂସ, ଅଲେଖ ବାବା, ସିରଡ଼ି ସାଇ ଓ ସତ୍ୟସାଇ ବାବା ପ୍ରଭୃତି ଧାର୍ମିକଗଣ ଶ୍ରେଷ୍ଠ ।

ଦେଶର ତଥା ଜାତିର ରାଜନୀତି କ୍ଷେତ୍ରରେ ଯେଉଁ ନେତାମାନେ ଅଂଶଗ୍ରହଣ କରି ଦେହରେ ଶେଷ ରକ୍ତବିନ୍ଦୁ ଥିବାଯାଏ ଦେଶ ଓ ଜନର କଲ୍ୟାଣ ପାଇଁ କର୍ମ କରି ନିଜକୁ ବଳି ଦେଇଛନ୍ତି ସେହିମାନଙ୍କ ଜୀବନୀ ଓଡ଼ିଆରେ ରଚିତ ହୋଇଅଛି । ଏହାଦ୍ୱାରା ଓଡ଼ିଆ ସାହିତ୍ୟର ଗୌରବ ପ୍ରତିପାଦିତ ହୋଇଅଛି । ଜାତିର ପିତା ମହାତ୍ମା ଗାନ୍ଧୀ, ପଣ୍ଡିତ ଜବାହରଲାଲ, ଆବ୍ରାହାମ ଲିଙ୍କନ୍, ଲିଓ ଟଲଷ୍ଟୟ, ନେପୋଲିଅନ୍, ଶାନ୍ତି ସମ୍ବାଦ ଶାସ୍ତ୍ରୀଜୀ, ସର୍ଦ୍ଦାର ବଲ୍ଲଭ ଭାଇ, ଡକ୍ଟର ରାଜେନ୍ଦ୍ର ପ୍ରସାଦ, ଦେଶବନ୍ଧୁ ଚିତ୍ତରଞ୍ଜନ, ତ୍ୟାଗୀ ଗୋପବନ୍ଧୁ, ଉତ୍କଳ ଗୌରବ ମଧୁସୂଦନ ପ୍ରଭୃତି ଜାତିବନ୍ଧୁ ତଥା ଦେଶବନ୍ଧୁଙ୍କ ଜୀବନୀ ଓଡ଼ିଆ ସାହିତ୍ୟରେ ପ୍ରଧାନ ସ୍ଥାନ ଅଧିକାର କରିଛି ।

ଏହାଛଡ଼ା ପାଠ୍ୟପୁସ୍ତକ ଜରିଆରେ ଅନେକ ବୈଜ୍ଞାନିକଙ୍କ ଜୀବନୀ ଓଡ଼ିଆରେ ରଚିତ ହୋଇଅଛି । ମାର୍କୋନୀ ଏଡ଼ିସନ୍, ମ୍ୟାଡ଼ାମ୍ କ୍ୟୁରୀ, ଲୁଇ ପାଶ୍ଚର୍, ସାର ଜଗଦୀଶ

ଚନ୍ଦ୍, ବୋଷ, ମାଇକେଲ୍ ଫାରାଡ଼େ, ନିଉଟନ୍, ବୈଜ୍ଞାନିକ ଆଇନ୍ ଷ୍ଟାଇନ୍, ଭାରତ ରତ୍ନ ଆର୍ଯ୍ୟ ରମଣ ପ୍ରଭୃତି ବିଶିଷ୍ଟ ବୈଜ୍ଞାନିକଙ୍କ ଜୀବନୀ ଓଡ଼ିଆରେ ରୂପାୟିତ ହୋଇଅଛି ।

ଓଡ଼ିଆରେ କେତେକ ଆତ୍ମଜୀବନୀ ମଧ୍ୟ ରଚିତ ହୋଇଅଛି କିନ୍ତୁ ଏହାର ପରିମାଣ ଖୁବ୍ ସ୍ୱଳ୍ପ । ସ୍ୱଳ୍ପ ହେଲେ ମଧ୍ୟ ଏଗୁଡ଼ିକ ଖୁବ୍ ଉଚ୍ଚାଙ୍ଗ ଓ ଶ୍ରେଷ୍ଠ ହୋଇପାରିଛି । ଫକୀର ମୋହନ, ଗୋଦାବରୀଶ ମିଶ୍ର, ନୀଳକଣ୍ଠ, କବି ବୈଷ୍ଣବ ପାଣି, ପଣ୍ଡିତ ଲକ୍ଷ୍ମୀନାରାୟଣ ସାହୁ ଯଥାକ୍ରମେ ଆତ୍ମଚରିତ, ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ, ଆତ୍ମଜୀବନୀ, ବୈଷ୍ଣବ ପାଣିଙ୍କ ଆତ୍ମଜୀବନୀ ଓ ମୋ ବାରବୁଲା ଜୀବନ ନାମରେ ସେମାନଙ୍କ ନିଜ ଜୀବନୀ ରଚନା କରିଅଛନ୍ତି ।

ଏହାଛଡ଼ା ବଙ୍ଗଳା, ହିନ୍ଦୀ, ଇଂରାଜୀ ଭାଷାର କେତେକ ଜୀବନୀ ଓ ଆତ୍ମଜୀବନୀ ଓଡ଼ିଆରେ ଅନୂଦିତ ହୋଇଛି । ଗାନ୍ଧୀ, ନେହେରୁ, ରାଜେନ୍ଦ୍ର ପ୍ରସାଦ, ଏରିନର୍ ରୁଜ-ଭେଲଟ୍ଙ୍କ ଆତ୍ମଜୀବନ ଯଥାକ୍ରମେ ଗୋପବନ୍ଧୁ ଚୌଧୁରୀ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ବିଚିତ୍ରାନନ୍ଦ ମହାନ୍ତି, ଚିତ୍ତରଞ୍ଜନ ଦାସଙ୍କ ଦ୍ୱାରା ଅନୂଦିତ ହୋଇଅଛି । ରାଜେନ୍ଦ୍ର ପ୍ରସାଦଙ୍କ 'ଗାନ୍ଧିଜୀଙ୍କ ପଦତଳେ', ହରିବଂଶ ସିଂଙ୍କ ରଚିତ ଗୁରୁ ଗୋବିନ୍ଦ ସିଂ, ବ୍ରୁ ସ୍ମିଲ୍ଙ୍କ ରଚିତ କେନେଡ଼ିଙ୍କ ଜୀବନ କାହାଣୀ, ଜେ: ଏସ୍: ସି: ଆବଟ୍ଙ୍କ ରଚିତ ନେପୋଲିୟନ୍ ଜୀବନୀ, ରବୀନ୍ଦ୍ର ଜୀବନ କଥା, ବିଷ୍ଣୁ ମିରାଶୀଙ୍କ ରଚିତ କାଳିଦାସ ଓ ଅଲୌକିକ ସାଇବାବା, ନରହରି ପରୀଖଙ୍କ ରଚିତ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ଜୀବନୀ ଯଥାକ୍ରମେ ଚୌଧୁରୀ ନୀଳକଣ୍ଠ ଦାଶ, ସଚ୍ଚିଦାନନ୍ଦ କାନୁନ୍‌ଗୋ, ମାୟାଧର ମାନସିଂହ, ଗୋଲକ ବିହାରୀ ଧଳ, ଭବଗ୍ରାହୀ ମିଶ୍ର, ଶ୍ରୀ ଅନନ୍ତ ତ୍ରିପାଠୀ ଶର୍ମା ଓ ବିଜୟ ମିଶ୍ରଙ୍କ ଦ୍ୱାରା ଅନୂଦିତ ହୋଇଅଛି ।

ଏହାଛଡ଼ା ଓଡ଼ିଆରେ ବହୁ ଜୀବନୀମୂଳକ ନାଟକ, ଉପନ୍ୟାସ ଓ କବିତା ପ୍ରଭୃତି ମଧ୍ୟ ରଚିତ ହୋଇଅଛି । କବି ସମ୍ରାଟ୍ (ରଜତ କର) ଉପେନ୍ଦ୍ରଭଞ୍ଜ (ଦେବେନ୍ଦ୍ର ସିଂହ) କବି ଯଦୁମଣି, ସାରଳା ଦାସ, ବିପ୍ଳବୀ ଜଗବନ୍ଧୁ ପ୍ରଭୃତି ଜୀବନୀମୂଳକ ନାଟକ, ଶତାବ୍ଦୀର ସୂର୍ଯ୍ୟ (ସୁରେନ୍ଦ୍ର ମହାନ୍ତି) ହେ ସାଥି ହେ ସାରଥି (ନିତ୍ୟାନନ୍ଦ ଶତପଥୀ) ହେଉଛି ଚରିତ-ମୂଳକ ଉପନ୍ୟାସ ଏବଂ ବିଶିଷ୍ଟ କବି, ଲେଖକ, ସାହିତ୍ୟିକ, କର୍ମବୀର ପ୍ରଭୃତିଙ୍କ ଉଦ୍ଦେଶ୍ୟରେ ବହୁ କବିତା ରଚିତ ।

ଓଡ଼ିଆ ସାହିତ୍ୟରେ ଜୀବନୀ ରଚୟିତା ଭାବରେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଜାନକୀ ବଲ୍ଲଭ ପଟ୍ଟନାୟକ, ନୀଳକଣ୍ଠ ଦାସ, ଗିରିଜାଶୋର ଦାସ, ଚନ୍ଦ୍ରମଣି ଦାଶ, ଅସିତ କବି, କୃଷ୍ଣଚନ୍ଦ୍ର କର, ସୁରେନ୍ଦ୍ର ମହାନ୍ତି, ଅନନ୍ତ ପଦ୍ମନାଭ ପଟ୍ଟନାୟକ, ଉପେନ୍ଦ୍ର ମିଶ୍ର, ନିତ୍ୟାନନ୍ଦ ମହାପାତ୍ର, ବିଭୂତି ପଟ୍ଟନାୟକ, ଗୋକୁଳାନନ୍ଦ ମହାପାତ୍ର, ଗଦାଧର ମିଶ୍ର, ଶ୍ରୀଧର ଦାସ, ପଠାଣି ପଟ୍ଟନାୟକ, ଲିଙ୍ଗରାଜ ମିଶ୍ର, ସଦାଶିବ ତ୍ରିପାଠୀ, କୁଞ୍ଜବିହାରୀ ଦାଶ, ଚନ୍ଦ୍ରଶେଖର ମିଶ୍ର, ଚନ୍ଦ୍ରମଣି ମହାନ୍ତି, ଦୟାନିଧି ମିଶ୍ର, ଅନନ୍ତ ଚରଣ ଶତପଥି ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ମୁରାରି ମୋହନ ଜେନା, ବ୍ରଜମୋହନ ମହାନ୍ତି ପ୍ରଭୃତି ପ୍ରାଣକୃଷ୍ଣ ପରିଜା, ଭକ୍ତକବି ମଧୁସୂଦନ ରାଓଙ୍କ ଜୀବନୀ ତଥା ସାହିତ୍ୟିକ ଉତ୍କର୍ଷାଦି ସଙ୍କଳନ କରି ଅଛନ୍ତି । ପୂଜ୍ୟ ପୂଜା ସମ୍ପାଦର ଆନୁକୂଲ୍ୟରେ ଡଃ କୁଞ୍ଜବିହାରୀ ଦାଶ ଓ ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀଙ୍କ ସମ୍ପାଦନାରେ ପ୍ରକାଶ ପାଇଥିବା ନୀଳକଣ୍ଠ ପରିକ୍ରମା, ଗୋପବନ୍ଧୁ ପରିକ୍ରମା,

ଗୋପାଳ ପ୍ରହରାଜ ପରିକ୍ରମା ଓ ମଧୁବାବୁ ପରିକ୍ରମା ଏ କ୍ଷେତ୍ରରେ ଏକ ନୂତନ ପଦକ୍ଷେପ ।

ଓଡ଼ିଆ ଜୀବନୀ ସାହିତ୍ୟକୁ ବିଭିନ୍ନ ସମ୍ବାଦପତ୍ର, ଅନୁଷ୍ଠାନ ଓ ପତ୍ରପତ୍ରିକାର ଅବଦାନ ଉଲ୍ଲେଖଯୋଗ୍ୟ । ବିଶିଷ୍ଟ ବିଶିଷ୍ଟ ବ୍ୟକ୍ତିଙ୍କ ଜନ୍ମଦିବସରେ, ଶ୍ରାଦ୍ଧବାସରରେ, ମୃତ୍ୟୁରେ ବହୁ ସ୍ମୃତି କବିତା ଓ ଜୀବନୀମୂଳକ ପ୍ରବନ୍ଧ ପ୍ରକାଶ ପାଏ । ସମାଜ, ପ୍ରଜାତନ୍ତ୍ର, କଳିଙ୍ଗ, ମାତୃଭୂମି, ଝଙ୍କାର, ପୌରୁଷ, ନବଜୀବନ, ସାମ୍ପ୍ରତିକ ସ୍ୱାସ୍ଥ୍ୟ, ଆସନ୍ତା କାଲି ପ୍ରଭୃତି ଦୈନିକ ତଥା ମାସିକ ପତ୍ରପତ୍ରିକାଗୁଡ଼ିକର ଦାନ ଅବିସ୍ମରଣୀୟ ।

ଉପର୍ଯ୍ୟୁକ୍ତ ଆଲୋଚନାରୁ ଜଣାଯାଏ ବିଗତ ଦୁଇ ଶତାବ୍ଦୀ ମଧ୍ୟରେ ଓଡ଼ିଆ ଜୀବନୀ ସାହିତ୍ୟର ଅଭୂତପୂର୍ବ ଉନ୍ନତି ହୋଇଅଛି । ପରିମାଣ ଦୃଷ୍ଟିରୁ ଜୀବନୀ ରଚନା ଯେ ବେଶ୍ ଅଗ୍ରଗତି କରିଛି ତାହା ସ୍ୱୀକାର୍ଯ୍ୟ ।

ଓଡ଼ିଆ ସାହିତ୍ୟରେ ରଚିତ ହୋଇଥିବା କେତେକ ଜୀବନୀ ଓ ଆତ୍ମଜୀବନୀର ଆଲୋଚନା ନିମ୍ନରେ କରାଗଲା ।

'ଯୁଗ ଜନକ ମହାତ୍ମାଗାନ୍ଧୀ' ସୂର୍ଯ୍ୟନାରାୟଣ ଦାଶଙ୍କ ରଚିତ ଏକ ଶ୍ରେଷ୍ଠ ଜୀବନୀ । ମହାତ୍ମାଗାନ୍ଧୀଙ୍କ ବାଲ୍ୟଜୀବନୀ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଗାନ୍ଧିଜୀଙ୍କ କର୍ମଜୀବନ, ଦର୍ଶନ, ସଂସ୍କାର ପ୍ରୟାସ, ଅନ୍ୟାନ୍ୟ ମହାପୁରୁଷଙ୍କ ସଙ୍ଗେ ଗାନ୍ଧୀଙ୍କ ତୁଳନା, ରାଜନୈତିକ ଚିନ୍ତାଧାରା, ଆର୍ଥନୀତିକ ଚିନ୍ତାଧାରା, ଧର୍ମ ଧାରଣାର ସୁବିସ୍ତୃତ ଆଲୋଚନା ହୋଇଅଛି । ମହାତ୍ମାଙ୍କ ଚରିତ୍ରର ମହନୀୟତା ଓ ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ଯାଇ ଲେଖକ ତାଙ୍କ ଭୂମିକାରେ ଏକ ସୂଚନା ଦେଇଅଛନ୍ତି, ଯଥା "ମହାମାନବ ମହାତ୍ମା ଗାନ୍ଧୀ କେବଳ ଭାରତୀୟ ରାଜନୈତିକ ରଙ୍ଗମଞ୍ଚର ମୁଖ୍ୟନାୟକ ନ ଥିଲେ । ସେ ଥିଲେ ଏକାଧାରରେ ଜଣେ ଉଚ୍ଚକୋଟୀର ଜନନେତା, ଜାତୀୟ ଭାବାପନ୍ନ...ଶାନ୍ତିସେନାର ନାୟକ, ଅହିଂସକାମୀ, ବିପ୍ଳବୀ ମାନବବାଦୀ ସମାଜ ସଂସ୍କାରକ । ଆଦର୍ଶବାଦୀ ଦାର୍ଶନିକ, ଈଶ୍ୱରବାଦୀ ଦେବୋପାସକ, ସନାତନ ହିନ୍ଦୁ ଧର୍ମର ପ୍ରଚାରକ, ପ୍ରଭାବଶାଳୀ ଲେଖକ, ଗଠନଧର୍ମୀ ସାମ୍ବାଦିକ, ମନମୁଗ୍ଧକାରୀ ବକ୍ତା, ନିଃସ୍ୱାର୍ଥ ଜନସେବକ, ପରମହିତୈଷୀ, ବିଶ୍ୱଶାନ୍ତି, 'ବସୁଧୈବ କୁଟୁମ୍ବକମ୍' ତଥା ରାମରାଜ୍ୟ ପରିକଳ୍ପନାର ଭିତ୍ତିସ୍ଥାପକ ।" ଏହି ଉକ୍ତି ହିଁ ମହାତ୍ମାଙ୍କ ବଳିଷ୍ଠ ବ୍ୟକ୍ତିତ୍ୱ ଓ ମହାନ ପ୍ରତିଭାର ପରିଚୟ ଦିଏ ଏବଂ ବାପୁଙ୍କ ପ୍ରତି ଲେଖକଙ୍କ ଶ୍ରଦ୍ଧା, ସମ୍ମାନ, ଭକ୍ତି, ତଥା ବିଶ୍ୱସ୍ତତାର ପରିଚୟ ଦିଏ । ଏହା କେବଳ ବାପୁ ଜୀବନର ଇତିହାସ ନୁହେଁ ପରାଧୀନ ଭାରତ, ଭାରତୀୟ ଆତ୍ମଜାଗରଣ ଓ ସ୍ୱାଧୀନତା ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ କାଳୀନ ରାଜନୀତିକ ଇତିହାସ ଯାହାକି ବାପୁଙ୍କ ଜୀବନ ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଲିଖନ ଶୈଳୀ ଓ ଭାଷା ଉଚ୍ଚକୋଟୀର ଓ ହୃଦୟଗ୍ରାହୀ ହୋଇଅଛି । ଜୀବନୀ ସାହିତ୍ୟର ଏକ ଅମୂଲ୍ୟ ଗ୍ରନ୍ଥଭାବେ ଏହା ପ୍ରତିଭାତ ହୁଏ ।

ଶାନ୍ତିର ଶହୀଦ ଲାଲବାହାଦୂରଙ୍କ ଜୀବନୀ ଗିରିଜାକିଶୋର ଦାସଙ୍କ ଦ୍ୱାରା ଲିଖିତ । ଶାସ୍ତ୍ରୀଙ୍କ ଜୀବନର ବାଲ୍ୟକାଳ, ଶିକ୍ଷା, କଂଗ୍ରେସ ସଗଠନ ଓ ମନ୍ତ୍ରୀତ୍ୱ ପ୍ରଧାନମନ୍ତ୍ରୀ ଲାଲବାହାଦୂର, ଅମର ସ୍ୱାକ୍ଷର ତାସ୍‌କେଣ୍ଟ ଚୁକ୍ତିର ବିଶ୍ଳେଷଣ ପ୍ରଭୃତିର ବିଶିଷ୍ଟ

ଘଟଣାଗୁଡ଼ିକୁ କେବଳ ରୂପାୟିତ କରିଅଛନ୍ତି । ଶାସ୍ତ୍ରୀଜୀଙ୍କ ନମ୍ରତାର ପ୍ରତୀକ, ଦୃଢ଼ତା, ଅଟଳ ପ୍ରତିଜ୍ଞା, ଶାନ୍ତିପ୍ରୀତି, ଦୟା ଓ କ୍ଷମାର ଏକ ଅବତାର ରୂପେ ବର୍ଣ୍ଣନା କରି ଲେଖକ ଶାସ୍ତ୍ରୀଙ୍କୁ କହିଅଛନ୍ତି, "A hero in peace as war." ଶାସ୍ତ୍ରୀଜୀଙ୍କ ବଳିଷ୍ଠ ବ୍ୟକ୍ତିତ୍ୱକୁ ସମସ୍ତ ସଦ୍‌ଗୁଣାବଳୀକୁ, ତାଙ୍କ ଜୀବନର ବିଶିଷ୍ଟ ଘଟଣାବଳୀ ଆଦିକୁ ଲେଖକ ସଙ୍କ୍ଷିପ୍ତ ଓ ମାର୍ଜ୍ଜିତ କରି ପ୍ରକାଶ କରିଅଛନ୍ତି ।

କବି ଗୋପବନ୍ଧୁ ଅଧ୍ୟାପକ ଚନ୍ଦ୍ରମଣି ଦାସଙ୍କ ଏକ ଶ୍ରେଷ୍ଠ କୃତୀର ପରିଚୟସୂଚକ ହେଲେ ହେଁ ଗୋପବନ୍ଧୁଙ୍କ ଜୀବନୀ ଏଥିରେ ଆଲୋଚିତ ହୋଇ ନାହିଁ । ଗୋପବନ୍ଧୁଙ୍କ ବଳିଷ୍ଠ ବ୍ୟକ୍ତିତ୍ୱ ଓ ସାହିତ୍ୟିକ କୃତୀ ଏଥିରେ ଆଲୋଚିତ ହୋଇଅଛି । ନେହେରୁଙ୍କ ସଙ୍ଗେ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱକୁ ତୁଳନା କରି କହିଅଛନ୍ତି, "ନେହେରୁଙ୍କ ପରି ଗୋପବନ୍ଧୁ ଥିଲେ ବିଧାତା ବିରଚିତ କାବ୍ୟ ।" ଏହା ସଙ୍ଗେ ସଙ୍ଗେ କବି ଗୋପବନ୍ଧୁଙ୍କ ଉଚ୍ଚକୋଟୀର ଲିଖନ ଶୈଳୀ, କାବ୍ୟକୃତିର ରମଣୀୟ ବର୍ଣ୍ଣନା ଜୀବନଦର୍ଶନ, ପଲ୍ଲୀପ୍ରାଣତା ବିଶ୍ୱପ୍ରେମ ଏଥିରେ ଚର୍ଚ୍ଚିତ ।

ଜୀବନୀ ସାହିତ୍ୟ କ୍ଷେତ୍ରରେ ସୁରେନ୍ଦ୍ର ମହାନ୍ତିଙ୍କ 'ଶତାବ୍ଦୀର ସୂର୍ଯ୍ୟ' ହେଉଛି ଏକ ନୂତନ ସୃଷ୍ଟି । ପରାଧୀନ ଓଡ଼ିଶାର ଦିଗ୍‌ବଳୟରେ ନୂତନ ଶତାବ୍ଦୀର ସୂର୍ଯ୍ୟ ରୂପେ ଉଦିତ ହୋଇଅଛନ୍ତି ମଧୁସୂଦନ । ତାଙ୍କର ନାଟକୀୟ ଜୀବନୀଚରିତ୍ରର ପ୍ରକାଶ ଘଟିଛି ଚରିତମୂଳକ ଉପନ୍ୟାସ ଶତାବ୍ଦୀର ସୂର୍ଯ୍ୟରେ । ଜୀବନୀ ରଚନାର ପାରମ୍ପରିକ ରୀତି ବର୍ଜନ କରି, ଏକ ନୂତନ ଦୃଷ୍ଟିଭଙ୍ଗୀ ନେଇ ମଧୁସୂଦନଙ୍କ ଜୀବନକୁ ରୂପାୟିତ କରି-ଅଛନ୍ତି । ଏହି ଉପନ୍ୟାସର ପରିବେଷଣ ଶୈଳୀ ମଧ୍ୟ ନୂତନ । ଶୈଳ୍ପିକ କଳାବିଭବରେ ବିଭବବନ୍ତ ହୋଇଛି । ଉତ୍କଳର ଏକ ଶତାବ୍ଦୀର ଇତିହାସ ସଙ୍ଗରେ ମଧୁବାବୁଙ୍କ ଜୀବନର ଅର୍ଦ୍ଧଶତାବ୍ଦୀର ଇତିହାସର ଅପୂର୍ବ ସମନ୍ୱୟ ହୋଇଅଛି । ଉତ୍କଳ ଜାତିର ପ୍ରତିଷ୍ଠାତା, ନିର୍ମାତା ଓ ଉତ୍କଳର ଜନ୍ମଦାତା ଭାବରେ ଓଡ଼ିଶା ପୃଷ୍ଠରେ ଦଣ୍ଡାୟମାନ ହୋଇଅଛନ୍ତି ମଧୁସୂଦନ । ସେ ପୁସ୍ତକର ଭୂମିକାରେ ସେହି ବିଷୟ ଉଲ୍ଲେଖ କରିଅଛନ୍ତି । "ଇଂ ୧୮୦୩ ରେ ଇଂରେଜମାନଙ୍କ ଦ୍ୱାରା ଓଡ଼ିଶା ଅଧିକାର ଓ ଓଡ଼ିଆ ଜାତୀୟତାର ଚରମ ବିପର୍ଯ୍ୟୟଠାରୁ ଇଂ ୧୯୦୩ ରେ ଉତ୍କଳ ସମ୍ମିଳନୀ ମଞ୍ଚରୁ ଓଡ଼ିଆ ଜାତୀୟତାର ଜନ୍ମ ଘୋଷଣା ପର୍ଯ୍ୟନ୍ତ ଦୀର୍ଘ ଏକଶତାବ୍ଦୀ କାଳର ଇତିହାସ ମଧୁବାବୁଙ୍କ ଜୀବନୀ ସୂତ୍ରରେ ଏଥିରେ ଗ୍ରଥିତ ହୋଇଛି । ଓଡ଼ିଶାର ନବଜାଗରଣ ଓ ତହିଁରେ ମଧୁବାବୁଙ୍କ ଭୂମିକା ଏହାର ବିଷୟବସ୍ତୁ ।" ଘଟଣାର ଲିପିରେ ସେ ମର୍ମର ମୂର୍ତ୍ତି ନିର୍ମାଣ ନ କରି କରିଅଛନ୍ତି ରକ୍ତମାଂସ ଦେହଧାରୀ ଏକ ବାସ୍ତବ ପ୍ରତିଛବି । ମଧୁବାବୁଙ୍କ ଜୀବନୀ ସହିତ ଓଡ଼ିଶାର ଜନ୍ମ, ଓଡ଼ିଶାର ରାଜନୀତିକ ଓ ସାମାଜିକ ଇତିହାସର ଏକ ଅପୂର୍ବ ସମାହାର ହୋଇଛି ଶତାବ୍ଦୀର ସୂର୍ଯ୍ୟ ।

ଅଷ୍ଟାଦଶ ଶତାବ୍ଦୀରେ କବିସୂର୍ଯ୍ୟ ଆଖ୍ୟା ପାଇଥିବା ସାହିତ୍ୟ ଜଗତର ପ୍ରଭାକର ବଳଦେବ ରଥଙ୍କ ଜୀବନୀ ପଣ୍ଡିତ କୁଳମଣି ଦାଶଙ୍କ ଦ୍ୱାରା ସଂଗୃହୀତ ଓ ସମ୍ପାଦିତ ହୋଇଅଛି । ସମଗ୍ର ସାହିତ୍ୟ ଜଗତକୁ ଆଲୋକିତ କରିଥିବା ବଳଦେବଙ୍କ ଜୀବନୀ ସମ୍ପୂର୍ଣ୍ଣଭାବେ ପ୍ରକାଶ ପାଇ ନ ଥିଲା । ପଣ୍ଡିତ କୁଳମଣି ଦାଶଙ୍କ ଦ୍ୱାରା ଏହା ସମ୍ପାଦିତ ହୋଇ ଆଲୋକକୁ ଆସିପାରିଲା । କବି ଭଞ୍ଜଙ୍କ ସମସାମୟିକ ଥିଲେ ବୋଲି ଏହି ଜୀବନୀରୁ

ଜଣାଯାଏ । କବିଙ୍କ ଜନ୍ମ, ବାଲ୍ୟଶିକ୍ଷା, ରାଜ ଅନୁଗ୍ରହଲାଭ ଇତ୍ୟାଦି କବି ଜୀବନୀର କେତେକ ଘଟଣା ମଞ୍ଜୁଳ ଭାବେ ବର୍ଣ୍ଣିତ ହୋଇଅଛି । ବଳଦେବ ଯେ କେବଳ ଅଗାଧ ପାଣ୍ଡିତ୍ୟର ଅଧିକାରୀ ନ ଥିଲେ ଓ ରାଜକାର୍ଯ୍ୟ ପରିଚାଳନା, ମାନବିକତା, ସରଳସ୍ୱଭାବ, ଜନପ୍ରିୟତା, ଚରିତ୍ରବତ୍ତା ଓ ହୃଦୟବତ୍ତାର ଏକ ମୂର୍ତ୍ତିମନ୍ତ ପ୍ରତୀକ ଥିଲେ ତାହା ତାଙ୍କ ଜୀବନୀ ପ୍ରମାଣିତ କରେ ।

ଦୁର୍ଗାଚରଣ ରାୟଙ୍କ ଲିଖିତ 'ରାଧାନାଥ ଜୀବନୀ' ଓଡ଼ିଆ ଜୀବନୀ ସାହିତ୍ୟରେ ଏକ ଅଦ୍ୱିତୀୟ ବିରାଟ ଗ୍ରନ୍ଥ । ଏ ଜୀବନୀ କେବଳ ରାଧାନାଥଙ୍କ ଜୀବନର ଦୀର୍ଘ ୬୧ ବର୍ଷର ଧାରାବାହିକ ବିବରଣୀ ନୁହେଁ । ରାଧାନାଥଙ୍କ ଜୀବନୀ ସହିତ ଓତପ୍ରୋତ ଭାବେ ଜଡ଼ିତ ଓଡ଼ିଶାର ଦୀର୍ଘ ଅର୍ଦ୍ଧଶତାବ୍ଦୀର ସାମାଜିକ, ରାଜନୀତିକ, ଆର୍ଥନୀତିକ ଇତିହାସର ଏକ ସମ୍ପୂର୍ଣ୍ଣ ବିବରଣୀ । ରାଧାନାଥଙ୍କ ଜନ୍ମକାଳୀନ ଓଡ଼ିଶାର ଅବସ୍ଥା, ତତ୍‌କାଳୀନ ସମାଜରେ ପ୍ରଚଳିତ ଓଡ଼ିଶାର ଶିକ୍ଷାବ୍ୟବସ୍ଥା, ରାଧାନାଥଙ୍କ କର୍ମକ୍ଷେତ୍ରର ବର୍ଣ୍ଣନା ସଙ୍ଗେ ସଙ୍ଗେ ରାଧାନାଥଙ୍କ ସମ୍ପର୍କରେ ଆସିଥିବା ବିଭିନ୍ନ ବିଶିଷ୍ଟ ସାହିତ୍ୟିକ ରଥୀମାନଙ୍କର ପରିଚୟ ମଧ୍ୟ ପ୍ରଦାନ କରିଅଛନ୍ତି । ରାଧାନାଥଙ୍କ ଲିଖିତ କେତେକ ପତ୍ରାବଳୀ, ରାଧାନାଥଙ୍କ ସାହିତ୍ୟିକ ପ୍ରତିଭାର କେତେକ ବିଶିଷ୍ଟ କୃତୀର ସୁନ୍ଦର ସମାଲୋଚନା କରା ହୋଇଅଛି । ରାଧାନାଥ ତାଙ୍କ ଜୀବନରେ ଶ୍ରେଷ୍ଠ ସାହିତ୍ୟିକ ହେବା ସଙ୍ଗେ ସଙ୍ଗେ ଆଦର୍ଶ, ସତ୍ୟ, ପ୍ରେମ, କ୍ଷମା ସହାନୁଭୂତିର ଏକ ମୂର୍ତ୍ତିମନ୍ତ ବିଗ୍ରହ ହୋଇପାରିଛନ୍ତି ; ତାହା ତାଙ୍କ ଜୀବନୀ ପ୍ରମାଣିତ କରେ । ରାଧାନାଥଙ୍କ ବିୟୋଗରେ ରଚିତ କେତେକ ସ୍ମୃତି କବିତା, ଅନେକ ସମବେଦନା ପତ୍ର ଓ ଅଭିଭାଷଣ ମଧ୍ୟ ଏଥିରେ ସନ୍ନିବେଶିତ ହୋଇଅଛି । ସେଥିପାଇଁ କେତେକେ ଏହାକୁ କହନ୍ତି "ଆଳମାଳିକା ସାହିତ୍ୟ ।" କିନ୍ତୁ ଜୀବନୀ ସାହିତ୍ୟ ହିସାବରେ ଏହା ଯେ ଶ୍ରେଷ୍ଠସ୍ଥାନ ଅଧିକାର କରିଛି ଏଥିରେ ସନ୍ଦେହ ନାହିଁ । କବିଶେଖର ଚିନ୍ତାମଣିଙ୍କ ମତରେ "ଏହା କେବଳ ଜୀବନୀ ନୁହେଁ, ସେ କାଳର ଖଣ୍ଡିଏ ଚଳଚ୍ଚିତ୍ର ।"

ଚିନ୍ତାମଣି ଦାଶଙ୍କ କୃତ 'ଭକ୍ତକବି ଜୀବନ ସମୀକ୍ଷା' ବାସ୍ତବରେ ଏକ ମହତ୍ତ୍ୱ କବି ଜୀବନର ସୁସମାହିତ ସମୀକ୍ଷା । ଓଡ଼ିଶାର ତତ୍କାଳୀନ ଗୃହଶାଳୀୟ ଶିକ୍ଷାରୀତି, ନ-ଅଙ୍କ ଦୁର୍ଭିକ୍ଷ ପ୍ରଭୃତି ମଧୁସୂଦନଙ୍କ ଜୀବନର ବିଶିଷ୍ଟ ଘଟଣାବଳୀର ସୁବିସ୍ତୃତ ବର୍ଣ୍ଣନା ରହିଅଛି । ମଧୁସୂଦନଙ୍କ ଜୀବନକୁ ପ୍ରଭାବିତ କରିଥିବା ଅନେକ ବିଶିଷ୍ଟ ବ୍ୟକ୍ତିଙ୍କ ନାମ ମଧ୍ୟ ଏଥିରେ ପ୍ରଦତ୍ତ । ତାଙ୍କର କର୍ମଜୀବନର ଆଦର୍ଶ ସେବାପରାୟଣତା, ଜନହିତକର କାର୍ଯ୍ୟ, ଓଡ଼ିଆ ସାହିତ୍ୟରେ ଉନ୍ନତି ଦିଗରେ ମଧୁସୂଦନଙ୍କ ଭୂମିକା ଇତ୍ୟାଦିର ଏକ ସୁନ୍ଦର ଆଲେଖ୍ୟ ପ୍ରଦତ୍ତ ହୋଇଅଛି । ଗୃହ ଜୀବନରେ ମଧୁସୂଦନ ଥିଲେ ଆଦର୍ଶ, ମେଧାବୀ, ସେବା-ପରାୟଣ, ଉତ୍ତମ ସ୍ୱଭାବର ଗୃହୀ । ଶିକ୍ଷକଭାବରେ ଥିଲେ ଆଦର୍ଶ, ଗୃହବତ୍ସଳ, ସୁଶିକ୍ଷକ ଏବଂ କବି ହିସାବରେ ଥିଲେ ଭକ୍ତକବି, ଗାଳ୍ପିକ, ପ୍ରାବନ୍ଧିକ, ଶିଶୁସାହିତ୍ୟିକ । ଆଦର୍ଶ ପ୍ରଚାର ତାଙ୍କ ଜୀବନର ମୁଖ୍ୟ ଉଦ୍ଦେଶ୍ୟ । କବିଙ୍କ ଧାର୍ମିକ ଜୀବନର ମଧ୍ୟ ଏକ ମଞ୍ଜୁଳ ବର୍ଣ୍ଣନା ରହିଅଛି ।

ଅଚିନ୍ତ୍ୟ କବିଙ୍କ ଲିଖିତ ଗଙ୍ଗାଧର ଜୀବନୀ (ପ୍ରଥମ ଭାଗ) ଏକ ଅଭିନବ, ସାର୍ଥକ ତଥା ଉଚ୍ଚକୋଟୀର ଜୀବନୀ ଗ୍ରନ୍ଥ । ପୁସ୍ତକର ପ୍ରାରମ୍ଭରେ ଲେଖକ ଜୀବନୀ ସାହିତ୍ୟର

ସଙ୍ଗ ଓ ଉପାଦେୟତା ବିଷୟରେ କିଛି ସୂଚନା ଦେଇଅଛନ୍ତି । ଲେଖକଙ୍କ ଦୃଷ୍ଟିରେ ସ୍ୱଭାବ କବି ଗଙ୍ଗାଧର ତଥା ଗଙ୍ଗାଧରଙ୍କ ସାହିତ୍ୟ, ସତ୍ୟ, ଶିବ ସୁନ୍ଦରର ଦ୍ୟୋତକ । ଲେଖକଙ୍କ ଜନ୍ମକାଳୀନ ଦେଶର ରାଜନୈତିକ ପରିସ୍ଥିତି, ତତ୍କାଳୀନ ଶିକ୍ଷାପଦ୍ଧତି ଓ ଗଙ୍ଗାଧରଙ୍କ ଗ୍ରାମଜୀବନର ଏକ ନିଖୁଣ ଚିତ୍ର ଅଙ୍କିତ ହୋଇଅଛି । କବିଙ୍କ ଜନ୍ମସ୍ଥଳୀ ବରପାଲିର ଆମୂଳଚୂଳ ଇତିହାସ ପ୍ରଦତ୍ତ ଓ ସମ୍ବଲପୁରର ଶ୍ରେଷ୍ଠତ୍ୱ ମଧ୍ୟ ପ୍ରତିପାଦିତ ହୋଇଅଛି ଏ ପୁସ୍ତକରେ । ଓଡ଼ିଶାର ସାଂସ୍କୃତିକ ଜାଗରଣରେ ଗଙ୍ଗାଧରଙ୍କ ଭୂମିକା, ରାଜନୀତିକ ତଥା ସାମାଜିକ ଇତିହାସ ଓ ଗଙ୍ଗାଧର ସାହିତ୍ୟିକ ପ୍ରତିଭାର ସୁନ୍ଦର ସମାଲୋଚନା କରାହୋଇଅଛି । ଗଙ୍ଗାଧରଙ୍କ ସମକାଳୀନ ଅନେକ ବିଦ୍ୱାନ ବ୍ୟକ୍ତି ଯେଉଁମାନେ କି ଗଙ୍ଗାଧରଙ୍କ ଜୀବନକୁ ପ୍ରଭାବିତ କରିଥିଲେ ସେମାନେ ମଧ୍ୟ ଏହି ଆଲୋଚନାର ପରିସରକୁ ଆସିଅଛନ୍ତି । ଭାଷାର ଗତି ସରଳ, ସାବଲୀଳ, ତଥା ସ୍ୱାଭାବିକ ଏବଂ ସହଜବୋଧ୍ୟ ଓ ହୃଦୟଗ୍ରାହୀ । ଏହାର ବର୍ଣ୍ଣନା ଅତୀବ ମାର୍ମିକ । ଗଙ୍ଗାଧର ଜୀବନୀ (ପ୍ରଥମଭାଗ) ଜୀବନୀ ସାହିତ୍ୟର ଏକ ଅମଳିନ କୀର୍ତ୍ତି ।

ଅସିତ୍ କବିଙ୍କ ଲିଖିତ 'ଓଡ଼ିଆ ସାହିତ୍ୟରେ ଗଙ୍ଗାଧର' ପୁସ୍ତକଟି ଗଙ୍ଗାଧର ସାହିତ୍ୟର ଏକ ବଳିଷ୍ଠ ସମାଲୋଚନା ହେଲେ ମଧ୍ୟ ଏଥିରେ ପ୍ରଦତ୍ତ ଜୀବନୀ ମୂଲ୍ୟହୀନ ନୁହେଁ । କବିଙ୍କ ଦୁଃଖଦାରିଦ୍ର୍ୟପୂର୍ଣ୍ଣ ଜୀବନୀକୁ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ କବିଙ୍କ ସଦ୍‌ଗୁଣାବଳୀ, କର୍ମକ୍ଷେତ୍ର, ସାହିତ୍ୟିକ ସାଧନାର ଏକ ସଂକ୍ଷିପ୍ତ ବିବରଣୀ ରହିଅଛି ।

'କବିଶେଖର ଚନ୍ଦ୍ରାମଣି' କବି ବିଷୟକ ଏକ ସଙ୍କଳନ, ଶ୍ରୀ କୃଷ୍ଣଚନ୍ଦ୍ର ବେହେରା, ସତ୍ୟେନ୍ଦ୍ର ବାନର୍ଜୀ, ସୋମନାଥ ମହାନ୍ତି ଓ ଶ୍ରୀ ଉଦୟନାରାୟଣ ମହାନ୍ତିଙ୍କ ଉଦ୍ୟମରେ ସଂପାଦିତ । ଏଥିରେ କବିଙ୍କ ଜୀବନୀ ଅତି ସଂକ୍ଷିପ୍ତ ଭାବେ ପ୍ରକାଶ ପାଇଛି, କିନ୍ତୁ ସାହିତ୍ୟିକ ସାଧନାର ସୁବିସ୍ତୃତ ସମାଲୋଚନା ହୋଇଅଛି । କବିଙ୍କ ଜୀବନ ଦାରିଦ୍ର୍ୟତମ ହୋଇଥିଲେ ମଧ୍ୟ ସେ ଜୀବନରେ ଏକ ବିରାଟ କବି ଓ ସାହିତ୍ୟିକ ହୋଇପାରିଛନ୍ତି ଓ ସାହିତ୍ୟ ଭଣ୍ଡାରକୁ ତାଙ୍କ ଦାନ ଅବିସ୍ମରଣୀୟ ତଥା ଅମୂଲ୍ୟ ହୋଇପାରିଅଛି । ଏପର୍ଯ୍ୟନ୍ତ କବିଙ୍କ ଜୀବନୀ ସଂପୂର୍ଣ୍ଣ ବା ସ୍ୱତନ୍ତ୍ରଭାବେ ପ୍ରକାଶିତ ହୋଇ ନ ଥିବା କ୍ଷୋଭର ବିଷୟ ।

ଶ୍ରୀ ର କିଶୋର ଦାସଙ୍କ ଲିଖିତ 'ଗଣକବି ବୈଷ୍ଣବ ପାଣି' ଏକ ଜୀବନୀ । କବି ବୈଷ୍ଣବ ପାଣି ପ୍ରକୃତ ପକ୍ଷେ ଗଣର କବି, ଲୋକର କବି । କବିଙ୍କ ନାଟ୍ୟମୟ ଜୀବନର କେତେକ ଘଟଣା କେବଳ ବର୍ଣ୍ଣିତ ହୋଇଅଛି । କବିଙ୍କ ଦୁଃଖମୟ ଜୀବନ, ଶିକ୍ଷାପ୍ରତି ବିମୁଖତା, ନାଟ୍ୟଜଗତରେ ପ୍ରବେଶ ଓ ଉତ୍କର୍ଷ ଲାଭ, କେତେକ ପାଲା, ନାଟକ, ଯାତ୍ରା, ହାସ୍ୟରସଭରା ସୁଆଙ୍ଗ ରଚନାର ଆଲୋଚନା ହୋଇଛି । କବି ତାଙ୍କ ଜୀବନରେ ଜଣେ ଶ୍ରେଷ୍ଠ ହାସ୍ୟରସିକ ଥିଲେ, ତାହା ପ୍ରମାଣ କରେ ଏହି ଜୀବନୀ । କବି ରଙ୍ଗମଞ୍ଚରେ ଲୋକଙ୍କ ମନକୁ ହସାଇ ପାରୁଥିଲେ, ରସାଇ ପାରୁଥିଲେ, ତେଣୁ ସେ ହୋଇଛନ୍ତି ଚିରସ୍ମରଣୀୟ । ଲୋକଙ୍କ ମନରେ ସେ ଏକ ଶ୍ରେଷ୍ଠ ଆସନ ପାତି ରହିଅଛନ୍ତି । ଏହାଛଡ଼ା ଅନ୍ୟ କୌଣସି ବିଶିଷ୍ଟ ଘଟଣାର ଉଲ୍ଲେଖ ଏଥିରେ ନାହିଁ ।

ରାଧାନାଥ ଦର୍ଶନ (ଶ୍ୟାମସୁନ୍ଦର ମିଶ୍ର) ଓ ରାଧାନାଥ ପରିଚିତି ରାଧାନାଥଙ୍କ କାବ୍ୟିକ ପ୍ରତିଭାର ଏକ ଏକ ସୁନ୍ଦର ସମୀକ୍ଷା ।

'ଅମର ପ୍ରତିଭା' ସ୍ୱାମୀ ସିଂହଙ୍କ କୃତ । କେତେକ ସାହିତ୍ୟିକ ପ୍ରତିଭାବାନ୍ ବ୍ୟକ୍ତିଙ୍କର ଜୀବନୀର ଏହା ଏକ ଅଭିନବ ସମାହାର । ଏଥିରେ ସାହିତ୍ୟ ଜଗତର ଉଜ୍ଜ୍ୱଳତମ ଜ୍ୟୋତିଷ୍କମାନଙ୍କର ଜୀବନୀ ଓ ସାହିତ୍ୟ ସାଧନା ଅତି ସଂକ୍ଷିପ୍ତ କିନ୍ତୁ ସୁନ୍ଦର ଭାବେ ପରିବେଷିତ ହୋଇଅଛି । ସାହିତ୍ୟର ବିଶିଷ୍ଟ ରଥୀ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ବଳଦେବ, ସାମନ୍ତ ଚନ୍ଦ୍ରଶେଖର, ବ୍ୟାସକବି ଫକୀରମୋହନ, କବିବର ରାଧାନାଥ, ଉତ୍କଳ ଗୌରବ ମଧୁସୂଦନ, ଭକ୍ତକବି ମଧୁସୂଦନ, ଗଙ୍ଗାଧର, ସାହିତ୍ୟ ସାଧକ ବିଶ୍ୱନାଥ, ଉତ୍କଳମଣି ଗୋପବନ୍ଧୁ, ପଲ୍ଲୀକବି ନନ୍ଦକିଶୋର, କବିଶେଖର ଚିନ୍ତାମଣି ପ୍ରଭୃତିଙ୍କ ଜୀବନୀ ସଂକ୍ଷିପ୍ତଭାବେ ବର୍ଣ୍ଣିତ ହୋଇଅଛି ।

'ଅମର ସନ୍ତାନ' ବଂଶୀଧର ମହାନ୍ତି ଓ ସଦାନନ୍ଦ ତ୍ରିପାଠୀଙ୍କ ସଂକଳିତ କେତେକ ବିଶିଷ୍ଟ ବୈଜ୍ଞାନିକଙ୍କ ସଂକ୍ଷିପ୍ତ ଜୀବନୀ ପୁସ୍ତକ ।

ମହାପୁରୁଷ ଶ୍ରୀ ସତ୍ୟସାଇ ବାବା ଓ ସିରଡ଼ି ସାଇ ବାବାଙ୍କ ଜୀବନୀ ଓ ଅଲୌକିକତା ସମ୍ବନ୍ଧୀୟ ଏକ ଏକ ଅନୁବାଦ ପୁସ୍ତକ । ଶ୍ରୀ ସତ୍ୟସାଇ ବାବାଙ୍କ ଜୀବନୀ 'ସତ୍ୟଂ ଶିବଂ ସୁନ୍ଦରଂ' ନାମକ ପୁସ୍ତକରେ ଶ୍ରୀ ଏନ୍ କସ୍ତୁରୀଙ୍କ ଦ୍ୱାରା ଲିଖିତ ଓ ଶ୍ରୀ ବ୍ରହ୍ମାନନ୍ଦ ପଣ୍ଡାଙ୍କ ଦ୍ୱାରା ଅନୂଦିତ । ଏଥିରେ ସାଇଁବାବାଙ୍କ ବାଲ୍ୟଜୀବନ, ତାଙ୍କର ବିଭିନ୍ନ କ୍ରିୟାକଳାପ, ଅଲୌକିକତା, ଧର୍ମୋପଦେଶ ପ୍ରଭୃତି ସୁନ୍ଦର ସରଳ, ସାବଲୀଳ ଭାଷାରେ ବର୍ଣ୍ଣିତ ଯାହାକି ସହଜବୋଧ ଏବଂ ସୁଖପାଠ୍ୟ ।

ଉପର୍ଯ୍ୟୁକ୍ତ କେତେକ ଜୀବନୀ ସାହିତ୍ୟରୁ ଓଡ଼ିଆ ଜୀବନୀ ସାହିତ୍ୟର ସ୍ୱରୂପ ଜଣାଯାଏ । ଓଡ଼ିଆ ସାହିତ୍ୟରେ ରଚିତ ହୋଇଥିବା କେତେକ ଆତ୍ମଜୀବନୀକୁ ଆଲୋଚନାର ପର୍ଯ୍ୟାୟଭୁକ୍ତ କରାଯାଇପାରେ ।

କଥା ସାହିତ୍ୟ ସମ୍ରାଟ୍ ଫକୀର ମୋହନ ଗଦ୍ୟ ସାହିତ୍ୟ ଜଗତରେ ଏକ ଚହଲ ପକାଇଦେଇଥିଲେ । ନିଜ ଆତ୍ମଜୀବନୀ ରଚନା କରି ସେ ଜୀବନୀ ସାହିତ୍ୟରେ ଏକ ଅମୂଲ୍ୟ ଗ୍ରନ୍ଥ ସୃଷ୍ଟି କରିଅଛନ୍ତି । ତାଙ୍କ ଆତ୍ମଜୀବନ ଚରିତ ଓଡ଼ିଆ ସାହିତ୍ୟର ଏକ ଅଭିନବ ସୃଷ୍ଟି । ଜୀବନୀ ସାହିତ୍ୟର ସମସ୍ତ ସ୍ୱରୂପ ତଥା ବିଭବରେ ବିଭବବନ୍ତ ହୋଇଅଛି ତାଙ୍କ 'ଆତ୍ମ-ଚରିତ' । ପୁଣି ଚରିତ୍ର ଚିତ୍ରଣକାର ନିଜ ଚରିତ୍ରକୁ ସହଜ, ସରଳ, ନିରାଡ଼ମ୍ବର ଭାବେ ଚିତ୍ରଣ କରିଯାଇଅଛନ୍ତି । ଶ୍ରେଷ୍ଠ ସାହିତ୍ୟିକ ଭାବରେ ମନର ଆଭିଜାତ୍ୟ, ଅହମିକା କେଉଁଠି ପ୍ରକାଶ ପାଇନାହିଁ । ସୁଗୁଣର ପ୍ରଚାର ତଥା ପ୍ରକାଶ ପ୍ରଚେଷ୍ଟା ଫଳରେ ଅନେକ ସ୍ଥାନରେ ଜୀବନର କେତେକ ଦୋଷ ଦୁର୍ବଳତା ଅକୁଣ୍ଠ, ଦ୍ୱିଧାହୀନଭାବେ ପ୍ରକାଶ ପାଇଛି । ତାଙ୍କ ଜୀବନରେ ଯେ ସେ ଥରେ ମାତ୍ର ମଦ୍ୟପାନ କରିଥିଲେ ତାହାହିଁ ତାଙ୍କ ଜୀବନର ଏକ ବିଶିଷ୍ଟ ଦୋଷରୂପେ ସେ ଚିତ୍ରିତ କରିଅଛନ୍ତି । ଆତ୍ମ ଚରିତଟି କେବଳ କେତେକ ଘଟଣାମାନଙ୍କ ବିବରଣୀ ନ ହୋଇ ବର୍ଣ୍ଣନାମୁଖୀ, ଉପନ୍ୟାସମୁଖୀ ହୋଇଅଛି । ସମସ୍ତ ଉପନ୍ୟାସରେ ସମାଜ ଶ୍ରେଷ୍ଠ ସ୍ଥାନ ଅଧିକାର କରି ଏହି ଆତ୍ମଜୀବନୀରେ ମଧ୍ୟ ଅବ୍ୟାହତ ପାଇ ନାହିଁ । ଅନେକ ସ୍ଥଳରେ ସମାଜର ଧନୀ, ଶାସକ, ପୁରୋହିତ ଇତ୍ୟାଦି ରକ୍ଷଣଶୀଳ ବ୍ୟକ୍ତିଙ୍କୁ ଶାଣିତଭାବେ ବ୍ୟଙ୍ଗ କରାଯାଇଅଛି । ଓଡ଼ିଶା ଇତିହାସର ଏକ ଚରମ ଦୁର୍ବିପାକ ନଅଙ୍କ ଦୁର୍ଭିକ୍ଷର ବର୍ଣ୍ଣନା ରହିଅଛି । ନିଜ ଶୈଳିକ କଳା ବିଭବରେ

ଦୁର୍ଭିକ୍ଷ ସମୟର ଚିତ୍ରକୁ ଅତ୍ୟନ୍ତ ସଜୀବ କରି ବର୍ଣ୍ଣନା କରିଅଛନ୍ତି । ଲେଖକ ନିଜେ ଏହାକୁ ପ୍ରତ୍ୟକ୍ଷଭାବେ ଉପଲବ୍ଧି କରି ତାର ଏକ କରୁଣ ଭୟାବହ, ବାସ୍ତବ ଚିତ୍ର ଚିତ୍ରଣ କରିଛନ୍ତି ଯାହା ପାଠକଲେ ପାଠକ ମନରେ ଭୀତି ସଞ୍ଚାର ହୁଏ । ଦୁର୍ଭିକ୍ଷର ଅବିକଳ ଚିତ୍ର ପାଠକ ସମକ୍ଷରେ ଉଦ୍ଭାସିତ ହୁଏ । ସେଥିରୁ ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ ।

"ଫଗୁଣଠାରୁ ଲୋକେ ମରିବାର ଆରମ୍ଭ ହେଲା । ମୃତ୍ୟୁସଂଖ୍ୟା ଦିନକୁ ଦିନ ବଢ଼ିବାକୁ ଲାଗିଲା । ବାଟ, ଘାଟ, ତୋଠ, ପଡ଼ିଆ; ଅରଣ୍ୟ—ଯେଉଁଠାକୁ ଯାଅ, ସେଠାରେ ମଡ଼ା ପଡ଼ିଥିବାର ଦେଖିବ । କ୍ରମଶଃ ମୃତ ଶରୀରରେ ଦେଶଟା ଯେମନ୍ତ ଗୁରଖାର ହୋଇଗଲା । ଏ ଦୃଶ୍ୟ ଅତ୍ୟନ୍ତ ମର୍ମ ବିଦାରକ ।" ଓଡ଼ିଶାର ଦୁର୍ଭିକ୍ଷ ସମୟରେ ଇଂରେଜ ସରକାରଙ୍କ ପ୍ରକାଶ ପାଇଥିବା ବ୍ୟଙ୍ଗୋକ୍ତି ଫକୀରମୋହନ ଉଦ୍ଧାର କରିଛନ୍ତି "ଯେତେବେଳେ ଲୋକ ଭାତ ମୁଠାକ ସକାଶେ ପ୍ରାଣ ବିକଳରେ ଏଣେତେଣେ ପଳାଉଥିଲେ କିମ୍ବା ରାସ୍ତାଘାଟରେ ମରି ଶୋଉଥିଲେ, ସେତେବେଳେ ଆମ୍ଭମାନଙ୍କ ଇଂରେଜ ସରକାରଙ୍କଠାରୁ ଓଡ଼ିଶାର କମିଶନର ସାହେବଙ୍କ ନିକଟକୁ ପରିହାସ ଓ ରସିକତାପୂର୍ଣ୍ଣ ଟେଲିଗ୍ରାମ୍ ଆସିଥିଲା, "ତୁମେ ଚାଉଳ ସକାଶେ ଟେଲିଗ୍ରାମ୍ କରିଅଛ । ମାତ୍ର ଟେଲିଗ୍ରାମ୍‌ରେ ତ ଚାଉଳ ପଠାଯାଇ ନ ପାରେ ।" ଏହିଭଳି ଏକ ମର୍ମବିଦାରକ ଇତିହାସ କେବଳ ଫକୀର ମୋହନଙ୍କ ପ୍ରତ୍ୟକ୍ଷ ଦର୍ଶନୀୟ ଇତିହାସ ନୁହେଁ ସମଗ୍ର ଓଡ଼ିଶାର ଏକ ଦୁର୍ବିପାକର ଇତିହାସ, ଦୁର୍ଭାଗ୍ୟର ଇତିହାସ । ଫକୀର ମୋହନଙ୍କ ଜୀବନୀ କାହାଣୀ ମଧ୍ୟ ଓଡ଼ିଶାର ସାମାଜିକ, ରାଜନୀତିକ, ଇତିହାସର କାହାଣୀ । ସେ ସମୟର ଗଡ଼ଜାତ ଅଞ୍ଚଳରେ ଥିବା ରାଜାମାନଙ୍କ ଅତ୍ୟାଚାର ପ୍ରଜାମେଳର ଏକ ବାସ୍ତବଚିତ୍ର ଅଙ୍କନ କରିଛନ୍ତି କାରଣ ଫକୀରମୋହନ ନିଜେ ରାଜନୀତିକ ବିଭାଗର ଜଣେ କର୍ମଚାରୀ ଥିଲେ । ଫକୀର ମୋହନଙ୍କ ଆତ୍ମଚରିତ ଏକ ସ୍ୱୟଂସମ୍ପୂର୍ଣ୍ଣ କଳାରେ ପରିଣତ ହୋଇପାରିଅଛି । ଏହାର ଗଦ୍ୟ, ଭାଷାଶୈଳୀ ସବୁକିଛି ଉପନ୍ୟାସମୁଖୀ ହୋଇଛି । ଯାହା ଫଳରେ ଚରିତ ଶୁଷ୍କ ନୀରସ ହେବା ବଦଳରେ ହୋଇଛି ଜୀବନ୍ତ, କାହାଣୀମୁଖୀ ଓ ସୁଖପାଠ୍ୟ । ସମଗ୍ର ଓଡ଼ିଶାର ଏକ ବାସ୍ତବ ଇତିହାସ ହେଉଛି ଫକୀର ମୋହନଙ୍କ ଆତ୍ମଚରିତ ।

ଗୋଦାବରୀଶ ମିଶ୍ରଙ୍କ ଆତ୍ମ ଜୀବନୀ ଯେ ଓଡ଼ିଶାର ଅର୍ଦ୍ଧ ଶତାବ୍ଦୀର ଇତିହାସ ଏ ବିଷୟ ତାଙ୍କ ଜୀବନୀର ନାମକରଣରୁ ସ୍ପଷ୍ଟ ପ୍ରତୀୟମାନ ହୁଏ । ତାଙ୍କର ଆତ୍ମ ଜୀବନୀ ଓଡ଼ିଆଙ୍କ ନିକଟରେ ଏକ କରୁଣ ଇତିହାସ । ଓଡ଼ିଶାର ସତ୍ୟବାଦୀ ବନବିଦ୍ୟାଳୟର ବିଶିଷ୍ଟ ସଖା, ସହୋଦର, ସହକର୍ମୀ ଓ ଓଡ଼ିଶାର ଲୋକକବି, ଗୋଦାବରୀଶଙ୍କ ଜୀବନୀ ଯେ ଏତେ ଦୁଃଖ, ଦାରିଦ୍ର୍ୟପୂର୍ଣ୍ଣ, ନିଷ୍ପେଷିତ, ଏ ଜୀବନୀ ପାଠ ନ କଲେ ସେ ବିଷୟରେ ଧାରଣା ମଧ୍ୟ କରି ହେବ ନାହିଁ । ଓଡ଼ିଶାର ଦୀର୍ଘ ୫୦ ବର୍ଷର ଇତିହାସ ଓ ତାଙ୍କ ଜୀବନକାଳ ଗୋଟିଏ ବୃନ୍ତରେ ଦୁଇଟି ଫୁଲ ଭାବେ ପରସ୍ପର ସମ୍ପୃକ୍ତ । ଏହି ଜୀବନୀରେ ମଧ୍ୟ ଦୋଷାବଳୀର କୁଣ୍ଠାହୀନ ବର୍ଣ୍ଣନା ହୋଇଅଛି । ପଇସା ଚୋରି, ବହି ଚୋରି, କଞ୍ଚାମାଂସ ଖାଇବା ପ୍ରଭୃତି କେତେକ ସାଧାରଣ ପ୍ରବୃତ୍ତିକୁ କବି ତାଙ୍କ ଜୀବନର ତଥା ଚରିତ୍ରର ବିଶିଷ୍ଟ ଦୋଷ ଭାବେ ଚିତ୍ରିତ କରିଛନ୍ତି । ୧୯୦୭-୧୯୦୮ ମସିହାର କରାଳ ଦୁର୍ଭିକ୍ଷ ବର୍ଣ୍ଣନା ଅତ୍ୟନ୍ତ ମର୍ମସ୍ପର୍ଶୀ ଭାବେ ଚିତ୍ରିତ ହୋଇଅଛି । ଓଡ଼ିଆ ଜାତି ଓ ଭାଷା ପାଇଁ ତାଙ୍କର ଉଦ୍ୟମ ତଥା ତ୍ୟାଗ ତାଙ୍କୁ ମହନୀୟ କରିପାରିଅଛି । ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳରେ ଓଡ଼ିଆ

ଭାଷାକୁ ପ୍ରତିଷ୍ଠିତ କରାଇବା ପାଇଁ ତାଙ୍କର ଚେଷ୍ଟା ଓ ଉଦ୍ୟମ ତାଙ୍କ ଜୀବନୀରେ ଲିପିବଦ୍ଧ ହୋଇଅଛି । ଓଡ଼ିଶାର ନବଜାଗରଣରେ ମଧ୍ୟ ସେ ମୁଖ୍ୟସ୍ଥାନ ଅଧିକାର କରିଥିଲେ । ସେ ଜଣେ ଦୃଢ଼ପ୍ରତିଜ୍ଞ, ଉଚ୍ଚମାନବିକତାସମ୍ପନ୍ନ ବ୍ୟକ୍ତି ତାହା ତାଙ୍କ ଜୀବନୀରୁ ପରୋକ୍ଷ ଭାବେ ଜାଣିହୁଏ । ଓଡ଼ିଶାର ସାମାଜିକତାକୁ ସେ ନିଜ ଅଙ୍ଗେ ଲିଭାଇଅଛନ୍ତି । ଓଡ଼ିଶାର ରାଜନୀତିକୁ ପୂର୍ଣ୍ଣ ପ୍ରାଣରେ ଉପଭୋଗ କରିଅଛନ୍ତି, ରାଜନୈତିକ ଇତିହାସ ସାଙ୍ଗରେ ନିଜକୁ ସାମିଲ୍ କରିଦେଇଅଛନ୍ତି । ତେଣୁ ତାଙ୍କ ଜୀବନୀ ହୋଇଛି ଓଡ଼ିଶାର ଜୀବନୀ । ତାଙ୍କର ସହଜ ସରଳ ସ୍ୱଚ୍ଛନ୍ଦ ସାବଲୀଳ ଭାଷା ଓ ବର୍ଣ୍ଣନା, ଜୀବନର ବାସ୍ତବ ଅନୁଭୂତିର ବାସ୍ତବ ରୂପାୟିତ ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ ହୋଇ ତାଙ୍କ ଆତ୍ମଜୀବନୀ ଯଥୋଚିତ ମୂଲ୍ୟ ପ୍ରଦାନ କରିଅଛି ।

ଉତ୍କଳର ବିଶ୍ୱାମିତ୍ର ମହର୍ଷି ପଣ୍ଡିତ ନୀଳକଣ୍ଠ ତାଙ୍କ ମହନୀୟ ଆତ୍ମଜୀବନୀ ଓଡ଼ିଆରେ ରଚନା କରି ଓଡ଼ିଆ ଜୀବନୀସାହିତ୍ୟର ଶ୍ରୀବୃଦ୍ଧି କରିଅଛନ୍ତି । ଆତ୍ମଜୀବନୀରେ ଘଟଣାଗୁଡ଼ିକର ବିଶ୍ଳେଷଣ ଉତ୍ତମଭାବେ ହୋଇପାରେ । ଓଡ଼ିଶାର ପ୍ରତ୍ୟେକଟି ଘଟଣା ସଙ୍ଗରେ ନୀଳକଣ୍ଠ ତଥା ସମସାମୟିକ ଅନ୍ୟାନ୍ୟ ଅନେକ ବ୍ୟକ୍ତିଙ୍କ ଜୀବନୀ ଜଡ଼ିତ । ତେଣୁ ପ୍ରାୟ ସମସ୍ତଙ୍କ ଜୀବନୀ ତଥା ଆତ୍ମଜୀବନୀରେ ବର୍ଣ୍ଣିତ ହୋଇଥିବା ଦେଶ ଓ ଜାତି ବିଷୟକ ଘଟଣାଗୁଡ଼ିକର ସାମ୍ୟ ପରିଲକ୍ଷିତ ହୁଏ । ନୀଳକଣ୍ଠ ଆତ୍ମଜୀବନୀରେ ମଧ୍ୟ ଓଡ଼ିଶାରେ ତତ୍‌କାଳୀନ ଶିକ୍ଷାପଦ୍ଧତି, ଓଡ଼ିଶାର ରାଜନୀତିକ ଅବସ୍ଥା, ଓଡ଼ିଶାର ସମାଜର ଅନୁରୂପ ବର୍ଣ୍ଣନା ଦେଖିବାକୁ ମିଳେ । ବାଲ୍ୟବିବାହ ପ୍ରଥା ତତ୍‌କାଳୀନ ସମାଜର ଏକ ବିଶିଷ୍ଟ ଅଙ୍ଗ ଥିଲା । ତେଣୁ ସାମାଜିକ ଅବସ୍ଥା ବର୍ଣ୍ଣନା କଲାବେଳେ ଏହି ଦିଗଟି ସମସ୍ତଙ୍କର ରଚନାରେ ରୂପାୟିତ ହୋଇଥାଏ । ନୀଳକଣ୍ଠ ମଧ୍ୟ ଓଡ଼ିଶାର ଏହି ସାମାଜିକ ପ୍ରଥାକୁ ତାଙ୍କ ଆତ୍ମଜୀବନୀରେ ସ୍ଥାନ ଦେଇଅଛନ୍ତି । ସମାଜର କେତେକ ଅନ୍ଧ କୁସଂସ୍କାର ପ୍ରତି ଲକ୍ଷ୍ୟକରି ନୀଳକଣ୍ଠଙ୍କର ସଂସ୍କାରମନୋବୃତ୍ତି ଜାଗ୍ରତ ହୋଇଥିଲା । ଜାଣିଶୁଣି ଠାକୁର ପ୍ରସାଦ ଅଣ୍ଠା କରିବା, ସତ୍ୟବାଦୀରେ ଛୁଆଁ ଅଛୁଆଁ ନିର୍ବିଶେଷରେ ସବୁ ଗ୍ରନ୍ଥଙ୍କୁ ଏକାଠି ଖୁଆଇବା, ଲିପିର ସଂସ୍କାର, ବ୍ରାହ୍ମଣ ସମାଜରେ ଛତିଶର ପ୍ରଚଳନ ଆଦି କେତେଗୁଡ଼ିଏ ସଂସ୍କାରମୂଳକ କାର୍ଯ୍ୟ କରିଥିଲେ । ଓଡ଼ିଶାର ରାଜନୀତିରେ ସେ ପ୍ରଧାନ ଅଂଶ ଗ୍ରହଣ କରିଥିଲେ । ଭାରତର ନବଜାଗରଣମୂଳକ ଅସହଯୋଗ ଆନ୍ଦୋଳନରେ ମଧ୍ୟ ଯୋଗଦେଇ ଅନେକଥର କାରାବରଣ କରିଥିଲେ । ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ ଭାବେ ଗଠନ କରିବାର ପ୍ରସ୍ତାବ ସେ ହିଁ ପ୍ରଥମେ ଦେଇଥିଲେ । ସତ୍ୟବାଦୀ ବନ-ବିଦ୍ୟାଳୟକୁ ନିଜ ମନ୍ତ୍ରିତ୍ୱର ସୁପରିଚାଳନାରେ ନାଳନ୍ଦାରେ ପରିଣତ କରିଥିଲେ । ଏହିଭଳି ଭାବେ ନୀଳକଣ୍ଠଙ୍କ ଆତ୍ମଜୀବନୀ ତାଙ୍କର ମହନୀୟ ସଦ୍‌ଗୁଣାବଳୀରେ ମହନୀୟ ଓ ଜାଜ୍ୱଲ୍ୟମାନ ହୋଇ ଉଠିଛି ।

ପଣ୍ଡିତ ଲକ୍ଷ୍ମୀନାରାୟଣ ସାହୁଙ୍କ 'ମୋ ବାରବୁଲା ଜୀବନ' ତାଙ୍କ ସଂକ୍ଷିପ୍ତ ଜୀବନର ଏକ ଆଲେଖ୍ୟ । ବହିର୍ମୁଖୀ ପ୍ରତିଭାରେ ପ୍ରବେଶ କରିଥିଲେ ମଧ୍ୟ କୌଣସିଟିର ଅଧିକାରୀ ହୋଇପାରି ନ ଥିଲେ । ପଣ୍ଡିତ ଲକ୍ଷ୍ମୀନାରାୟଣ ମଧ୍ୟ ସେ ସମୟର ଗୃହଶାଳୀୟ ଶିକ୍ଷାରୀତି, ବାଲ୍ୟବିବାହ ପ୍ରଥା, ଜାମ୍‌ସେଦ୍‌ପୁରର ଶ୍ରମିକ ସଂଗଠନ, ବନ୍ଦେ ମାତରମ୍ ଆନ୍ଦୋଳନରେ ଅଂଶ ଗ୍ରହଣ, ଲବଣ ସତ୍ୟାଗ୍ରହରେ ତାଙ୍କର ଭୂମିକା ଇତ୍ୟାଦିର ଏକ ବିପୁଳ ବର୍ଣ୍ଣନା ତାଙ୍କ

ଆତ୍ମଜୀବନୀରେ ବର୍ଣ୍ଣନା କରିଛନ୍ତି । ଜୀବନର ଯାହାକିଛି ଦୋଷଗୁଣ ସ୍ପଷ୍ଟଭାବେ ପ୍ରକାଶ କରି-ଅଛନ୍ତି । ତାଙ୍କ ସମ୍ପର୍କରେ ଆସିଥିବା ଅନେକ ଜ୍ଞାନୀ, ଗୁଣୀ ବ୍ୟକ୍ତିଙ୍କୁ ତାଙ୍କ ଆତ୍ମଜୀବନୀରେ ପରିଚିତ କରାଇଅଛନ୍ତି । ଲକ୍ଷ୍ମୀନାରାୟଣଙ୍କର ଏତେ ବିଶେଷତ୍ୱ ଥାଇ ସେ କୌଣସି ଗୋଟିକରେସଫଳତା ହାସଲ କରିପାରି ନାହାନ୍ତି, ଠେଶ୍ୟକରି ବୋଧହୁଏ ସେ ସାହିତ୍ୟ ଜଗତର ଆଲୋଚନା ସ୍ତରକୁ ଆସିପାରି ନାହାନ୍ତି । କିନ୍ତୁ ଜୀବନୀ ସାହିତ୍ୟ କ୍ଷେତ୍ରରେ ତାଙ୍କ ଜୀବନୀ ଯେ ବିଶିଷ୍ଟ ସ୍ଥାନ ଅଧିକାର ଯୋଗ୍ୟତା ହାସଲ କରିଅଛି ଏଥିରେ ସନ୍ଦେହ ନାହିଁ ।

କବି ବୈଷ୍ଣବ ପାଣିଙ୍କ ଆତ୍ମଜୀବନୀ ତାଙ୍କ ନାଟକୀୟ ଜୀବନର ଏକ ଆତ୍ମଲିପି । ଏହା କବିଜୀବନର ବିଭିନ୍ନ ଘଟଣାବଳୀର ସମାହାର । ପର୍ଯ୍ୟାୟକ୍ରମେ କବି ବାଲ୍ୟ, ଯୌବନ, ବିବାହ, ଶିକ୍ଷା, ନାଟ୍ୟ ଜଗତରେ ପ୍ରବେଶ ଏବଂ ସୁଖ୍ୟାତି, ଜୀବନର ଯାହାକିଛି ଦୋଷା-ଦୋଷ ସବୁଗୁଡ଼ିକ ସ୍ପଷ୍ଟଭାବେ ଚର୍ଚ୍ଚିତ କରିଅଛନ୍ତି ।

ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦଙ୍କ ଆତ୍ମକଥା ହିନ୍ଦୀରେ ଲିଖିତ । ରାଜେନ୍ଦ୍ର ପ୍ରସାଦଙ୍କ ଆତ୍ମଜୀବନୀ ଓଡ଼ିଆରେ ତାକୁ ଅନୁବାଦ କରିଛନ୍ତି ସଚ୍ଚିଦାନନ୍ଦ କାନୁନ୍‌ଗୋ । ଏଥିରେ ରାଜେନ୍ଦ୍ର ପ୍ରସାଦଙ୍କ ବଂଶପରିଚୟ, ବାଲ୍ୟଶିକ୍ଷା, ଉଚ୍ଚଶିକ୍ଷା, ତତ୍କାଳୀନ ସମାଜରେ ବିଦେଶୀ ଆଚାର ବିରୁଦ୍ଧତା, ତାଙ୍କର ରାଜନୈତିକ ଚେତନାର ଆରମ୍ଭ, ପରାଧୀନ ଭାରତର ରାଜନୀତିରେ ଅଂଶଗ୍ରହଣ, ଇତ୍ୟାଦି କେବଳ ରାଜନୀତିକ ଚର୍ଚ୍ଚା ପ୍ରଦତ୍ତ ହୋଇଅଛି । ରାଜନୀତିକ ବୀର ତଥା ନେତା ହିସାବରେ ତାଙ୍କ ସମଗ୍ର ଜୀବନ ରାଜନୀତି ଉପରେହିଁ ପ୍ରତିଷ୍ଠିତ, ବିକଶିତ । ଏଥିରୁ ତତ୍କାଳୀନ ଭାରତର ରାଜନୀତି, ରାଜନୀତିକ ଆନ୍ଦୋଳନ, ବିଦେଶୀ ଶାସନର ପୂର୍ଣ୍ଣପରିଚୟ ମିଳେ ।

ଏହିଭଳି ଭାବେ ଓଡ଼ିଆ ଜୀବନୀ-ସାହିତ୍ୟ ପ୍ରତି ଦୃଷ୍ଟିପାତ କଲେ ଅଗଣିତ ଜୀବନୀ ରଚନା ଆମ ଦୃଷ୍ଟିପଥକୁ ଆସେ । ଓଡ଼ିଆ ସାହିତ୍ୟଭଣ୍ଡାରକୁ ଏହି ଜୀବନୀ ରଚନା ଗୁଡ଼ିକର ଅବଦାନ ଅମୂଲ୍ୟ ଓ ଚିରସ୍ମରଣୀୟ । ଜୀବନୀ ସାହିତ୍ୟର ଉପାଦେୟତା ପ୍ରତ୍ୟେକ ଜୀବନୀ ସାହିତ୍ୟରେ ଊଣା ଅଧିକେ ଉପଲବ୍‌ଧି ହୁଏ । ପ୍ରତିଭାଶାଳୀ ବ୍ୟକ୍ତିର ପ୍ରତିଭା, ଆଦର୍ଶ ସତ୍ୟବାଦିତା, ମାନବିକତା, ବୀରତ୍ୱ, ସାହସିକତା ଆଦି ନୈସର୍ଗିକ ଗୁଣାବଳୀ ଜୀବନୀରେ ରୂପାୟିତ ହୋଇ ଜଗତକୁ ଏକ ମହାନ୍ ଶିକ୍ଷା ପ୍ରଦାନ କରେ । ଯୁଗଜନକ ବାପୁ, ଜବାହାରଲାଲ ନେହେରୁ, ଶାସ୍ତ୍ରୀ ପ୍ରଭୃତି ମହାମହିମ ମନୀଷୀମାନଙ୍କର ଜୀବନୀ ଜଗତ ସମ୍ମୁଖରେ ଏକ ଜ୍ୱଳନ୍ତ ଆଲୋକଶିଖା ସମ ଦେଦୀପ୍ୟମାନ ଯାହାକି ଏହି ପଙ୍କମୟ ଜଗତରୁ, ମାନବ ମନରୁ,ସମସ୍ତ କଳୁଷତା, ପାପ କପଟତା ଆଦି ଅନ୍ଧକାର ଦୂର କରିବାରେ ସମର୍ଥ ହୁଏ । ସେହି ମହାମନୀଷୀମାନଙ୍କ ଜୀବନୀ କରି ସେମାନଙ୍କ ମାର୍ଗରେ ପରିଚାଳିତ ହେଲେ ଜୀବନ ତଥା ଜଗତ ସୁଗମ ସୁଶୃଙ୍ଖଳିତ ହୋଇପାରିବ । ତତ୍ ସଙ୍ଗେ ସଙ୍ଗେ ସତ୍ୟ ଶିବ ସୁନ୍ଦରର ସତ୍ତା ପ୍ରାଣେ ପ୍ରାଣେ ଉପଲବ୍‌ଧି କରିହେବ । ଜୀବନୀ ସାହିତ୍ୟର ଗୋଟିଏ ମହନୀୟ ଗୁଣ ହେଉଛି ତାହା ଅତି ସହଜରେ ଅନ୍ୟକୁ ପ୍ରଭାବିତ କରିପାରେ । ଜଗତରେ ଏହିପରି ବହୁ ବିଶିଷ୍ଟ ବ୍ୟକ୍ତି ବହୁ ଜୀବନୀ ଦ୍ୱାରା ପ୍ରଭାବିତ ହୋଇଥିବା ଭୁରି ଭୁରି ଉଦାହରଣ ରହିଅଛି । ଇଟାଲୀର ଗାରିବାଲ୍‌ଡ଼ି ଏବଂ ମାଜିନୀଙ୍କ ଜୀବନ କାହାଣୀ ନେହେରୁ ପଢ଼ି ତାଙ୍କ ଭାରତୀୟ ସ୍ୱାଧୀନତାର ଅଙ୍କୁରୋଦ୍‌ଗମ ହୋଇଥିଲା । ସକ୍ରେଟିସ୍, ପ୍ଲାଟୋ ପ୍ରଭୃତି ଦାର୍ଶ-ନିକଙ୍କ ଜୀବନୀ, ନେପୋଲିଅନ ପ୍ରଭୃତି ବୀରଙ୍କ ଜୀବନୀ ମଧ୍ୟ ଅନେକଙ୍କୁ ଉଦ୍‌ବୁଦ୍ଧ କରିଅଛି ।

ଜୀବନୀ ସାହିତ୍ୟର ଅନ୍ୟ ଏକ ଉପାଦେୟତା ହେଉଅଛି ତାହା ବ୍ୟକ୍ତିବିଶେଷର ଜୀବନୀ ପ୍ରଦାନ କରିବା ସଙ୍ଗେ ସଙ୍ଗେ ତତ୍କାଳୀନ ସମାଜର ପ୍ରତିଚ୍ଛବି ମଧ୍ୟ ଅଙ୍କନ କରିଥାଏ । ଜଣେ ବ୍ୟକ୍ତିର ଜୀବନୀ ବର୍ଣ୍ଣନା କଲାବେଳେ ତା ପାଖପାର୍ଶ୍ୱରେ ଥିବା ଅନ୍ୟାନ୍ୟ ବହୁତ ବିଶିଷ୍ଟ ବ୍ୟକ୍ତିଙ୍କ ଜୀବନୀ ତଥା ତାର ପରିବାର, ପରିବାରର ଆଦର୍ଶର ରୂପାୟନ ଘଟିଥାଏ ଜୀବନୀ ସାହିତ୍ୟରେ । ଓଡ଼ିଆ ଜୀବନୀ ସାହିତ୍ୟକୁ ଏସବୁ ଗୁଣ ଦୃଷ୍ଟିରୁ ବିଚାର କଲେ ପ୍ରତ୍ୟେକ ଓଡ଼ିଆ ଜୀବନୀ ଏକ ଏକ ଗୁଣର ଆକର । ଓଡ଼ିଆ ଜୀବନୀ ସାହିତ୍ୟର ମହାନୁଭବତା, ମହନୀୟତା, ଯୁଗେ ଯୁଗେ ଏ ଜଗତରେ ପ୍ରଭାବ ପକାଇ ଆସୁଥିବ ।

ଏସବୁ ସତ୍ତ୍ୱେ ଓଡ଼ିଆ ଜୀବନୀ ସାହିତ୍ୟରେ ଅନେକ ତ୍ରୁଟି ପରିଲକ୍ଷିତ ହୁଏ । ସେଥି ତ୍ରୁଟି ପାଇଁକି ଓଡ଼ିଆ ଜୀବନୀ ସାହିତ୍ୟ ଗୁଣାତ୍ମକ ଦୃଷ୍ଟିରୁ ସମୃଦ୍ଧ ହୋଇ ପାରିନାହିଁ । ଏକ ସ୍ୱୟଂ ସମ୍ପୂର୍ଣ୍ଣ କଳାରେ ପରିଣତ ହୋଇ ପାରିନାହିଁ । ଓଡ଼ିଆ ଜୀବନୀ ସାହିତ୍ୟ ଅନେକ ପରିମାଣରେ କେବଳ ଆଦର୍ଶ ପ୍ରଚାରର ସ୍ଥଳୀ ହୋଇ ପଡ଼ିଛି । ପ୍ରାୟ ସମସ୍ତ ଜୀବନୀ ବ୍ୟକ୍ତି-ବିଶେଷଙ୍କ ସଦ୍‌ଗୁଣ ବର୍ଣ୍ଣନା କରିବାରେ ଶତମୁଖ । କୌଣସି ଜୀବନୀରେ ପ୍ରାୟ ବ୍ୟକ୍ତିର ଦୋଷ ବା ତ୍ରୁଟି ପରିଲକ୍ଷିତ ହୁଏ ନାହିଁ । ଆହୁରି ମଧ୍ୟ ଓଡ଼ିଆ ସାହିତ୍ୟ ଅନେକ ପରିମାଣରେ ହୋଇଛି ଘଟଣାମୁଖୀ । ଅନେକ ଓଡ଼ିଆ ସାହିତ୍ୟରୁ ରକ୍ତମାଂସ ଦେହଧାରୀ ମନୁଷ୍ୟର ପ୍ରତିମୂର୍ତ୍ତି ମିଳେନାହିଁ । ଓଡ଼ିଆ ଜୀବନୀରେ ସାହିତ୍ୟିକମାନଙ୍କ ଜୀବନୀ ଅପେକ୍ଷା ବେଶୀ ପ୍ରକାଶ ପାଇଛି ସେମାନଙ୍କର ସାହିତ୍ୟିକ ଉତ୍କର୍ଷ । କେବଳ କେତେକ ଆତ୍ମଜୀବନୀରେ ଜୀବନୀ ସାହିତ୍ୟର ସ୍ୱରୂପ କେତେକ ପରିମାଣରେ ପ୍ରକଟିତ ହୋଇଅଛି । ଏହିଭଳି ଅନେକ ଜୀବନୀ ସାହିତ୍ୟ କଳାତ୍ମକ ଦୃଷ୍ଟିକୋଣରୁ ଉପାଦେୟ ହୋଇନାହିଁ ।

ବାସ୍ତବରେ ଜୀବନୀ ସାହିତ୍ୟ ଏକ କଳା, ଏକ ସୂକ୍ଷ୍ମକଳା । ବ୍ୟକ୍ତିତ୍ୱର ପୂର୍ଣ୍ଣ ବିକାଶ ହୁଏ । ଅତୀତ ବ୍ୟକ୍ତିତ୍ୱର ରକ୍ତ ମାଂସର ପ୍ରତିଛବି ଧାରଣ କରେ ଏହି କଳା । ଏହା କେବଳ ମାନବର ଘଟଣାର ବିବରଣ ନୁହେଁ ଏକ ଆନନ୍ଦ ଦାୟକ ପ୍ରତିମୂର୍ତ୍ତି ! ଜୀବନ୍ତ ମାନବର ବାସ୍ତବ ଇତିହାସ ସେଥିରେ ରୂପ ପାଏ । Carlyl ଏହା ସମ୍ବନ୍ଧରେ ଏକ ସୁନ୍ଦର ମନ୍ତବ୍ୟ ଦେଇଛନ୍ତି, "A true history is but the biography of great man. There lies the importance of the study of biography." ଜୀବନୀସାହିତ୍ୟ ରୂପକ ବାତାୟନ ପଥଦେଇ ଆମେ ଗୋଟିଏ ଯୁଗର ପ୍ରକୃତ ବିଷୟରେ ଧାରଣା କରିପାରୁ । ଏହି ମୂଲ୍ୟାୟନରେ ଓଡ଼ିଆ ଜୀବନୀସାହିତ୍ୟ ନିଜକୁ ମୂଲ୍ୟାୟନ କଲେ ଅଚିରେ ଓଡ଼ିଆସାହିତ୍ୟର ସମ୍ପଦର ଶ୍ରୀବୃଦ୍ଧି କରିବ ଏବଂ ଓଡ଼ିଆ ସାହିତ୍ୟର ବିଶିଷ୍ଟ ତଥା ପ୍ରସିଦ୍ଧ ଓ ପ୍ରଧାନ ବିଭାଗରେ ପରିଣତ ହୋଇ ପାରିବ ଏଥିରେ ସନ୍ଦେହ ନାହିଁ ।

---

# ଓଡ଼ିଆ କ୍ଷୁଦ୍ରଗଳ୍ପ ଓ ତାର ବିକାଶଧାରା

ସ୍ୱର୍ଣ୍ଣପ୍ରଭା ପଟ୍ଟନାୟକ

କ୍ଷୁଦ୍ରଗଳ୍ପ ଯେତିକ ନୂତନ ସେତିକ ପୁରାତନ । କିନ୍ତୁ ଆଧୁନିକ ଗଳ୍ପର ବିଷୟ-ବସ୍ତୁ, ଚରିତ୍ର ସୃଷ୍ଟି, କଥୋପକଥନ, ପରିବେଶ ସୃଷ୍ଟି ପ୍ରଭୃତି ପ୍ରତ୍ୟେକ ବିଷୟରେ ଏକ ପ୍ରକାର ନୂତନ ରୂପ ସ୍ପଷ୍ଟ । ଆକୃତିଗତ, ପ୍ରକୃତିଗତ, ମର୍ମଗତ ଅନେକ ବିଭିନ୍ନତା ଯୋଗୁଁ କ୍ଷୁଦ୍ରଗଳ୍ପକୁ ଉପନ୍ୟାସ ଠାରୁ ସମ୍ପୂର୍ଣ୍ଣ ପୃଥକ୍ କଳା ସୃଷ୍ଟି କହନ୍ତି । ଉପନ୍ୟାସ ଏକତ୍ୱରେ ବହୁତ୍ୱର ଆରୋପ କରାଏ ଅର୍ଥାତ୍ ଗୋଟିଏ ନିର୍ଦ୍ଦିଷ୍ଟ ଭାବର ପରିପ୍ରକାଶ ପାଇଁ ସେ ବହୁ ଘଟଣା ଓ ବହୁ ଚରିତ୍ରର ଆଶ୍ରୟ ନେଇଥାଏ । କିନ୍ତୁ କ୍ଷୁଦ୍ରଗଳ୍ପ ବହୁତ୍ୱରେ ଏକତ୍ୱର ଆରୋପ କରାଏ । କାରଣ "A short story must be short." ଏହାର ସୀମାରେଖା ସୀମିତ । ଜୀବନର କ୍ଷୁଦ୍ର କ୍ଷୁଦ୍ର ଘଟଣା, ଅନୁଭୂତି ଅଥବା ଜୀବନର ଖଣ୍ଡାଂଶକୁ ଯେତେବେଳେ ଲେଖକ ସମ୍ପୂର୍ଣ୍ଣ କରି ଗଳ୍ପ ଆକାରରେ ଏହି ସୀମିତ ସୀମା-ରେଖା ଭିତରେ ପ୍ରକାଶ କରେ, ସେତେବେଳେ ହିଁ ଏ କ୍ଷୁଦ୍ରଗଳ୍ପର ସୃଷ୍ଟି । କ୍ଷୁଦ୍ରଗଳ୍ପର ଅନ୍ୟତମ ଜନକ ଏଡ୍‌ଗାର୍ ଆଲନ୍‌ପୋ ଯଥାର୍ଥରେ କହିଛନ୍ତି—"A short story has a unity of impression and singleness of purpose." ଜୀବନର କୌଣସି ଗୋଟିଏ ମୁହୂର୍ତ୍ତର କୌଣସି ଏକ ବିଶେଷ ପରିସ୍ଥିତିର ନିବିଡ଼ ଅନୁଭୂତିର ରସାଳ ଅଭିବ୍ୟକ୍ତି ହିଁ କ୍ଷୁଦ୍ରଗଳ୍ପ । ଡଃ ବ୍ରଜମୋହନ ମହାନ୍ତିଙ୍କ ଭାଷାରେ "ବିକ୍ଷିପ୍ତ ଚିନ୍ତାର କଳାତ୍ମକ ଗୁମ୍ଫନ ହିଁ ଶ୍ରେଷ୍ଠ କ୍ଷୁଦ୍ରଗଳ୍ପର ସଂଜ୍ଞା ।"

କ୍ଷୁଦ୍ରଗଳ୍ପ ଏକ କଠିନ କଳା । ଏଥିରେ ବହୁ ଘଟଣାର ସମାବେଶ ବା ବହୁ ପାତ୍ରପାତ୍ରୀଙ୍କର କୋଳାହଳ ନ ଥାଏ । କ୍ଷୁଦ୍ରଗଳ୍ପ ଲେଖକକୁ ଅନାବଶ୍ୟକ ଚରିତ୍ର ବା ଘଟଣାକୁ ଅତି ନିଷ୍ଠୁର ଭାବେ ବର୍ଜନ କରିବାକୁ ପଡ଼ିଥାଏ । ସୁନିର୍ବାଚିତ ଚରିତ୍ର ବା ଘଟଣା ସୃଷ୍ଟିର ସାହାଯ୍ୟରେ ଇଙ୍ଗିତ ପୂର୍ଣ୍ଣ ପରିଣତି ଲାଭ ହିଁ କ୍ଷୁଦ୍ରଗଳ୍ପର ଉଦ୍ଦେଶ୍ୟ । ତା ନହେଲେ କ୍ଷୁଦ୍ରଗଳ୍ପର Unity of effct ବା ରସ ପରିଣାମରେ ବାଧା ସୃଷ୍ଟି ହୋଇଥାଏ ।

କ୍ଷୁଦ୍ରଗଳ୍ପର ନିର୍ଦ୍ଦିଷ୍ଟ କେତେକ ଆଙ୍ଗିକ ବୈଶିଷ୍ଟ୍ୟ ରହିଛି । କାହାଣୀ ଏହାର ଜନ୍ମଦାତା ବା ଭିତ୍ତିଭୂମି ନୁହେଁ । କ୍ଷୁଦ୍ରଗଳ୍ପ ଏକ ସ୍ୱତନ୍ତ୍ର କଳା ଓ ସାହିତ୍ୟ କ୍ଷେତ୍ରକୁ

ନୂତନ ଆଗନ୍ତୁକ । ଏହା ସାହିତ୍ୟର ସର୍ବାପେକ୍ଷା ସଜୀବ ଶାଖା । ଯୁଗ ଯୁଗ ଧରି ମାନସିକ, ସାମାଜିକ, ସାଂସ୍କୃତିକ ପରିବର୍ତ୍ତନ ସଙ୍ଗେ ସଙ୍ଗେ କ୍ଷୁଦ୍ରଗଳ୍ପର ସ୍ୱରୂପ ମଧ୍ୟ ପରିବର୍ତ୍ତିତ ହୋଇ ଆସୁଅଛି । ଶିଳ୍ପବିପ୍ଳବର ସଂଘର୍ଷ, ଷଡଯନ୍ତ୍ର, ଆଲୋଡ଼ନ, କମ୍ପନ ଭିତରେ ମନୁଷ୍ୟ ଏକଦମ୍ ଅଣନିଶ୍ୱାସୀ ହୋଇ ଉଠିଛି । ଚିତ୍ତବିନୋଦନ ନିମନ୍ତେ ସେ ଉପନ୍ୟାସ ପାଠକରିବାକୁ ସମୟ ପାଉନି, ତେଣୁ ଇଉରୋପର ଲେଖକ ହଠାତ୍ ଉପନ୍ୟାସ ରଚନାର ପରିସୀମା ତ୍ୟାଗ କରି କ୍ଷୁଦ୍ରଗଳ୍ପର ସଂକ୍ଷିପ୍ତ ପରିସର ଭିତରକୁ ପଶି ଆସିଛି । କେତେକ ସମାଲୋଚକଙ୍କ ମତରେ ଯେପରି ମହାକାବ୍ୟରୂପୀ ସୂର୍ଯ୍ୟର ଅସ୍ତ ସମୟରେ ଗୀତି କବିତା ରୂପୀ ଚନ୍ଦ୍ର ଉଦୟ ହୋଇଛି । ସେହିପରି ଉପନ୍ୟାସର କମବିଲୟମାନ ସ୍ତୁପ ଉପରେ କ୍ଷୁଦ୍ରଗଳ୍ପ ଦଣ୍ଡାୟମାନ ।

କ୍ଷୁଦ୍ରଗଳ୍ପ ଏକ ସ୍ୱୟଂ ସମ୍ପୂର୍ଣ୍ଣ ଜୀବନ୍ତ କଳା । ଏହାର ସଜ୍ଞା ଓ ସୃଷ୍ଟି ସମ୍ପର୍କରେ ନାନା ପଣ୍ଡିତଙ୍କର ନାନା ମତ ଉଦ୍ଧୃତ କରାଯାଇ ପାରେ । ସମରସେଟ୍ ମମ୍‌ଙ୍କ ମତରେ "The short story must have a definite aim which includes a point of departure, a climax and a point of test ; in otherwords it must have a plot, it exhibits lite to us as it were under a microscape and enables us to view it more clearly than we can do in the raw." ବୃନ୍ଦେଶ୍ୱର ସାହୁ କହିଛନ୍ତି—'କ୍ଷୁଦ୍ରଗଳ୍ପର କଥାବସ୍ତୁର ପରିବେଷଣ ସମୟରେ ସଙ୍ଘର୍ଷ ଓ କୌତୁହଳ ରହିଥିବ ଏବଂ ସରଳ ତରଳ ପ୍ରାଣସ୍ପର୍ଶୀ ଭାଷା ଉପରେ ଲେଖକ ଗୁରୁତ୍ୱ ଆରୋପ କରିଥିବେ । କଥାବସ୍ତୁର ପ୍ରାରମ୍ଭ ସର୍ବାପେକ୍ଷା ଚିତ୍ତାକର୍ଷକ ହେବ—ଏଥିପାଇଁ କୁହାଯାଇଛି —The first lines of a story are the author's letter of introduction to the reader. ପୁନଶ୍ଚ H. G. Wells କହିଛନ୍ତି—Short story is a jolly art. ଏହିପରି ଭାବରେ ଆହୁରି ଅନେକ ପଣ୍ଡିତ ମାନଙ୍କର ଅନେକ ମତ ଉଦ୍ଧାର କରାଯାଇ ପାରେ । ରୁଷିଆର ଚେକଭ ପ୍ରକୃତରେ କ୍ଷୁଦ୍ରଗଳ୍ପର ନିର୍ମାତା । ତାଙ୍କ ମତରେ କ୍ଷୁଦ୍ରଗଳ୍ପର କୌଣସି ଆଦି ବା ଅନ୍ତ ନାହିଁ । ଏହା ଜୀବନର ଟେଣ୍ଡ ଟେଣ୍ଡ ଭଗ୍ନାଂଶ ମାତ୍ର । ଚେକଭ ତାଙ୍କ କ୍ଷୁଦ୍ର ଗଳ୍ପରେ ଜୀବନର ସ୍ୱାଭାବିକ ଚିତ୍ର ଓ ମାର୍ମିକ ଆଲୋଡ଼ନକୁ ଯଥାଯଥ ଭାବରେ ପ୍ରକାଶ କରିଛନ୍ତି ।

ପ୍ରାଚୀନ କ୍ଷୁଦ୍ରଗଳ୍ପ ଥିଲା ବିଶେଷଭାବେ ବିଶ୍ଳେଷଣାତ୍ମକ ଓ ବର୍ଣ୍ଣନାତ୍ମକ । ଅନାବଶ୍ୟକ କଥା ଅନାବଶ୍ୟକ ଚରିତ୍ର, ଅନାବଶ୍ୟକ ଭାଷା ଓ ଅଲୌକିକ କଳ୍ପନାରେ ଏହାଥିଲା ଭାରାକ୍ରାନ୍ତ । ବ୍ରଜନାଥ ବଡ଼ଜେନା ପ୍ରାଚୀନ କଥା ଲେଖିବାକୁ ଯାଇ ଉଲ୍ଲେଖ କରିଛନ୍ତି—

"ମିଥ୍ୟା ଗ୍ରନ୍ଥ ପ୍ରବନ୍ଧେନ ମନୋରଥ ଯା ଭୃଶଂ
ନାନା କୌତୁକ ହାସ୍ୟାଦ୍ୟୈଃ ସା କଥେତ୍ୟଭିଧୀୟତେ ।"

ଅର୍ଥାତ୍ ମିଥ୍ୟା, ଅବାସ୍ତବ, କଳ୍ପନା, ବୃଥା ମନୋହରଣକାରୀ ମୁହୂର୍ତ୍ତ ଓ ହାସ୍ୟଉଦ୍ଦୀପକ ବିଷୟକୁ ହିଁ କଥା କୁହାଯାଏ । କିନ୍ତୁ ଆଧୁନିକ ଯୁଗରେ କ୍ଷୁଦ୍ରଗଳ୍ପ ସତ୍ୟ

ଓ ବାସ୍ତବ ଉପରେ ପ୍ରତିଷ୍ଠିତ । ଲେଖକ ତାର ପ୍ରତ୍ୟେକ କ୍ଷୁଦ୍ର କ୍ଷୁଦ୍ର ଖଣ୍ଡିତ ଅନୁଭୂତିକୁ ଅବଚେତନ ମନରେ ସାଇତି ରଖିଥାଏ, ଏବଂ ତାକୁ ଯେତେବେଳେ ସଜାଡ଼ି ଏକ ନୂତନ ରୂପ ପ୍ରଦାନକରି ଗଳ୍ପ ଆକାରରେ ଉପସ୍ଥାପିତ କରାଏ, ସେତେବେଳେ କ୍ଷୁଦ୍ରଗଳ୍ପ ଆତ୍ମପ୍ରକାଶ କରେ । Haugh Walpoleଙ୍କ ମତରେ—A short story should be a story, a record of things happening, full of incidents and accident swift movement, unexpected development leading through suspense to a climax and a satisfied denouncement. କ୍ଷୁଦ୍ରଗଳ୍ପର ପ୍ରକୃତି, ଗଠନ ରୀତି ସମ୍ବନ୍ଧରେ ରବୀନ୍ଦ୍ରନାଥଙ୍କର ନିମ୍ନଲିଖିତ କେତୋଟି ପଂକ୍ତି ସ୍ମରଣୀୟ—

ନାହିଁ ବର୍ଣ୍ଣନାର ଛଟା
ଘଟନାର ଘନ ଘଟା
ନାହି ତତ୍ତ୍ୱ ନାହିଁ ଅନ୍ତରେ
ଅତୃପ୍ତି ରବେ ସାଙ୍ଗ କରି ମନେ
ହବେଶେଷ ଉପଦେଶ
ହୟ ହଇଲନା ଶେଷ ।"

ଆଧୁନିକ କ୍ଷୁଦ୍ରଗଳ୍ପରେ ଘଟନାର ଘନଘଟା ନାହିଁ, ନାହିଁ ଚରିତ୍ର ଚିତ୍ରଣର ଆବଶ୍ୟକତା, ଅଛି ସମାଜ ପ୍ରତି, ଜୀବନ ପ୍ରତି ଏକ ତୀର୍ଯ୍ୟକ୍ ଦୃଷ୍ଟିପାତ । ଗଳ୍ପ ଆଦି ଆଉ ଚରିତ୍ର ବିଶେଷର ଘଟଣା କ୍ରମରେ ଏକ ନିର୍ଦ୍ଦିଷ୍ଟ ପରିଣତିର ସଙ୍କେତ ବହନ କରୁଥିବା ଆତ୍ମମା କାହାଣୀ ନୁହେଁ, ଏଥିରେ ଆକସ୍ମିକତାରେ ପ୍ରାଣରେ ଚମକ ଲଗେ, ପରିଣତିରେ ଚିନ୍ତିର ବିଶ୍ଲେଷ ଘଟେ । ବିଷୟର ଉପସ୍ଥାପନାରେ ଗୀତି କବିତା ତୁଲ୍ୟ ପ୍ରାଣରେ ଅନୁଭୂତିର ପ୍ରତ୍ୟେକ୍ଷ ସ୍ପର୍ଶ ବାଜେ ।

କ୍ଷୁଦ୍ରଗଳ୍ପର କେତୋଟି ବିଶିଷ୍ଟ ରହିବା ନିତାନ୍ତ ଅପରିହାର୍ଯ୍ୟ । ଅଖଣ୍ଡତା, ସଂକ୍ଷିପ୍ତତା, ଅଭିନବତ୍ୱ, ସଂଯମ ଓ ସୂଚନାତ୍ମକତା ତଥା ସୀମିତ ଚରିତ୍ର ନେଇ ତା କଳେବର ପୁଷ୍ଟିଲ । ଏ ମଧ୍ୟରୁ ଗୋଟିକର ଅଭାବରେ କ୍ଷୁଦ୍ରଗଳ୍ପ ତାର ନିଜସ୍ୱ ହରାଏ । ଏକ ସାର୍ଥକ କ୍ଷୁଦ୍ରଗଳ୍ପରେ ପାଠକ ଉତ୍କଣ୍ଠା, ପ୍ରଶ୍ନବାଚୀ, ବ୍ୟାକୁଳତା ନିଶ୍ଚୟ ଅନୁଭବ କରିବ । ତାର ପ୍ରାରମ୍ଭ ଓ ପରିସମାପ୍ତି ପ୍ରଭାବଶାଳୀ ହୋଇଥିବ, କାରଣ ପ୍ରାରମ୍ଭରେ ଲେଖକ ତା ଲେଖାକୁ ଯେପରି ନାଟକୀୟ ରୀତିରେ ଆରମ୍ଭ କରିଥାଏ; ଏକ କ୍ଷୁଦ୍ର ପରିସର ଭିତରେ ସମସ୍ତ ଚରିତ୍ରମାନଙ୍କର ପ୍ରାଞ୍ଜଳ ବର୍ଣ୍ଣନା କରିବା ସମ୍ଭବ ନୁହେଁ ତେଣୁ ଗଳ୍ପର ଏକ ବିଶିଷ୍ଟ ମୁହୂର୍ତ୍ତରେ ଗଳ୍ପକାର ଅତି କୌଶଳରେ ତାର ପରିସମାପ୍ତି ଘଟାଇଥାଏ ।

Brander Mathew କହିଛନ୍ତି—A true short story deters from a novel chiefly in its essential unity of interest. କ୍ଷୁଦ୍ରଗଳ୍ପ ଉପନ୍ୟାସଠାରୁ ପୃଥକ୍ । ଉପନ୍ୟାସକୁ ପେଟ୍ରୋମାକ୍ସ ଲାଇଟ୍ ସଙ୍ଗେ ତୁଳନା କରାଗଲେ କ୍ଷୁଦ୍ରଗଳ୍ପ ଏକ ଟର୍ଚ୍ଚଲାଇଟ୍ ସଙ୍ଗେ ତୁଳନୀୟ । କାରଣ ଉପନ୍ୟାସ ପେଟ୍ରୋମାକ୍ସ ପରି ବହୁ ଜୀବନକୁ ଆଲୋକିତ କରେ କିନ୍ତୁ କ୍ଷୁଦ୍ରଗଳ୍ପ ଏକ ନିର୍ଦ୍ଦିଷ୍ଟ କେନ୍ଦ୍ରରେ କେନ୍ଦ୍ରୀଭୂତ । Atom ପରି ଏହା ନିହାତି କ୍ଷୁଦ୍ର ହେଲେ ମଧ୍ୟ ଶକ୍ତିଶାଳୀ ଓ ପ୍ରଖର ।

କାହାଣୀ କହିବା ଓ ଶୁଣିବା ମନୁଷ୍ୟର ଏକ ସହଜାତ ପ୍ରବୃତ୍ତି । ତେଣୁ ଅତି ପ୍ରାଚୀନ କାଳରୁ ମନୁଷ୍ୟ ନିଜର ପଥଶ୍ରାନ୍ତି କମ୍ବା ଚିତ୍ତବିନୋଦନ ନିମିତ୍ତ ଗଳ୍ପର ଆଶ୍ରୟ ନେଉଥିଲା । ଗଳ୍ପ କହି ହେଉ ବା ଶୁଣି ହେଉ ତାର ହୃଦୟ ରସାପ୍ଳୁତ ହେଉଥିଲା ଏବଂ ସାରା ଦିନର ଶ୍ରାନ୍ତି, କ୍ଳାନ୍ତି ବରଂ ଅପସର ଯାଉଥିଲା ଏବଂ ସେ ପାଉଥିଲା ଶାନ୍ତି । ପୁରାଣର ଗଳ୍ପ, ରାମାୟଣ ମହାଭାରତରେ ସ୍ଥାନ ପାଉଥିବା ବିଭିନ୍ନ ଉପକାହାଣୀ, ସଂସ୍କୃତ ସାହିତ୍ୟର ବୃହତ୍ କଥା, କଥାସରିତ ସାଗର, ଦଣ୍ଡୀଙ୍କ ଦଶକୁମାର ଚରିତ, ବିଷ୍ଣୁଶର୍ମାଙ୍କର ପଞ୍ଚତନ୍ତ୍ର ଓ ହିତୋପଦେଶ, ବୌଦ୍ଧ ଜାତକ ଗଳ୍ପ ଓ ବିଭିନ୍ନ ପ୍ରକାର fables ଆଦି କ୍ଷୁଦ୍ରଗଳ୍ପର ସାକ୍ଷର ବହନ କରି ଆତ୍ମପ୍ରକାଶ କରିଥିଲା । ସାରଳା ଦାସଙ୍କ ମହାଭାରତ, ଶିବଦାସଙ୍କ ବତିଶ ସିଂହାସନ, ବଳରାମ ଦାସଙ୍କ ବଉଲା ଗାଈ, ଦୀନକୃଷ୍ଣଙ୍କର ପ୍ରସ୍ତାବସିନ୍ଧୁ, ବ୍ରତକଥା ଓ ପ୍ରଚଳିତ ଅଜସ୍ର ଲୋକ କଥା, ଲୋକ କାହାଣୀ ପରେ ଅଷ୍ଟାଦଶ ଶତାବ୍ଦୀର ଅନ୍ତିମ ସୋପାନରେ ବ୍ରଜନାଥ ବଡଜେନାଙ୍କର ଚତୁର ବିନୋଦ ଓ ଅନ୍ୟ କେତେକ ପୌରାଣିକ ଓ ଐତିହାସିକ କାହାଣୀ ରଚିତ ହୋଇଥିଲା । ବ୍ରଜନାଥ ବଡଜେନା ସଂସ୍କୃତ ଉପଦେଶାତ୍ମକ ଗଳ୍ପର ଅନୁକରଣରେ ଓଡ଼ିଶାର ଲୋକଗଳ୍ପକୁ ନେଇ ଅନେକ କାହାଣୀ ସୃଷ୍ଟି କରି ନିଜର ଅପୂର୍ବ ବିଦ୍‌ବତ୍ତାର ପରିଚୟ ପ୍ରଦାନ କରିଛନ୍ତି । ତାଙ୍କର ଦୁଷ୍ଟପ୍ରୀତି, ନୀଚପ୍ରୀତି ଓ ପ୍ରୀତି-ବିନୋଦ, ନୀତିବିନୋଦ, ରସବିନୋଦ ଓ ହାସବିନୋଦ ପ୍ରଭୃତି ଏ ପ୍ରକାର ଗଳ୍ପର ଏକ ଏକ ଜ୍ୱଳନ୍ତ ନିଦର୍ଶନ ।

ଆଧୁନିକ ଓଡ଼ିଆ କ୍ଷୁଦ୍ର ଗଳ୍ପର ଆଦିସ୍ରଷ୍ଟା ଭାବରେ ସଂସ୍କାରବାଦୀ, ହାସ୍ୟରସିକ, ବ୍ୟାସକବି ଫକୀର ମୋହନଙ୍କ ନାମ ଚିରସ୍ମରଣୀୟ । ତାଙ୍କର ପ୍ରତିଭା ଯେପରି ଅନନ୍ୟ ସାଧାରଣ, ସାଧନା ମଧ୍ୟ ସେହିପରି ବହୁମୁଖୀ । ତାଙ୍କର ଗଳ୍ପ ଗୁଡ଼ିକରେ ଉନବିଂଶ ଶତାବ୍ଦୀର ଦୁର୍ଦ୍ଦଶାଗ୍ରସ୍ତ ଉତ୍କଳୀୟ ସମାଜ ଜୀବନର ନିଛକ ପ୍ରତିଛବି ମିଳେ । ନିଜର ପ୍ରତ୍ୟକ୍ଷ ଅନୁଭୂତିକୁ ସେ ତାଙ୍କର ଗଳ୍ପଗୁଡ଼ିକରେ ଅତି ସହଜ, ସରଳ, ସ୍ୱଚ୍ଛ ଓ ପ୍ରାଣସ୍ପର୍ଶୀ ଭାଷାରେ ବର୍ଣ୍ଣନା କରିଛନ୍ତି । ସାଧାରଣ ଲୋକର ଦୈନନ୍ଦିନ ଜୀବନ ମାନ ବର୍ଣ୍ଣନା ପାଇଁ ଯେଉଁ ଭାଷା ଦରକାର, ସେହି ଭାଷା ପ୍ରୟୋଗ କରି ସେ ପଥପ୍ରଦର୍ଶକ ହୋଇଛନ୍ତି । ଅନୁପମ ଓ ଯଥାଯଥ ଉପମା ପ୍ରୟୋଗ ଏବଂ ଢଗ ଢମାଳି ଓ ପ୍ରବଚନର ଯଥାର୍ଥ ବ୍ୟବହାର ଫକୀରମୋହନଙ୍କ ରଚନା ଭିତର ଏକ ବିଶିଷ୍ଟ ଗୁଣ । ପୁରାତନ ଗଳ୍ପର ଗତାନୁଗତିକ ପରମ୍ପରା ତଥା କାଳ୍ପନିକ, ଅଲୌକିକ, ଭୌତିକତାକୁ ପରିହାର କରି ସେ ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପର ଦିଗ୍‌ଦର୍ଶକ ହୋଇଛନ୍ତି । ତାଙ୍କର ଭାଷା ସଂସ୍କୃତ ବହୁଳ ନୁହେଁ । ଅଳଙ୍କାର ମାନଙ୍କର ବ୍ୟବହାରରେ ତାଙ୍କର ଭାଷା କୌଣସିଠାରେ ଭାରାକ୍ରାନ୍ତ ହୋଇନାହିଁ । ଅତିରଞ୍ଜନ କମ୍ବା ସତ୍ୟର ଅପଳାପ ତାଙ୍କ ବର୍ଣ୍ଣନାରେ ନାହିଁ । ଏହି ବାସ୍ତବ ବର୍ଣ୍ଣନାର ପ୍ରଧାନ ଉପାଦାନ ହେଉଛି, ତାଙ୍କର ଅତି ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଶକ୍ତି ଓ ସାଂସାରିକ ବିଷୟରେ ପ୍ରଗାଢ଼ ଅଭିଜ୍ଞତା ଓ ଅନୁଭୂତି । ଏଣୁ ତାଙ୍କୁ Realistic କୁହାଯାଏ । ସେ ସର୍ବମୋଟ ୨୦ଟି ଗଳ୍ପ ରଚନା କରିଛନ୍ତି । ତାଙ୍କର 'ରେବତୀ' ପ୍ରଥମ ସ୍ୱୀକୃତ କ୍ଷୁଦ୍ର ଗଳ୍ପବୋଲି ଅଭିହିତ କରାଗଲେ ମଧ୍ୟ ଏହା ପୂର୍ବରୁ ସେ 'ଲଛମନିଆ' ନାମକ ଅନ୍ୟ ଏକ କ୍ଷୁଦ୍ରଗଳ୍ପ ରଚନା କରିଛନ୍ତି ବୋଲି ନିଜେ ସ୍ୱୀକାର କରିଛନ୍ତି । କିନ୍ତୁ ତାହା ଲୋକଲୋଚନର ଅଗୋଚରରେ ରହିଯାଇଛି । ଫକୀରମୋହନଙ୍କ କ୍ଷୁଦ୍ରଗଳ୍ପ ଦୀର୍ଘ ବର୍ଣ୍ଣନାବହୁଳ ହୋଇଥିବାରୁ ଏହା କାହାଣୀ ଅମପି । ୧ମ ବିଶ୍ୱଯୁଦ୍ଧ ମଧ୍ୟରେ ଯେଉଁ କେତେକ ଗାଳ୍ପିକ କ୍ଷୁଦ୍ରଗଳ୍ପ ରଚନା

କରିଛନ୍ତି, ସେମାନେ ସମସ୍ତେ ଫକୀର ମୋହନଙ୍କ ପ୍ରଭାବରେ ପ୍ରଭାବିତ । ଏହି ସମୟରେ ଐତିହାସିକ ଘଟଣାବଳୀକୁ ଅବଲମ୍ବନ କରି ରାମଚନ୍ଦ୍ର ଆଚାର୍ଯ୍ୟ, ବାସୁଦେବ ମହାପାତ୍ର ଓ ଦୟାନିଧି ମିଶ୍ର ପ୍ରଭୃତି ଅନେକ ଗଳ୍ପ ରଚନା କରିଛନ୍ତି ।

୧ମ ବିଶ୍ୱଯୁଦ୍ଧ ପରେ ମଧ୍ୟ ଫକୀରମୋହନୀୟ ଶୈଳୀ ଓ ଚିନ୍ତାଧାରାର ପ୍ରଭାବ ଅନ୍ୟମାନଙ୍କ ଉପରେ ପଡ଼ିଛି । ଏପରିକି ଆଜିର ଗଳ୍ପକାର କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ 'ମାଂସର ବିଳାପ' ଓ ସୁରେନ୍ଦ୍ର ମହାନ୍ତିଙ୍କ 'ବାଘମଡ଼ା' ଏ ଦୁଇଟି ଗଳ୍ପରେ ଫକୀର-ମୋହନଙ୍କ ଚିନ୍ତା ଧାରାର ପ୍ରଭାବ ସ୍ପଷ୍ଟ । କିନ୍ତୁ ଉକ୍ତ ସମୟର ଗାଳ୍ପିକଙ୍କ ମଧ୍ୟରେ ଚନ୍ଦ୍ର-ଶେଖର ନନ୍ଦ, ବାଞ୍ଛାନିଧି ପଟ୍ଟନାୟକ, ଦୟାନିଧି ମିଶ୍ର, ଲକ୍ଷ୍ମୀକାନ୍ତ ମହାପାତ୍ର, ଚିନ୍ତାମଣି ମହାନ୍ତି, ଗୋଦାବରୀଶ ମିଶ୍ର, ଦିବ୍ୟସିଂହ ପାଣିଗ୍ରାହୀ, ରମାରଞ୍ଜନ ମହାନ୍ତି, ଉପେନ୍ଦ୍ର ପ୍ରସାଦ ମହାନ୍ତି ଓ ଗୋଦାବରୀଶ ମହାପାତ୍ର ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଚନ୍ଦ୍ରଶେଖର ନନ୍ଦଙ୍କର 'ଚିତ୍ର', ବାଞ୍ଛାନିଧିଙ୍କର 'ଧୂପଗ୍ରସ୍ତା' ଦିବ୍ୟସିଂହ ପାଣିଗ୍ରାହୀଙ୍କର 'ଅମୃତ କଙ୍କଣ', ଗୋଦାବରୀଶଙ୍କର 'ପଲ୍ଲୀଗ୍ରସ୍ତା', କାନ୍ତକବି ଲକ୍ଷ୍ମୀକାନ୍ତଙ୍କର 'ପ୍ରତିଦାନ', 'ବୁଢ଼ାଶଙ୍ଖାରି' ପ୍ରଭୃତି ଅନ୍ୟାନ୍ୟ ଅନେକ ଗଳ୍ପ ଉଚ୍ଚ ପ୍ରଶଂସିତ ହୋଇଛି । ଆଧୁନିକ କ୍ଷୁଦ୍ରଗଳ୍ପର ସଙ୍କେତବାହୀ ଋଷିପ୍ରତିମ ଟଲଷ୍ଟୟଙ୍କ ଅନୁକରଣରେ ଏମାନେ ମାନବବାଦ ଓ ଆଦର୍ଶବାଦର ଚିତ୍ରଦେଇ ସ୍ୱ ସ୍ୱ ଗଳ୍ପଗୁଡ଼ିକୁ ପୁଷ୍ଟଳ କରିଛନ୍ତି । ତଥାପି ଏ ସମୟର ଲେଖକମାନେ ନିଜ ସାଧନାରେ ଅଟଳ ରହିନାହାନ୍ତି । କେତେକ ମଧ୍ୟ ଏ ପ୍ରକାର ଉଦ୍ୟମରୁ ଓହରି ଯାଇଛନ୍ତି ଏବଂ ଅନ୍ୟ କେତେକ ନିଜର ଅବିରତ ଉଦ୍ୟମର ଫଳ ସ୍ୱରୂପ ପରବର୍ତ୍ତି କାଳରେ ପ୍ରତିଷ୍ଠିତ ହୋଇଛନ୍ତି ।

୧୯୨୫ ମସିହା ପରବର୍ତ୍ତୀ ଗାଳ୍ପିକମାନଙ୍କର ମଧ୍ୟରେ କାଳିନ୍ଦୀ ଚରଣ ପାଣିଗ୍ରାହୀ, ଅନନ୍ତ ପ୍ରସାଦ ପଣ୍ଡା, ପ୍ରାଣକୃଷ୍ଣ ସାମଲ, ହରିଶ୍ଚନ୍ଦ୍ର ବଡ଼ାଲ, ରାଜକିଶୋର ପଟ୍ଟନାୟକ, ଗୋପୀନାଥ ମହାନ୍ତି, କାହ୍ନୁଚରଣ ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର, ରାଜକିଶୋର ରାୟ ପ୍ରଭୃତି ଅଗ୍ରଗଣ୍ୟ । ସମସାମୟିକ ସ୍ୱାଧୀନତା ଆନ୍ଦୋଳନ, ଅନ୍ଲୋଡ଼ନ ଓ ରାଜନୀତି ପ୍ରଭୃତି ଏମାନଙ୍କର ଗଳ୍ପସୃଷ୍ଟି ପାଇଁ ବିଶେଷ ଖୋରାକ୍ ଯୋଗାଇଥିଲା । ୧୯୩୬ ମସିହା ପରେ ଭଗବତୀ ଚରଣ ପାଣିଗ୍ରାହୀଙ୍କ 'ଶିକାରୀ' କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ହଠାତ୍ ଏକ ପରିବର୍ତ୍ତନ ଆଣିଲା । ଫକୀରମୋହନ ଯୁଗରୁ ସେପର୍ଯ୍ୟନ୍ତ କ୍ଷୁଦ୍ରଗଳ୍ପର ଧାରାରେ ଏହା ଏକ ଅନାହୂତ ପ୍ରତିବନ୍ଧକ ସୃଷ୍ଟି କଲା । ମାର୍କସୀୟ ଦର୍ଶନ, ସାମ୍ୟବାଦୀ ଚିନ୍ତାଧାରା, ନିରାଶାବାଦ, କ୍ଷତାକ୍ତ ମାନବର ହାହାକାର ଗଳ୍ପର ମୁଖ୍ୟ ଉପଜୀବ୍ୟ ହେଲା ଓ ସଙ୍ଗଠାବାଦୀ, ପୁଞ୍ଜିବାଦୀ, ଶୋଷଣ-କାରୀ ସମାଜ ବିରୁଦ୍ଧରେ ଏ ସମୟର ଗଳ୍ପଗୁଡ଼ିକ ଏକ ବିପ୍ଳବାତ୍ମକ ସ୍ୱର ଉତ୍ତୋଳିତ କଲା । ଭଗବତୀ ଚରଣଙ୍କ ଗଳ୍ପଗୁଡ଼ିକରେ ସାମାଜିକ ଅବିଚାର, ଯୁଗ-ଚେତନା ଓ ଶ୍ରେଣୀ ସଂଘର୍ଷର ସ୍ୱର ଉତ୍ସାରିତ । ସମସାମୟିକ ଗଳ୍ପଗୁଡ଼ିକରେ ଯଦିଓ କଳ୍ପନା ତଥା ସ୍ୱପ୍ନବାଦିତାର ଚିତ୍ର ଥିଲା ତଥାପି ବିଦ୍ରୋହ ଏବଂ ବିପ୍ଳବ ଥିଲା ଅଧିକାଂଶ ଗଳ୍ପର ମୁଖ୍ୟ ଆଭିମୁଖ୍ୟ ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ସୂତ୍ରପାତରେ ଯଦିଓ ଉତ୍କଳବାସୀ କୌଣସି ପ୍ରତ୍ୟକ୍ଷ ଅନୁଭୂତି ଅନୁଭବ କରି ନ ଥିଲେ ତଥାପି ସେମାନେ ଏକ ସଂଶୟ, ଆଶଂକାମୟ ଭୟାର୍ତ୍ତ ପରିବେଶରେ ଜୀବନଯାପନ କରୁଥିଲେ । ଯୁଦ୍ଧର ଘନଘଟା ଭିତରେ ଭୟର ଭୂତ ତାଙ୍କୁ ପ୍ରତ୍ୟେକ

ମୁହୂର୍ତ୍ତରେ ଉପସ୍ଥାପିତ କରୁଥିଲା । ଅନ୍ନବସ୍ତ୍ର ଓ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟର ଶୋଷଣ ଅଭାବ
ଦେଖାଦେଲା, ତେଣୁ ମନୁଷ୍ୟ ଏହି ଭସ୍ମ ଭିତରେ ଅଣନିଶ୍ୱାସୀ ହୋଇ ଯୁଦ୍ଧର ପୀଠିକା
ଉପରେ ଗଳ୍ପ ରଚନାର ଅବକାଶ ପାଇଲେନି । ଯାହା ବା ରଚିତ ହୋଇଛି ତାର ପରିଣାମ
ସ୍ୱଳ୍ପ । ତେଣୁ ଏ ଯୁଦ୍ଧ ଓଡ଼ିଆ ସାହିତ୍ୟର ଗତାନୁଗତିକତା ଉପରେ ଚହଲ ଆଣିଛି ।
ଏପରି ଏକ ସଂଘର୍ଷମୟ ପରିସ୍ଥିତିରେ ଆତ୍ମପ୍ରକାଶ କଲେ ବ୍ୟଙ୍ଗାତ୍ମକ ଶିଳ୍ପୀ ଗୋଦାବରୀଶ
ମହାପାତ୍ର । ଯାନ୍ତ୍ରିକ ସଭ୍ୟତାରେ ଶ୍ରମର ମୂଲ୍ୟହୀନତା ଓ ଶ୍ରମିକର ପରାଜୟରେ ସମ୍ବେଦନ-
ଶୀଳ ଗାଳ୍ପିକ ମନର ସହାନୁଭୂତି ପ୍ରକାଶ ପାଇଛି ତାଂକର 'ମାଗୁଣିର ଶଗଡ଼'ରେ ।
ଏହି ତାଂକର ଶ୍ରେଷ୍ଠ ସମସ୍ୟାମୂଳକ ଗଳ୍ପ । 'ପୋଡ଼ାଡ଼ିହ' ତାଙ୍କର ପ୍ରଥମ କ୍ଷୁଦ୍ରଗଳ୍ପ
ସୃଷ୍ଟି । ତାଙ୍କର ଗଳ୍ପଗୁଡ଼ିକ କ୍ଷୁଦ୍ରାବୟବ । ଦୈନନ୍ଦିନ ପ୍ରାତ୍ୟହିକ ଅନୁଭୂତି ସଙ୍ଗେ
ଦୈନନ୍ଦିନ ଜୀବନର ଚରିତ୍ରକୁ ନେଇ କ୍ଷୁଦ୍ରାବୟବ ଭିତରେ ସେ ତାଙ୍କର ଗଳ୍ପ ସୃଷ୍ଟି
କରନ୍ତି । ସାମାଜିକ ଅବସ୍ଥାର ରାଜନୀତିକ ଦୁର୍ନୀତି ଉପରେ ସେ ସର୍ବଦା ସ୍ୱର ଉତ୍ତୋଳନ
କରି ଆସିଛନ୍ତି ।

ଏ ସମୟରେ ଅନ୍ୟତମ ପ୍ରସିଦ୍ଧ କଥାଶିଳ୍ପୀ ଭାବରେ ସବୁଜ ଗୋଷ୍ଠୀର କାଳିନ୍ଦୀ
ଚରଣ ପାଣିଗ୍ରାହୀଙ୍କ ନାମ ଉଲ୍ଲେଖଯୋଗ୍ୟ । ତାଙ୍କର ଗଳ୍ପଗୁଡ଼ିକ ୧୯୩୫ରୁ ୧୯୪୭
ମଧ୍ୟରେ ପ୍ରକାଶିତ । ତାଙ୍କର ପ୍ରାୟ ସମସ୍ତ ରଚନା ଉପରେ ଊଣା ଅଧିକେ ତାଙ୍କର ପ୍ରତିଭା
ବିଚ୍ଛୁରଣ ହୋଇଥିଲେହେଁ ତାଙ୍କର 'ମାଂସର ବିଳାପ' ଶ୍ରେଷ୍ଠ ଗଳ୍ପ ଭାବରେ ଗୃହୀତ
ହୋଇଅଛି । କିନ୍ତୁ ତାହା 'ମାଟିର ମଣିଷ' ଉପନ୍ୟାସ ସ୍ତରକୁ ଉନ୍ନୀତ ହୋଇପାରି ନାହିଁ ।
ଗଳ୍ପ ପୁସ୍ତକମାନଙ୍କ ମଧ୍ୟରେ ଦ୍ୱାଦଶୀ, ରାଣୀଫଳ, ସାଗରିକା, ଶେଷରଶ୍ମି, ଉପହାର ଓ
ପାଷାଣର ପ୍ରତିଷ୍ଠା ଆଦିରେ ଲେଖକଙ୍କର ଅପୂର୍ବ ପ୍ରତିଭା ନିହିତ ଅଛି । ତାଙ୍କର ଗଳ୍ପ
ଗୁଡ଼ିକ ଅତ୍ୟନ୍ତ ହୃଦୟସ୍ପର୍ଶୀ । ମାନବିକ ସ୍ନେହ, ପ୍ରେମ, ଶ୍ରଦ୍ଧା ମାଧ୍ୟମରେ ପାଠକକୁ ଅତି
ସୁନ୍ଦର ଭାବରେ ସତ୍‌ମାର୍ଗରେ ପରିଚାଳିତ କରିବାର ପ୍ରୟାସ କରିଛନ୍ତି । ପରବର୍ତ୍ତୀକାଳରେ
ସେ ଆଧୁନିକ ଜୀବନର ପୁଞ୍ଜିଭୂତ ବେଦନା, ନୈରାଶ୍ୟ, ବିତୃଷ୍ଣା, ନେତିବାଦ, ଅନିଶ୍ଚୟତା
ଓ ବିଫଳତାର ଚିତ୍ର ପ୍ରଦାନ କରି ନିଜର ଅପୂର୍ବ ପାଣ୍ଡିତ୍ୟର ପରାକାଷ୍ଠା ଦେଖାଇଛନ୍ତି ।
ତାଙ୍କର ବର୍ଣ୍ଣନାଶୈଳୀ ଓ ପ୍ରକାଶ ଭଙ୍ଗୀରେ ନୂତନତା ପରିଲକ୍ଷିତ ହୁଏ । ରାଜକିଶୋର
ରାୟ ଏ ଯୁଗର ଅନ୍ୟତମ ପ୍ରତିଷ୍ଠିତ ଗାଳ୍ପିକ । ଭାଷାର ଗୌରବ ଓ ଭାବର ଗାମ୍ଭୀର୍ଯ୍ୟ,
ଆଲଙ୍କାରିକ ଶବ୍ଦ ସଂଯୋଜନା ତାଙ୍କ କ୍ଷୁଦ୍ର ଗଳ୍ପର ବର୍ଣ୍ଣନାଶୈଳୀକୁ ଆହୁରି ମହିମାବନ୍ତ
କରି ତୋଳିଛି । ତାଙ୍କର ଗଳ୍ପ ଗୁଡ଼ିକ କ୍ରମେ ଅଧିକ ବାସ୍ତବାନୁସାରୀ ଓ ସମାଜ-ସଚେତନ
ହେଲେ ମଧ୍ୟ ନରନାରୀଙ୍କର ପ୍ରେମାକର୍ଷଣକୁ ଅନୁଭୂତିର ସୂକ୍ଷ୍ମତାରେ ସଂସ୍କାରଶୀଳ
କରାଇବାରେ ତାଙ୍କର ବୈଶିଷ୍ଟ୍ୟ ସ୍ୱତନ୍ତ୍ର । ତାଙ୍କର ସ୍ୱପ୍ନରେ ଯେପରି କଳ୍ପନାର ଇନ୍ଦ୍ରଧନୁ,
ବାସ୍ତବତାରେ ସେହିପରି ନିର୍ମମ ଉତ୍କଟତା ସ୍ପଷ୍ଟ । ପୁଣି ଏଇ ସ୍ୱପ୍ନ ଓ ଉତ୍କଟତା ମଧ୍ୟରେ
ଅନୁଭୂତି ଓ ଆଦର୍ଶର କି ବିଚିତ୍ର ପରିଣତି । ଲେଖକଙ୍କ ପ୍ରକାଶିତ ପୁସ୍ତକମାନଙ୍କ ମଧ୍ୟରେ
ନୀଳଲହରୀ, ବିକଚଶତଦଳ, ଜୟଶ୍ରୀ, ବନଜ୍ୟୋତ୍ସ୍ନା, ଅଶୋକ ଚକ୍ର, ଜୟ ଶଙ୍ଖ, ଶୋଣିତ
କାବ୍ୟ, ମନର ମୃଣାଳ ପ୍ରଭୃତି ଉଲ୍ଲେଖଯୋଗ୍ୟ କୃତି । ଶ୍ରୀଯୁକ୍ତ ରାୟଙ୍କ ଗଳ୍ପଶୈଳୀ
ଅନୁପମ । ନିତ୍ୟାନନ୍ଦ ମହାପାତ୍ର ଓ ରାଜକିଶୋର ପଟ୍ଟନାୟକଙ୍କ ଗଳ୍ପଗୁଡ଼ିକ ବାସ୍ତବ,
ସମାଜ ସଚେତନ ଓ ମନସ୍ତାତ୍ତ୍ୱିକ । ମାନବ ଜୀବନ ସଙ୍ଗେ ମାନବେତର ଜୀବନ ସମ୍ପର୍କ

ଏ ଦୁଇ ଜଣଙ୍କ ଗଳ୍ପରେ ପରିଲକ୍ଷିତ ହୁଏ । ନିତ୍ୟାନନ୍ଦ ମହାପାତ୍ରଙ୍କ ଗଳ୍ପଗୁଡ଼ିକରେ ଦାର୍ଶନିକତା ସଙ୍ଗେ ରୋମାଣ୍ଟିକ ଚିନ୍ତାଧାରାର ପ୍ରଭାବ ସ୍ପଷ୍ଟ ପରିଲକ୍ଷିତ ହୁଏ । ତାଙ୍କର 'ମାଙ୍କଡ଼ ଦଉଆସୀ' ଗଳ୍ପରେ ମନୁଷ୍ୟ ଓ ପଶୁ ମଧ୍ୟରେ ଥିବା ସ୍ନେହରଜ୍ଜୁର ବନ୍ଧନ ଚିତ୍ରିତ ହୋଇଛି । 'ଦୋକାନ ଦାସ' ଗଳ୍ପଟି ରବୀନ୍ଦ୍ରନାଥଙ୍କର 'କାବୁଲିବାଲା' ଗଳ୍ପର ଛାୟାରେ ରଚିତ । 'ଏଗାରଟା', 'କ୍ଷଣିକା' ପ୍ରଭୃତି ତାଙ୍କର ଅନ୍ୟାନ୍ୟ ଗଳ୍ପଗୁଡ଼ିକ ମଧ୍ୟ ଦୃଷ୍ଟିପଥାରୂଢ଼ ହୁଏ । ସାମାଜିକ ବିଷୟବସ୍ତୁ ଓ ଯୁଗୋପଯୋଗୀ ସମସ୍ୟା ଅବଲମ୍ବନରେ ମଧ୍ୟ ସେ ଅନେକ ଗଳ୍ପ ରଚନା କରିଛନ୍ତି । କିନ୍ତୁ ରାଜକିଶୋର ପଟ୍ଟନାୟକ ତାଙ୍କ ଗଳ୍ପଗୁଡ଼ିକରେ ସାମାଜିକ ଅପେକ୍ଷା ମାନସିକ ଚିନ୍ତା, ଚେତନ୍ୟ, ଅନ୍ତର୍ଦ୍ୱନ୍ଦ୍ୱ ତଥା ମାନସିକ ପ୍ରତିକ୍ରିୟାର ଚିତ୍ର ଅଧିକ ପ୍ରଦର୍ଶନ କରିଛନ୍ତି । ସାଧାରଣ ଲୋକର ଆଖିରେ ପଡ଼ୁ ନ ଥିବା ଅତ୍ୟନ୍ତ ତୁଚ୍ଛ ଅବହେଳିତ ପଦାର୍ଥ ହିଁ ତାଙ୍କ ଗଳ୍ପର ଉପଜୀବ୍ୟ ହୋଇଛି, ଏବଂ ସେ ଅତି ସହଜ ସରଳ ଭାଷାରେ ଏହାର ମନସ୍ତାତ୍ତ୍ୱିକ ବିଶ୍ଳେଷଣ କରିଛନ୍ତି । ଭୂତପଥର, ପଞ୍ଜୁରୀ ପକ୍ଷୀ, ନିଶାଣ ଖୁଣ୍ଟ, ଶାଳଗ୍ରାମ, ଘାସ ପ୍ରଭୃତି ତାଙ୍କର ଅପୂର୍ବ କୃତିର ପରିଚୟ ଦିଏ । ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ ଯଦିଓ ଗୀତିକବି ହିସାବରେ ସୁପରିଚିତ ତଥାପି ତାଙ୍କର ଗଳ୍ପଗୁଡ଼ିକ ମଧ୍ୟ କମ୍ ଆଦୃତ ହୋଇନାହିଁ । ସ୍ୱଳ୍ପ ଯେଉଁ କେତୋଟି ଗଳ୍ପ ସେ ରଚନା କରିଛନ୍ତି ସେ ଗୁଡ଼ିକ ଗାଳ୍ପିକ ହିସାବରେ ତାଙ୍କୁ ଯଥେଷ୍ଟ ସମ୍ମାନିତ କରିଛି । 'ଛୁରି' ଗଳ୍ପଗୁଚ୍ଛର ଗଳ୍ପଗୁଡ଼ିକ କେତେକ ପ୍ରସିଦ୍ଧ ଗଳ୍ପର ଅନୁକରଣରେ ରଚିତ ହୋଇଥିଲେ ମଧ୍ୟ ଏଥିରେ ଲେଖକଙ୍କର ସ୍ୱର୍ଣ୍ଣ ବଳିଷ୍ଠ ଭାବେ ପ୍ରତିଭାତ । ତାଙ୍କର ମୌଳିକ ରଚନା ଭିତରେ 'ମାଟିର ତାଜ', 'ମଶାଣିର ଫୁଲ', 'ଅନ୍ଧାରୁଆ' ପ୍ରଭୃତି ଗଳ୍ପରେ ଧର୍ମର ଦୁହାଇଦେଇ ସମାଜରେ ପ୍ରଚ୍ଛନ୍ନ ଭାବରେ ଯେଉଁ ଅବିଚାର, ଆବର୍ଜନା ରହିଛି, ତାର ଚିତ୍ର ପ୍ରଦତ୍ତ ହୋଇଛି । ଏତଦ୍‌ବ୍ୟତୀତ 'ମଲ୍ଲିକଢ଼ି', 'ରଜାପୁଅ' ପ୍ରଭୃତି ଅନ୍ୟାନ୍ୟ ଅନେକ ଗଳ୍ପ ରଚନା କରିଛନ୍ତି । ଗ୍ରାମ୍ୟ ପରିବେଶ ଓ ସରଳ ଭାଷାରେ ବାସ୍ତବ ବର୍ଣ୍ଣନା ତାଙ୍କ ଗଳ୍ପର ବୈଶିଷ୍ଟ୍ୟ । ସେ ଅନେକ ମନସ୍ତାତ୍ତ୍ୱିକ ସମସ୍ୟା ମୂଳକ ଗଳ୍ପ ରଚନା କରିଛନ୍ତି ।

ଔପନ୍ୟାସିକ ଭାବରେ କାହ୍ନୁଚରଣ ମହାନ୍ତି ଓ ଗୋପୀନାଥ ମହାନ୍ତି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ବିଶିଷ୍ଟ ସ୍ଥାନ ଅଳଙ୍କୃତ କରିଛନ୍ତି ମାତ୍ର ତାଙ୍କ କ୍ଷୁଦ୍ରଗଳ୍ପ ମଧ୍ୟ ପାଠକମାନଙ୍କୁ ବେଶ୍ ଉଦ୍‌ବୁଦ୍ଧ, ଆନନ୍ଦିତ କରିଛି । ବ୍ୟଙ୍ଗାତ୍ମକ ଓ ପରୋକ୍ଷଗତି ଗୋପୀନାଥଙ୍କର ଅନ୍ୟତମ ବୈଶିଷ୍ଟ୍ୟ । ଏହି କଥାଶିଳ୍ପୀ ଗୁରୁତ୍ୱପୂର୍ଣ୍ଣ ଘଟଣାକୁ ପ୍ରତ୍ୟକ୍ଷ ଭାବରେ ଅଭିବ୍ୟକ୍ତ ନ କରି ପରୋକ୍ଷ ଭାବରେ ଅତି ଚତୁରତାର ସହିତ ଅଭିବ୍ୟକ୍ତ କରି-ଥାନ୍ତି । ତାଙ୍କର ଗଳ୍ପଗୁଡ଼ିକ ଦୀର୍ଘାକାର ହେଲେ ମଧ୍ୟ ଗଳ୍ପର ଭାଷା, ଅଭିନବ ଭାବ, ଚମତ୍କାର ବର୍ଣ୍ଣନାଶୈଳୀ ବେଶ୍ ବିଦଗ୍ଧୋପଯୋଗୀ । କିନ୍ତୁ କାହ୍ନୁ ମହାନ୍ତିଙ୍କ ଗଳ୍ପ-ଗୁଡ଼ିକରେ ସମସାମୟିକ ସମାଜର ଶ୍ରେଣୀ ସଙ୍ଘର୍ଷ, ମାନସିକ ତଥା ଚାରିତ୍ରିକ ଦ୍ୱନ୍ଦ୍ୱର ଚିତ୍ର ସ୍ପଷ୍ଟ । ଏ ସବୁ ଦୃଷ୍ଟିରୁ କାହ୍ନୁ ମହାନ୍ତିଙ୍କ 'ଅସମାପିକା' ଓ ଗୋପୀନାଥ ମହାନ୍ତିଙ୍କ 'ଘାସ-ଫୁଲ' 'ନାଆଁ ଟି ତାର ଚମ୍ପା' ପ୍ରଭୃତି ବିଶେଷ । ଗୋପୀନାଥ ମହାନ୍ତି ତାଙ୍କର 'ଇତିହାସ', 'ଘର', 'ସଭା' ପ୍ରଭୃତି ଗଳ୍ପରେ ପ୍ରଚୁର ହାସ୍ୟରସ ସୃଷ୍ଟି କରିଛନ୍ତି । ଅନନ୍ତ ପ୍ରସାଦ ପଣ୍ଡା ଓଡ଼ିଆ ସାହିତ୍ୟରେ ଗଳ୍ପ ଲେଖକ ଭାବେ ସୁପରିଚିତ । 'ଭାଗ୍ୟଚକ୍ର', 'ସଭ୍ୟତାର ତଳେ', 'ମୁକ୍ତ ଆକାଶର ବିହଙ୍ଗ', 'ନିହାରିକା', 'କୁଳି' ପ୍ରଭୃତି ତାଙ୍କର ମନୋଜ୍ଞ ସୃଷ୍ଟି ।

ଦୈନନ୍ଦିନ ଜୀବନର ସାମାଜିକ ସମସ୍ୟା, ବାସ୍ତବ ଦୃଷ୍ଟିକୋଣ ତାଙ୍କ କ୍ଷୁଦ୍ରଗଳ୍ପମାନଙ୍କରେ ପ୍ରତିଫଳିତ । ପ୍ରାଣକୃଷ୍ଣ ସାମଲ ରୋମାଣ୍ଟିକଧର୍ମୀ ଗଳ୍ପ ରଚନା କରିବାରେ ଖ୍ୟାତି ଅର୍ଜ୍ଜନ କରିଛନ୍ତି ।

କଥାକାର ସୁରେନ୍ଦ୍ର ମହାନ୍ତି ସ୍ୱାଧୀନତା ପରବର୍ତ୍ତୀ ଯୁଗରେ ଓଡ଼ିଆ ଗଳ୍ପାକାଶର ଉଜ୍ଜ୍ୱଳ ଜ୍ୟୋତିଷ୍କ ସ୍ୱରୂପ ବିଦ୍ୟମାନ । ବିଶ୍ୱର ଅନ୍ୟାନ୍ୟ ଗଳ୍ପସ୍ତରକୁ ଓଡ଼ିଆ ଗଳ୍ପକୁ ଉନ୍ନୀତ କରିବା ପାଇଁ ତାଙ୍କର ପ୍ରଚେଷ୍ଟା ଅତୁଳନୀୟ । ଦ୍ୱିତୀୟ ମହାଯୁଦ୍ଧର ପରବର୍ତ୍ତୀ କାଳରେ ଓଡ଼ିଆ କ୍ଷୁଦ୍ରଗଳ୍ପରେ ସେ ଏକ ନୂତନ ଆଭିମୁଖ୍ୟ ଆଣିଥିଲେ, ଏହା ସେ ନିଜେ ସ୍ୱୀକାର କରିଛନ୍ତି । ଓଡ଼ିଆ କ୍ଷୁଦ୍ରଗଳ୍ପରେ 'ସିମ୍ବୁଲିଜମ୍'ର ଧାରା ପ୍ରଥମେ ସୁରେନ୍ଦ୍ର ମହାନ୍ତି ହିଁ ପ୍ରଚଳନ କରିଥିଲେ । ସେ ପରିମାର୍ଜିତ, ବଳିଷ୍ଠ, ରୁଚିସମ୍ପନ୍ନ ଭାଷାର ବିପୁଳ ଯାଦୁକାଠିରେ ପାଠକକୁ ତନ୍ଦ୍ରାଚ୍ଛନ୍ନ କରିଥାନ୍ତି । ବିଂଶ ଶତାବ୍ଦୀର ପ୍ରାକ୍‌କାଳରେ ମନୁଷ୍ୟର ଜୀବନ ସୁସଜ୍ଜିତ, ସଂଗଠିତ ଏବଂ ସଙ୍ଘବଦ୍ଧ ଥିଲା, କିନ୍ତୁ ଦୁଇ ଦୁଇଟା ଯୁଦ୍ଧର କରାଳ ବିଭୀଷିକାରେ ସମାଜର ଅନ୍ତର ଅନିଷ୍ଟନ ଭିତରେ ବ୍ୟକ୍ତି ସାମାଜିକ ଆସ୍ଥାହୀନ, ଧର୍ମଧାରଣା ଯୁଗଯୁଗର ପ୍ରତିଷ୍ଠିତ ମୂଲ୍ୟବୋଧକୁ ସଂଶୟାଚ୍ଛନ୍ନ ହୋଇ ଗ୍ରହିବାକୁ ଆରମ୍ଭ କଲା । ମଣିଷ ତାର ଅବଚେତନ ମନର ଅନ୍ତରାଳରେ କିଛି ସମୟ ଆତ୍ମଗୋପନ କରିବା ନିମନ୍ତେ ସୁଯୋଗ ଲୋଡ଼ିଲା ଏବଂ ଏହା ଅତିବାସ୍ତବବାଦିତାକୁ ନିମନ୍ତ୍ରଣ କରି ଆଣିଲା । ମନୁଷ୍ୟ ଅତିବାସ୍ତବବାଦୀ ହୋଇ ନିଜର ଚପୁଡ଼ା ମନର ଅବିକଳ ପ୍ରତିଛବି ଦର୍ପଣ ଆଗରେ ଦେଖିବାକୁ ଉତ୍ସାହୀ ହୋଇ ଉଠିଲା । ଏହିପରି ଏକ ଆଲୋଡ଼ନମୟ ପରିପ୍ରେକ୍ଷୀରେ ଆତ୍ମପ୍ରକାଶ କଲେ ସୁରେନ୍ଦ୍ର ମହାନ୍ତି । Reason ବା ହେତୁବାଦ ଓ Emotion ବା ଆବେଗକୁ ଭିତ୍ତିକରି ତାଙ୍କର ଗଳ୍ପ ଆଗେଇ ଚାଲିଛି । ବୌଦ୍ଧଯୁଗର ସ୍ମୃତିଠାରୁ ଆରମ୍ଭ କରି ବର୍ତ୍ତମାନର ସାମାଜିକ ଆର୍ଥନୀତିକ, ରାଜନୀତିକ ସମସ୍ୟା, ଇତିହାସ ଆଦି ବିଭିନ୍ନ ବିଭାବକୁ ସ୍ପର୍ଶ କରି ତାଙ୍କର ଗଳ୍ପର ଗତି ଧାବମାନ । ତାଙ୍କର ଗଳ୍ପରେ ସେ ଯୁଗର ଅହଙ୍କାର, ଆଧୁନିକ କ୍ଷତାକ୍ତ ଜୀବନର ଆର୍ତ୍ତି ଚିତ୍କାର ଓ ଆଶଙ୍କାର ଚିତ୍ର ସଙ୍ଗେ ଏକ ଆବେଗ ଉଲ୍ଲାସମୟ ନୂତନ ଜୀବନର ନବୀନ ଆଭାସ ମଧ୍ୟ ଦେଇଛନ୍ତି । ତାଙ୍କର ଗଳ୍ପ ଆତ୍ମବିସ୍ମୃତି ଓ ଆତ୍ମସଚେତନ ଏହିପରି ଦ୍ୱିବିଧ । ବଧୂପ୍ରିୟା, ମଣିଷ ଓ ଅର୍ଥନୀତି, ଭାରତ ଆବିଷ୍କାର ଓ ଅଷ୍ଟ୍ରେଲିଆ ଇତ୍ୟାଦି ଗଳ୍ପଗୁଡ଼ିକ ଆତ୍ମବିସ୍ମୃତ ପର୍ଯ୍ୟାୟଭୁକ୍ତ । ପରବର୍ତ୍ତୀ ଗଳ୍ପଗୁଡ଼ିକରେ ସେ ଆତ୍ମ-ସଚେତନ । ତାଙ୍କର ଗଳ୍ପଗୁଡ଼ିକ ଚିତ୍ରଧର୍ମୀ ଓ ରୂପଧର୍ମୀ । ତାଙ୍କର ମହାନଗରୀର ରାତି, କୃଷ୍ଣଚୂଡ଼ା, ରୁଟି ଓ ଚନ୍ଦ୍ର, ଶେଷ କବିତା, ସବୁଜ ପତ୍ର, ଧୂସର ଗୋଲାପ ଓ ମରାଳର ମୃତ୍ୟୁ ପ୍ରଭୃତି ଗ୍ରନ୍ଥଗୁଡ଼ିକ ଓଡ଼ିଆ କ୍ଷୁଦ୍ରଗଳ୍ପ ଭଣ୍ଡାରର ଏକ ଏକ ଅମୂଲ୍ୟ ସମ୍ପଦ । 'କୃଷ୍ଣ-ଚୂଡ଼ା' ଗଳ୍ପରେ ସେ ଅନ୍ତରର କମ୍ପନ ଓ ସ୍ପନ୍ଦନକୁ ପ୍ରାଧାନ୍ୟ ଦେଇଛନ୍ତି ।

ସାମ୍ପ୍ରତିକ ବିଶିଷ୍ଟ ଗାଳ୍ପିକମାନଙ୍କ ମଧ୍ୟରେ ପ୍ରାଣବନ୍ଧୁ କର, ବିଭୂତି ଭୂଷଣ ତ୍ରିପାଠୀ, ଶ୍ରୀଦ୍ଧାକର ସୂପକାର, ମନମୋହନ ମିଶ୍ର, ବାମାଚରଣ ମିତ୍ର, କମଳାକାନ୍ତ ଦାସ, ବ୍ରହ୍ମାନନ୍ଦ ପଣ୍ଡା, ଜ୍ଞାନୀନ୍ଦ୍ର ବର୍ମା, ଶାନ୍ତନୁ କୁମାର ଆଚାର୍ଯ୍ୟ, ରାଜକିଶୋର ମହାନ୍ତି, କିଶୋରୀ ଚରଣ ଦାସ, ଅଚ୍ୟୁତାନନ୍ଦ ପତି, ନିତ୍ୟାନନ୍ଦ ଶତପଥୀ, ଅଖିଳ ପଟ୍ଟନାୟକ, ମନୋଜ ଦାସ ପ୍ରଭୃତି ଅନ୍ୟାନ୍ୟ ଅନେକ ଗାଳ୍ପିକଙ୍କ ନାମ ଉଲ୍ଲେଖଯୋଗ୍ୟ । ପ୍ରାଣବନ୍ଧୁ କର ଏକାଙ୍କିକା ଲେଖକ ଭାବେ ସୁପରିଚିତ ହେଲେ ମଧ୍ୟ ତାଙ୍କର ଗାଳ୍ପିକ ବୈଶିଷ୍ଟ୍ୟ ମଧ୍ୟ

କିଛି କମ୍ ନୁହେଁ । ସେ ଫ୍ରଏଡ଼ୀୟ ଚିନ୍ତାଧାରାରେ ବିଶେଷ ଭାବେ ପ୍ରଭାବିତ । ତାଙ୍କର ସନ୍ଧ୍ୟା ଆସରର ଭୂତ ଓ ମରୁ ମୌସୁମୀ ଗଳ୍ପ ଦୁଇଟି ମନସ୍ତାତ୍ତ୍ୱିକ ଭିତ୍ତି ଉପରେ ଦଣ୍ଡାୟମାନ । ଏହା ବ୍ୟତୀତ ସୁଅ ମୁହଁରେ ପତର, ନିଶିଥର ପ୍ରେତାତ୍ମା ପ୍ରଭୃତି ଅନେକ ଗଳ୍ପ ରଚନା କରିଛନ୍ତି । ବ୍ରହ୍ମାନନ୍ଦ ପଣ୍ଡାଙ୍କ 'ବଂଶୀ ଓ ବନ୍ଦୀ', 'ସୋରେଇ', 'ସାଧାରଣ ସତ୍ୟ', 'କେନ୍ଦ୍ର ଓ ପରିଧି', ଆରଣ୍ୟକ ପ୍ରଭୃତି ଉଲ୍ଲେଖଯୋଗ୍ୟ ଗଳ୍ପ ସୃଷ୍ଟି । ତାଙ୍କ ଗଳ୍ପଗୁଡ଼ିକ ଦାର୍ଶନିକ ଚିନ୍ତାଧାରା, ସାମାଜିକ ସମସ୍ୟା, ବାସ୍ତବ ସଚେତନତା, କଳ୍ପନା ପ୍ରବଣତା ଓ ରାଜନୀତି ଚର୍ଚ୍ଚା ଆଦି ବିବିଧ ପ୍ରକାରର ଅଟେ ଏବଂ ଏଗୁଡ଼ିକ ଅତ୍ୟାଧୁନିକ ଆଭିସଚିନ୍ତ ଦ୍ୱାରା ବିଶେଷ ଜନାଦୃତ ହୋଇପାରିଛି ।

ହାସ୍ୟରସାତ୍ମକ ଗଳ୍ପ ରଚନା ମଧ୍ୟ ଆଜି ପର୍ଯ୍ୟନ୍ତ ଅବ୍ୟାହତ ରହିଛି । ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ଗଳ୍ପଗୁଡ଼ିକ ବ୍ୟଙ୍ଗାଶ୍ରୟୀ । ବିଶେଷତଃ ସମାଜର ଅନାଚାର, ଦୋଷତ୍ରୁଟି ଆଦିକୁ ତୀକ୍ଷ୍ଣ ବ୍ୟଙ୍ଗ କରି ସେ ହାସ୍ୟରସ ସୃଷ୍ଟି କରିଥାନ୍ତି । ଏସବୁ ଦୃଷ୍ଟିରୁ ଅନ୍ଧାରିମଜା, ଜର୍ଜେଟ୍ ଶାଢ଼ୀ, ଏଥର କାହାର ପାଳି ଇତ୍ୟାଦି ଉଲ୍ଲେଖଯୋଗ୍ୟ ହାସ୍ୟରସାତ୍ମକ ଗଳ୍ପ-ସୃଷ୍ଟି । ପରବର୍ତ୍ତୀ କାଳରେ ଏ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିବା ଉଦୟନାଥ ଷଡ଼ଙ୍ଗୀଙ୍କର ଦାମ୍ପତ୍ୟ କଳହେ ଚୈବ ଓ ସ୍ତ୍ରୀୟାଂ ଚରିତ୍ର; ମହାପାତ୍ର ନୀଳମଣି ସାହୁଙ୍କର ମିଛବାଘ, ଶ୍ମଶାନରୁ ସର୍ବେ ଅମୃତସ୍ୟ ପୁତ୍ରା ଓ ଫତୁରାନନ୍ଦ, ଦେବ ମହାପାତ୍ର, ଚୌଧୁରୀ ହେମକାନ୍ତ ମିଶ୍ର, ସୁନୀଳ ମୋହନ ମିଶ୍ର ପ୍ରଭୃତିଙ୍କ ଗଳ୍ପଗୁଡ଼ିକରେ ମଧ୍ୟ ହାସ୍ୟରସ ଉଦ୍ରେକକାରୀ ଶକ୍ତି ନିହିତ । ଏହା ବ୍ୟତୀତ ଗୋକୁଳାନନ୍ଦ ମହାପାତ୍ର ବୈଜ୍ଞାନିକ ବିଷୟବସ୍ତୁ ଅବଲମ୍ବନରେ ଅନେକ କ୍ଷୁଦ୍ରଗଳ୍ପ ରଚନା କରିଛନ୍ତି । 'ଉଡ଼ନ୍ତା ଥାଳିଆ' ଏହାର ଏକ ପ୍ରକୃଷ୍ଟ ନିଦର୍ଶନ । ଏହା ପାଠକର ହୃଦୟକୁ ଯେତିକି ଆନନ୍ଦ ପ୍ରଦାନ କରେ ସେତିକି ବୈଜ୍ଞାନିକ ତଥ୍ୟ ମଧ୍ୟ ଯୋଗାଇଥାଏ ।

ନାରୀ ଜୀବନର ସୁଖ ଦୁଃଖ, ହସ ଅଶ୍ରୁ, ଆଶା ନିରାଶା ତଥା ପାରିବାରିକ ଜଞ୍ଜାଳ ଝିଙ୍ଗାସା ପ୍ରଭୃତିର ଅବଲମ୍ବନରେ ଅନେକ ନାରୀ ଲେଖିକା ସ୍ୱ ସ୍ୱ ସିଦ୍ଧହସ୍ତତାର ପରିଚୟ ଦେଇଛନ୍ତି । ଶ୍ରୀମତୀ ବସନ୍ତକୁମାରୀ ପଟ୍ଟନାୟକଙ୍କର ସଭ୍ୟତାର ସାଜ, ଶ୍ରୀମତୀ ତ୍ରିବେଣୀ ଦେବୀଙ୍କର 'ଅବଗୁଣ୍ଠନ ତଳେ', ହେମଲତା ମାନସିଂହଙ୍କର 'ମରମତଳର ଢେଉ', କୁନ୍ତଳା ଆଚାର୍ଯ୍ୟଙ୍କ 'ହିସାବଖାତା' ପ୍ରଭୃତି ସେମାନଙ୍କର କୃତିତ୍ୱର ନିଦର୍ଶନ । ଶ୍ରୀମତୀ ନନ୍ଦିନୀ ଶତପଥୀ ଏବଂ ମନୋରମା ମହାପାତ୍ର ମଧ୍ୟ ଗଳ୍ପକ୍ଷେତ୍ରରେ ସୁଖ୍ୟାତି ଅର୍ଜ୍ଜନ କରିଛନ୍ତି । ଏତଦ୍‌ବ୍ୟତୀତ ରାଜେଶ୍ୱରୀ ଦଳବେହେରା, କ୍ଷୀରୋଦ୍ରା କାନୁନ୍‌ଗୋ, ଶ୍ରୀମତୀ କଳ୍ପନା କୁମାରୀ ଦେବୀ, ରମେଶ ଧଳ, ରତ୍ନାକର ଚଇନି, ଉଷାରାଣୀ ପଣ୍ଡା, ଦୁର୍ଗାମାଧବ ମିଶ୍ର, ବିଭୂତି ପଟ୍ଟନାୟକଙ୍କର ଗଳ୍ପଗୁଡ଼ିକ ସେତେ ଆଦୃତ ହୋଇ ପାରିନାହିଁ ।

ଅନୁବାଦ କ୍ଷେତ୍ରରେ ଓଡ଼ିଆ ଗାଳ୍ପିକଙ୍କ ଉଦ୍ୟମ ମଧ୍ୟ ପ୍ରଶଂସନୀୟ । ବିଦେଶୀ ଗଳ୍ପକୁ ଓଡ଼ିଆରେ ଅନୁବାଦ କରିବା ନିମନ୍ତେ ପ୍ରଭାସଚନ୍ଦ୍ର ଶତପଥୀ, ଲକ୍ଷ୍ମୀନାରାୟଣ ମହାନ୍ତି, ଗୋରାଚାନ୍ଦ ମିଶ୍ର, ଅନୁସୂୟା ପ୍ରସାଦ ପାଠକ, ରମେଶଚନ୍ଦ୍ର ମହାନ୍ତି, ରମେଶଚନ୍ଦ୍ର ଧଳ, ଗୋପାଳଚନ୍ଦ୍ର ମିଶ୍ର ପ୍ରଭୃତିଙ୍କ ସାଧନା ଅଦ୍ୟାପି ଅପ୍ରତିହତ ରହିଛି । ଓଡ଼ିଶାର ଲୋକକାହାଣୀ ସଂଗ୍ରହ ସଂକଳନ ଓ ସମୃଦ୍ଧି କ୍ଷେତ୍ରରେ ଡଃ କୁଞ୍ଜବିହାରୀ ଦାସଙ୍କର ପ୍ରଚେଷ୍ଟା

ଉଦ୍ୟମ, ଅନନ୍ତ ପ୍ରଚେଷ୍ଟା ବାସ୍ତବରେ ଅତୁଳନୀୟ । ଏହାଙ୍କ ବ୍ୟତୀତ ପ୍ରେମଲତା ଦାସ, କନକମଞ୍ଜରୀ ମହାପାତ୍ର ଓ ଅନ୍ୟାନ୍ୟ ଅନେକେ ମଧ୍ୟ ଏ ଦିଗରେ ଶ୍ରମଦାନ କରିଛନ୍ତି ।

ବିଗତ ଦଶନ୍ଧି ମଧ୍ୟରେ ଓଡ଼ିଆ କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ଅନେକ ପରୀକ୍ଷା ନିରୀକ୍ଷାର ସୂତ୍ରପାତ ହୋଇଛି । ବିଭିନ୍ନ ଗୋଷ୍ଠୀଙ୍କ ଦ୍ୱାରା ଏହା ବହୁ ପରିମାଣରେ ରଚିତ ଓ ସମାଲୋଚିତ ହୋଇ ଆଜିର ପାଠକଙ୍କ ନିକଟରେ ଖୁବ୍ ଆଦୃତ ହୋଇପାରିଛି । ଅତ୍ୟାଧୁନିକ ଗଳ୍ପକୁ ଆଣ୍ଟିସ ଗଳ୍ପ, ସଙ୍କେତ ଗଳ୍ପ, ପ୍ରତୀକ ଗଳ୍ପ, ପ୍ରବାହ ଗଳ୍ପ, ରୈଖିକ ଚିତ୍ର, ଅନାହାଣୀ ଓ ମିନିଗଳ୍ପ ଏହିପରି ବିଭିନ୍ନ ବିଭାବରେ ବିଭକ୍ତୀକରଣ କରାଯାଇପାରେ କିନ୍ତୁ ଏ ସମସ୍ତଙ୍କୁ ଆଣ୍ଟିସ ଗଳ୍ପ ନାମରେ ହିଁ ନାମିତ କରାଯାଇଛି । ଏହା ଏକ ମୁହୂର୍ତ୍ତିକର ମନସ୍ତତ୍ତ୍ୱକୁ ନେଇ ଗଢ଼ିଉଠେ । ତେଣୁ କେତେକ ସମାଲୋଚକ ଏହାକୁ ଏକାନ୍ତ ବ୍ୟକ୍ତିଗତ ଗଳ୍ପ ବୋଲି କହିଥାନ୍ତି । 'ମିନିଗଳ୍ପ' ବିଶୃଙ୍ଖଳ ମନର ଏକ ଉଦ୍‌ଗମ । ଆଧୁନିକ କବିତା ପରି ଏହା ଅବୋଧ ଏବଂ ରୂପଚେତନା, ପ୍ରତୀକଧର୍ମୀତା ବା ସାନ୍ଦ୍ରତା ଏହାର ମୁଖ୍ୟ ବିଭାବ । ଏଥିରେ ପ୍ଲଟ୍ କମ୍ବା ଚରିତ୍ର ନ ଥାଏ, ଆକସ୍ମିକ ଭାବରେ ଆରମ୍ଭ ହୋଇ ପରିସମାପ୍ତି ଆଡ଼କୁ ଏହା ଦ୍ରୁତଗତିରେ ପ୍ରଧାବିତ । ତେଣୁ ଆଜିର କ୍ଷୁଦ୍ରଗଳ୍ପ (ଆଣ୍ଟିସ ଗଳ୍ପ) ଯୁବମାନସର ଏକ ଉଦ୍ଭଟ, ଅସ୍ଥିରତାର ପରିପ୍ରକାଶ । ଆଣ୍ଟିସ ଗଳ୍ପକୁ ପୁଷ୍ଟିଳ ଓ ଆଦୃତ କରିବା ନିମନ୍ତେ ଗୌର ପଟ୍ଟନାୟକ, ରବି ପଟ୍ଟନାୟକ, ଦିଲୀପ ମହାନ୍ତି, ହରପ୍ରସାଦ ଦାସ, କୈଳାସ ଲେଙ୍କା ପ୍ରଭୃତିଙ୍କ ଉଦ୍ୟମ ପ୍ରଶଂସନୀୟ ।

ଆଜିର କର୍ମକ୍ଲାନ୍ତ ମଣିଷ ସମୟର ସ୍ୱଳ୍ପତା ମଧ୍ୟରେ କ୍ଷୁଦ୍ରଗଳ୍ପକୁ ହିଁ ନିଜର କରି ଆଦରି ନେଇଛି । ମନୁଷ୍ୟକୁ ଆନନ୍ଦ ପ୍ରଦାନ କରିବା ନିମନ୍ତେ କ୍ଷୁଦ୍ରଗଳ୍ପର ସଂକ୍ଷିପ୍ତତା ତାକୁ ବେଶ୍ ସାହାଯ୍ୟ କରିଛି । ତେଣୁ କ୍ଷୁଦ୍ରଗଳ୍ପର ଅଗ୍ରଗତି ଦିଗରେ ଲେଖକମାନଙ୍କର ଉଦ୍ୟମ ଯେତିକି ଆକର୍ଷଣୀୟ ସେତିକି ଅଭିନନ୍ଦନୀୟ ମଧ୍ୟ ।

---

# ଓଡ଼ିଆ ଉପନ୍ୟାସରେ ସ୍ଥିତିବାଦ

ଶ୍ରୀ ମଧୁସୂଦନ ପରିଡ଼ା
ଶେଷବର୍ଷ ଓଡ଼ିଆ

ସ୍ଥିତିବାଦ ସମ୍ବନ୍ଧରେ କହିବାକୁ ଯାଇ ଜ୍ୟାସ୍‌ପରସ୍ କହିଛନ୍ତି—"Now censured as individualisim, now used as a justification for personal shamelessness, it becomes the perilous foundation of a historical philosophy." (Man in the Modern Age, Page-161) ଅର୍ଥାତ୍—କେତେବେଳେ ବ୍ୟକ୍ତି ସ୍ୱାତନ୍ତ୍ର୍ୟବାଦର ଦୁର୍ନାମ ପାଇ ନିନ୍ଦିତ, କେତେବେଳେ ବ୍ୟକ୍ତିଗତ ନିର୍ଲଜ୍ଜତାର ସମର୍ଥନକାରୀ ଭାବେ ବ୍ୟବହୃତ ହୋଇ ଏହା ଏକ ଉନ୍ମାଦଗ୍ରସ୍ତ ଦର୍ଶନର ବିପଦଜନକ ମୂଳଦୁଆ ହୋଇ ପଡ଼ିଛି ।

ଡକ୍ଟର କୃଷ୍ଣଚନ୍ଦ୍ର ବେହେରା ସ୍ଥିତିବାଦ ସମ୍ପର୍କରେ କହିଛନ୍ତି—"ଏହି ସ୍ଥିତିବାଦଟି ପୁଣି ଏକ ଗୋଳମାଳିଆ କଥା । ମୋଟାମୋଟି ବୋଲିଯାଇ ପାରେ ଯେ—ମଣିଷର ସମସ୍ତ ପରିସ୍ଥ ନିରସନ ଲକ୍ଷ୍ୟରେ ସ୍ଥିତିବାଦ ବ୍ୟକ୍ତିତ୍ୱ ଉପରେ ଗୁରୁତ୍ୱ ଆରୋପ କରେ । କୌଣସି ଧର୍ମ ଧାରଣା, ସାମାଜିକ ବନ୍ଧନ, ସ୍ୱାଧୀନତା ମନୋବୃତ୍ତି ନିକଟରେ ମଥା ସ୍ୱୀକାର ନ କରି ଏହା ଘୋଷଣା କରେ—ସବାର୍ ଉପରେ ମାନୁଷ୍ ସତ୍ୟ । ସେ ମଣିଷ ପୁଣି ଏକାନ୍ତ ଭାବରେ ଏକାକୀ – ନିଜର ସୁଖ ଦୁଃଖକୁ ଯେନ ନିର୍ଜନ ଜୀବନ ପଥରେ ନିସ୍ପୃହ ଭାବରେ ଗତିକରି ଚାଲିଛି । ପଛରେ ନାହିଁ ସଂସ୍କାର, ଆଗରେ ନାହିଁ ମୁକ୍ତିର ପ୍ରଲୋଭନ । ଆପଣାର ସ୍ୱତନ୍ତ୍ର ବ୍ୟକ୍ତିତ୍ୱର ଦୀପଶିଖାରେ ସେ ଭାସ୍ୱର । ସାମ୍ପ୍ରତିକ କାଳରେ ଏହି ସ୍ଥିତିବାଦ ଏକ ମୁକ୍ତିକାମୀ ମାନବିକ ଭାବଧାରା ରୂପେ ପରିଚିତ ହୋଇଛି ।"

ବିଂଶ ଶତକର ଆଦ୍ୟଭାଗ ପରି ମଣିଷର ମନ ଆଉ ସରଳ ସାବଲୀଳ ଗତିରେ ବହି ଚାଲୁନାହିଁ । ଆଜିର ମଣିଷ ଆଗେଇ ଚାଲିଛି ଜଟିଳତା ମଧ୍ୟଦେଇ । ଯେଉଁ ମଣିଷର ଜୀବନ ଦିନେ ସମତଳ ବାହିନୀ ନଦୀ ପରି ଶାନ୍ତ, ଧୀର ଭାବରେ ଆଗେଇ ଚାଲିଥିଲା, ତାହା ଆଜି ହଜି ଯାଇଛି । ସେ ହୋଇଛି ଆଜି ଅଶାନ୍ତ, ଅଧୀର । ପ୍ରଥମ ମହାଯୁଦ୍ଧ ପରେ ପରେ ଅର୍ଥନୈତିକ, ସାମାଜିକ ବିପର୍ଯ୍ୟୟ ଫଳରେ ସେ ଜୀବନଯାତ୍ରା ପଛରେ ପଡ଼ିରହିଲା । ପ୍ରଥମ ମହାଯୁଦ୍ଧର ପ୍ରତିକ୍ରିୟା ନ ଯାଉଣୁ ପୁଣି ଆଉ ଏକ ମହାଯୁଦ୍ଧ ମାନବର ଚଳିପଥକୁ ଧ୍ୱଂସ ମୁଖକୁ ଟାଣି ନେଇଗଲା । ତାହାର ଫଳରେ ମଣିଷ ଜୀବନର ଗତିପଥ ସମ୍ପୂର୍ଣ୍ଣ ଭାବରେ ବଦଳି ଗଲା । ଯେଉଁ ମଣିଷ ନିଜର ଦୋଷ ପାଇଁ ସମସ୍ତ ପ୍ରକାର ଶାସ୍ତି ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲା, ସେ ମଣିଷ ଆଜି ତାର ଦୋଷ ପାଇଁ ଶାସ୍ତି

ଭୋଗ କରିବା ପାଇଁ ଆଗଭର ହୋଇ ବାହାରି ଆସୁନି । ଏପରିକି ସେ ଯେଉଁ ଦୋଷ କରିଛି ସେଥିପାଇଁ ସେ ନିଜକୁ ଦୋଷୀ ବୋଲି ସ୍ୱୀକାର ମଧ୍ୟ କରୁନାହିଁ । ଆଜିର ମଣିଷ କୌଣସି ଗୋଟିଏ ଦୁଷ୍କର୍ମ କରିସାରି ନିଜର ଅପକର୍ମ ପାଇଁ ଅନୁତପ୍ତ ନ ହୋଇ ବିଭିନ୍ନ ଆଳରେ ସେ ଅପକର୍ମରୁ ମୁକ୍ତି ପାଇବା ପାଇଁ କହିବୁଲେ—ମଣିଷର ମନ ସବୁବେଳ ପାଇଁ ସମାନ ନ ଥାଏ । ତାର ମନ ଭିତରେ ଯେଉଁ ପ୍ରବୃତ୍ତି ରହିଛି ସେ ତାର ଇଚ୍ଛା ବିରୁଦ୍ଧରେ ଯାଇ ଯେଉଁ କାର୍ଯ୍ୟ କରିଗଲା ସେଥିପାଇଁ ସେ କାହିଁକି ଦୋଷୀ ହେବ । ବରଂ ତାର ସେହି କୁତ୍ସିତ ମନ ସେହି ଅପକର୍ମ ପାଇଁ ଦାୟୀ । ଆଜିର ମଣିଷକୁ ସମାଜର କୌଣସି ସାମାଜିକ ପ୍ରଥା ବାନ୍ଧିରଖି ପାରିବ ନାହିଁ । ସେ ଆଜି ମୁକ୍ତ । ମୁକ୍ତ ଆକାଶର ବିହଙ୍ଗ ପରି ସେ ମନଇଚ୍ଛା ଉଡ଼ି ବୁଲିବ । ଯେଉଁଠାରେ ଇଚ୍ଛା ବସିବ, ଯେଉଁଠାରେ ଗୁହିଁବ ଖାଇବ ଏବଂ ତାର ଇଚ୍ଛା ଅନୁସାରେ ଉଡ଼ିବ । ତାର ସେଇ ସ୍ୱବୃତ୍ତିରୁ ତାକୁ କେହି ନିବର୍ତ୍ତାଇ ପାରିବ ନାହିଁ ।

କିନ୍ତୁ ସ୍ଥିତିବାଦୀମାନେ ଏମାନଙ୍କୁ ଛଳନାକାରୀ ରୂପେ ନାମ ଦେବା ସଙ୍ଗେ ସଙ୍ଗେ କହନ୍ତି ମଣିଷର ଅପକର୍ମ ପାଇଁ କେବଳ ସେହି ମଣିଷହିଁ ଦାୟୀ । ତା ପାଇଁ ଅନ୍ୟ କେହି ସେ ଦୋଷର ଭାଗୀଦାର ହୋଇ ପାରିବେ ନାହିଁ । ଆଧୁନିକତାର ଜୀବନ ଯାପନ, କାର୍ଯ୍ୟକଳାପ ବିରୁଦ୍ଧରେ ସ୍ଥିତିବାଦ ହେଉଛି ଏକ ବିଦ୍ରୋହ ।

ଡେଣ୍ଟ୍ ସ୍ୱାର୍ଫରସ୍ କହନ୍ତି—ସବୁ ସମୟରେ ଏବଂ ସବୁ ଦେଶରେ ମଣିଷର ମାନ-ମର୍ଯ୍ୟାଦା ଅଳ୍ପ ହେଉ ବା ବହୁତ ହେଉ ରହିଥିଲା । ଏହା ଏକ ନୂତନ ଦର୍ଶନ ନୁହେଁ । ମାତ୍ର ଆଧୁନିକ ଯୁଗର ମନୁଷ୍ୟ ଚରିତ୍ରକୁ ଗଠନ କରୁଥିବାରୁ ଏବଂ ସ୍ଥିତିବାଦ ସେମାନଙ୍କୁ ସେମାନଙ୍କର ମର୍ଯ୍ୟାଦା ବିଷୟରେ ସଚେତନ କରିଦେଇ ଥିବାରୁ ଆଜି ସ୍ଥିତିବାଦ ନୂଆ ରୂପ ନେଇ ଆମ ସମ୍ମୁଖରେ ଦଣ୍ଡାୟମାନ ହୋଇଛି ।

ସ୍ଥିତିବାଦ ଆଜି ସାରା ପୃଥିବୀର ଚିନ୍ତାଶୀଳ ବ୍ୟକ୍ତିଙ୍କ ଦୃଷ୍ଟି ଆକର୍ଷଣ କରିଛି । କାରଣ ମଣିଷର ସ୍ଥିତି ଆଜି ଆନ୍ତର୍ଜାତିକ ।

ଉପନ୍ୟାସ ମଣିଷର ବାସ୍ତବ ଜୀବନର ଗୃଳିଚଳଣି ଏବଂ ବାହ୍ୟ ଓ ଅଂତଃପ୍ରକୃତିର ଚିତ୍ରଣ ମଧ୍ୟ କରିଥାଏ । ଆଜିର ଜୀବନର ଛଳନା, ଧର୍ମତତ୍ତ୍ୱ, ସ୍ୱାର୍ଥଲିପ୍ସାରେ ଉପନ୍ୟାସର କଳେବର ବୃଦ୍ଧି ପାଇଥାଏ । ବିଷୟବସ୍ତୁ, ସମସ୍ୟା, ଚରିତ୍ର ଚିତ୍ରଣ, ଘଟଣା ବିନ୍ୟାସ, ଭାଷା ଏବଂ ଶୈଳୀ ଦୃଷ୍ଟିରୁ ବିଭିନ୍ନ ଉପନ୍ୟାସ ଆମର ସମ୍ମୁଖରେ ଦଣ୍ଡାୟମାନ ହୋଇଥାଏ ।

ଫକୀରମୋହନଙ୍କ ଉପନ୍ୟାସମାନଙ୍କରେ ଆମେ ଯେଉଁ ଚରିତ୍ରଗୁଡ଼ିକର ଚିତ୍ରଣ ଦେଖୁ ତାହା ଆଜିର ସମାଜରେ ବାସ କରୁଥିବା ମାନବଠାରୁ କୌଣସି ଗୁଣରେ ହୀନ ନୁହେଁ । 'ଛମାଣ ଆଠଗୁଣ୍ଠ'ର ରାମଚନ୍ଦ୍ର ମଙ୍ଗରାଜ, ଚମ୍ପା, 'ମାମୁଁ'ର ନାଜର ନଟବର ଦାସ ଏବଂ ଚିତ୍ରକଳା ସମସ୍ତେ ମଣିଷ ଥିଲେ ସତ କିନ୍ତୁ ସେମାନଙ୍କର ଚାରିତ୍ରିକ ଗୁଣ ଛଳନାରେ ପୂର୍ଣ୍ଣ ଥିଲା । ରାମଚନ୍ଦ୍ର ମଙ୍ଗରାଜ ଏବଂ ଚମ୍ପା ଯେପରି ଛଳନାରେ ସାରିଆ ଭଗିଆର

ସର୍ବସ୍ୱ 'ଛମାଣ ଆଠଗୁଣ୍ଠ' ନେଇ ଆସିଛନ୍ତି, ନାଜର ନଟବର ଏବଂ ଚନ୍ଦକଳା ମଧ୍ୟ ସେହି ଛଳନାର ଅଭିନୟ କରି ମଙ୍ଗରାଜଙ୍କ ସମସ୍ତ ସମ୍ପତ୍ତି ଜବତ କରିପାରିଛନ୍ତି । ଏହାଦ୍ୱାରା ଏମାନେ ଲାଭ କରିଛନ୍ତି ଆତ୍ମସନ୍ତୋଷ ।

ଏହାପରେ ବୈଷ୍ଣବ ଚରଣ ଦାସ ତାଙ୍କର ମନସ୍ତାତ୍ତ୍ୱିକ ଉପନ୍ୟାସ 'ମନେ ମନେ' ରେ ଅବଚେତନ ମନର ଯୌନ ଚେତନାକୁ ଦର୍ଶାଇ ଆଜିର ବାସ୍ତବ ଜୀବନକୁ ବିଶ୍ଳେଷଣ କରିପାରିଛନ୍ତି । ରାଜକିଶୋର ପଟ୍ଟନାୟକଙ୍କର 'ଚଲାବାଟ', 'ମନର ମଣିଷ' ଏବଂ ନିତ୍ୟାନନ୍ଦ ମହାପାତ୍ରଙ୍କର 'ଜୀଅନ୍ତା ମଣିଷ', 'ହିଡ଼ମାଟି', 'ଭଙ୍ଗାହାଡ଼' ଉପନ୍ୟାସ-ମାନଙ୍କରେ ଜୀବନର ଖାଲଢିପ, ଆଶା ନିରାଶା, କର୍ମ ଧର୍ମ, ଶିକ୍ଷା ଓ ଦୀକ୍ଷାର ସମନ୍ୱୟ ହୋଇପାରିଛି । ଏହି ଉପନ୍ୟାସରେ ନିଷ୍ଠୁର ହୃଦୟହୀନ ସମାଜର ଅବଗ୍ରିର ସ୍ପଷ୍ଟରୂପେ ଚିତ୍ରିତ ହୋଇଛି । ଔପନ୍ୟାସିକ କାହ୍ନୁଚରଣଙ୍କ ଶାସ୍ତି, ଝଞ୍ଜେଞ୍ଜେନ୍ଦ୍ରିକା, ଭୁଣ୍ଡ ବାଇଦ, ପଳାତକ, କା' ଇତ୍ୟାଦି ଉପନ୍ୟାସ ହେଉଛି ତାଙ୍କର ଅନବଦ୍ୟ ସୃଷ୍ଟି । ସାଧାରଣ ନାରୀକୁ ସେ ଅସାଧାରଣ କରି ତୋଳିଛନ୍ତି । ସମସ୍ତ ନାରୀଙ୍କର ମନସ୍ତାତ୍ତ୍ୱିକ ଚିତ୍ରଣ ହୋଇଛି ତାଙ୍କର ଉପନ୍ୟାସମାନଙ୍କରେ । ମନସ୍ତତ୍ତ୍ୱବିତ୍ ଫ୍ରଏଡ୍‌ଙ୍କର ପ୍ରଭାବ ଯୋଗୁ ହୁଏତ କାହ୍ନୁଚରଣ ନାରୀ ପୁରୁଷର ମନସ୍ତାତ୍ତ୍ୱିକ ବିଶ୍ଳେଷଣ କରିଛନ୍ତି । ମଣିଷ ମନରେ ଯାହା ସ୍ୱାଭାବିକ, ତାହାକୁ ସେ ମନର ଗହ୍ୱର ମଧ୍ୟରେ ଲୁଚାଇ ନ ରଖି ସେ ଆଦର୍ଶ ନେବାକୁ ଆଗଭର ହୋଇ ଉଠିନାହାନ୍ତି । ସେ ଚେତନ, ଅଚେତନ, ଅବଚେତନ ମନର ଚିତ୍ର ପ୍ରଦାନ କରି ବାସ୍ତବ ଚିତ୍ର ପ୍ରଦାନ କରିଯାଇଛନ୍ତି । ତାଙ୍କର ସମସ୍ତ ଉପନ୍ୟାସର ଚରିତ୍ରଗୁଡ଼ିକ ଦୋଷ ପାଇଁ ଶାସ୍ତି ଏବଂ ଶାସ୍ତି ପାଇଁ ପ୍ରାୟଶ୍ଚିତ କରିବାକୁ ପଛାଇ ନାହାନ୍ତି । 'ଶାସ୍ତି'ର ଧୋବା, 'ଭୁଣ୍ଡ ବାଇଦ'ର ତୁଳସୀ ଦୁହେଁ ବିଧବା ହୋଇ ମଧ୍ୟ ସେମାନଙ୍କର ନାରୀତ୍ୱର ଯୌନ ଲାଳସାକୁ ଦୂରେଇଦେଇ ପାରିନାହାନ୍ତି । ସେ ତୁଳସୀ ଚରିତ୍ର ମାଧ୍ୟମରେ ଦର୍ଶାଇଛନ୍ତି, ଜୀବନର କଠୋର ବାସ୍ତବତା ପାଖରେ ମଣିଷର ଅହଙ୍କାର ମ୍ଳାନ ହୋଇଯାଏ ।

ସ୍ଥିତବାଦିତାରେ ସମ୍ପୂର୍ଣ୍ଣ ସଫଳ ହୋଇପାରିଛି ଔପନ୍ୟାସିକ ଗୋପୀନାଥ ମହାନ୍ତିଙ୍କ 'ଦାନାପାଣି' । ଆଜିର ଏ ଛକା ପଂଝାକୁ ଦୁନିଆରେ ଖଣ୍ଡିଏ ଦାନା ଏବଂ ଢୋପାଏ ପାଣିପାଇଁ ଯେଉଁ ପ୍ରତିଯୋଗିତା, ସଂଘର୍ଷ ଲାଗି ରହିଛି ତାର ଶିକାର ହୋଇଛି ବଳିଦତ୍ତ । ଯେଉଁ ବଳିଦତ୍ତ ଦିନେ ସାହେବଙ୍କର ପ୍ରିୟପାତ୍ର ହେବାପାଇଁ ମେମ୍ ସାହେବଙ୍କ ଫୁଲ ଗଛପାଇଁ ଘୁଷୁରି ଘୁଅ ନେଇ ଯାଇଛି ସେ ଉପନ୍ୟାସର ଶେଷକୁ ଦାମିକା କାର୍‌ରୁ ଓହ୍ଲାଇଛି । କେତେ ଛଳନା, କେତେ ଆତ୍ମ ପ୍ରବଞ୍ଚନା, କେତେ ଅବିଶ୍ୱାସ ମଧ୍ୟରେ ସେ ଅତିବିଶ୍ୱାସୀ ହୋଇପଡ଼ିଛି । ଦୁନିଆଁର ସବୁ କଷ୍ଟ, ନିର୍ଯ୍ୟାତନାକୁ ସେ ଆଡ଼େଇଦେଇ ଅଗେଇଚାଲିଛି ଏପରିକି ନିଜର ସ୍ତ୍ରୀ ସରୋଜିନୀ ମଧ୍ୟ ରଣଜିତ ବାବୁଙ୍କର ଘରପାଖରେ ଘର ବୁଲିଛି । ବଳିଦତ୍ତ ପ୍ରମୋସନ ପାଇଁ ପାଗଳ ହୋଇ ବାଲୁଆ ପରି ଚତୁର ବୁଦ୍ଧି ଦ୍ୱାରା ଷଡ଼ଯନ୍ତ୍ର ଖଟାଇ ଆଗେଇ ଯାଉଥିଲା ସମୟରେ ସରୋଜିନୀର ଅତୃପ୍ତ ନାରୀତ୍ୱର ଯୌନ ଲାଳସା ବିଭିନ୍ନ ଉପାୟରେ ପ୍ରକାଶ ପାଇଛି ।

'ଦାନାପାଣି' ପରି 'ମାଟିମଟାଳ'ରେ ଗୋପୀବାବୁ ଏକ ନୂତନ ଧାରା ସୃଷ୍ଟି କରିଛନ୍ତି । ମାଟିମଟାଳର ଶାନ୍ତ ସରଳ ଗ୍ରାମ୍ୟ ଜୀବନକୁ ବାସ୍ତବଧର୍ମୀ ଧାରା ସହଜ ଗତିରେ

ଆସିଛି । ଦାନାପାଣି, ଲୟବିଳୟ, ମାଟିମଟାଳ ପରେ ଔପନ୍ୟାସିକଙ୍କର 'ଶତ୍ରୁଗଜ୍ଞସ୍ଥା' ଆରମ୍ଭ ହୋଇଛି । ଅବବାହିତା ସତ୍ତାର ଆକସ୍ମିକ ପ୍ରେମହିଁ ତାକୁ ଆତ୍ମହତ୍ୟା କରିବାପାଇଁ ବାଧ୍ୟ କରିଛି । କିନ୍ତୁ ସେ କିଛି ଠିକ୍ କରିପାରି ନାହିଁ । ସେ ଘରଣୀ ହୋଇନାହିଁ, ସେ ମା ହୋଇନାହିଁ, ସେ କ୍ଷୀର ଦେଇନାହିଁ । ସେହି ଅବବାହିତା ଶିକ୍ଷୟିତ୍ରୀ ସତ୍ତାର ଅବଦମିତ ଯୌନ ଲାଳସା ବିଭିନ୍ନ ଉପାୟରେ ପ୍ରକାଶ ପାଇଛି । ମଣିଷର ଏହି ଚିତ୍ର ନଗ୍ନଭାବେ ପ୍ରକାଶ କରାଯାଇଥିବାରୁ ଏହା ସ୍ଥିତିବାଦପର ମନେହୁଏ ।

ଔପନ୍ୟାସିକ ଅଧ୍ୟାପକ କୃଷ୍ଣପ୍ରସାଦ ମିଶ୍ରଙ୍କର ସିଂହଦ୍ୱାରୀ, ମୃଗତୃଷ୍ଣା,ରେ କୃଷ୍ଣପ୍ରସାଦ ମନଃ ସମୀକ୍ଷାର ଅଂତରାଳରେ ମାନସିକ ବିଳାସର ଚିତ୍ରଦେଇ ଅଛନ୍ତି । କ୍ଷୁଧା ମଣିଷର ପ୍ରବୃତ୍ତିକୁ, ମାନବିକ ଚେତନାକୁ ଜାଳିପୋଡ଼ି ଛାରଖାର କରିଦିଏ । ମଣିଷତ୍ୱକୁ ଲୋପକରି ପଶୁତ୍ୱରେ ପରିଣତ କରାଏ । 'କାମନାର ବିନାଶରେ ହିଁ ଏ ଦୁଃଖର ବିନାଶ' । କିନ୍ତୁ କାମନାର ଶେଷ ନାହିଁ କି ଦୁଃଖର ବି ଅଂତ ନାହିଁ । ମଣିଷର ଜୀବନ ମଧ୍ୟରେ କେତେ କାମନା କେତେ ବାସନା ଆସେ । ମାନବର ସମସ୍ତ ଚେଷ୍ଟାସତ୍ତ୍ୱେ, ବୁଦ୍ଧି ଓ ବିଚାର ସତ୍ତ୍ୱେ ତାର ଅଲକ୍ଷରେ, ଅଜଣାତରେ କାମନା ତାକୁ କବଳିତ କରେ, ଆକ୍ରମଣକରେ । ତାହାହିଁ ସମ୍ପୂର୍ଣ୍ଣଭାବରେ ରୂପାୟିତ ହୋଇଛି ଉପନ୍ୟାସ 'ମୃଗତୃଷ୍ଣାରେ' ।

ଶାଂତନୁ ଆଚାର୍ଯ୍ୟ ତାଙ୍କର 'ନର କିନ୍ନର' ଉପନ୍ୟାସରେ ନୈରାଶ୍ୟ, ସଂଶୟର ଯେଉଁ ସୂଚନା ଦେଇଥିଲେ ତାର ଦୃଢ଼ତା ପ୍ରମାଣ କରିଛନ୍ତି କେବଳ ସ୍ଥିତିରେ ।

ଏହିସବୁ ଦୃଷ୍ଟିରୁ ବିଚାରକଲେ ଜଣାଯାଏ ଯେ, ସ୍ଥିତିବାଦ ହେଉଛି ମାନବ ଜୀବନର ସଙ୍କଟକାଳୀନ ଦର୍ଶନ । ଅଧ୍ୟାପକ ଶ୍ରୀଯୁକ୍ତ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା ଯଥାର୍ଥରେ ସ୍ଥିତିବାଦ ସମ୍ପର୍କରେ କହିଛନ୍ତି – "ବିଶ୍ୱ ସାହିତ୍ୟରେ ସ୍ଥିତିବାଦୀ ସାହିତ୍ୟ ଓ ଦର୍ଶନର ପ୍ରତିଷ୍ଠାତା ସାର୍ତ୍ରେ ଓ କାମ୍ୟୁ ଆଧୁନିକ ମଣିଷର ଯେଉଁ ଅନ୍ତରଙ୍ଗ ଜୀବନର ରୂପ ଲେଖିଦେଇ ଗଲେ ତାହା ଏକାଂତ ଏକକ, ପ୍ରୟୋଜନାପେକ୍ଷୀ, ବ୍ୟକ୍ତିକେନ୍ଦ୍ରିକ, ଆତ୍ମମୁଖୀ – ଗୋଟିଏ କଥାରେ ନିଜେ ଭଲତ ଜଗତ ଭଲ, ଅଥବା ନିଜେ ଥିଲେ ବାପର ନାମ ।"

---

ସହାୟକ ଗ୍ରନ୍ଥସୂଚୀ –


୧ । ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ—ଅଭ୍ୟୁଦୟ ସାହିତ୍ୟ ସମାଜ

୨ । ଋଣ୍ଣି – ୧୩ଶ ବର୍ଷ (ମିଳିତ ୨ୟ ଓ ୩ୟ ସଂଖ୍ୟା)
ଓଡ଼ିଆ ଉପନ୍ୟାସ ସାହିତ୍ୟରେ ନୂତନ ଧାରା—ଶ୍ରୀ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା

୩ । ଝଙ୍କାର— ୨୦ ବର୍ଷ – ୧୧ଶ ସଂଖ୍ୟା –
ଆଧୁନିକ କ୍ଷୁଦ୍ର ଗଳ୍ପରେ ସଂଶୟ ଓ ସ୍ଥିତିବାଦ ଡଃ. କୃଷ୍ଣଚରଣ ବେହେରା ।

# ଭକ୍ତିରସାମୃତ

ପ୍ରାଧ୍ୟାପକ ଡକ୍ଟର ବଂଶୀଧର ମହାନ୍ତି

କେନ୍ଦ୍ରାପଡ଼ା କନ୍ଦଆ ମଠର ଭକ୍ତ ମଧୁ ଦାସ ଓଡ଼ିଶାର ଜଣେ ବିଶିଷ୍ଟ ବ୍ରହ୍ମଜ୍ଞାନୀ ବୈଷ୍ଣବ । ତାଙ୍କର 'ଭକ୍ତିରସାମୃତ' ବ୍ରହ୍ମଜ୍ଞାନ ସମ୍ବନ୍ଧୀୟ ଏକ ପ୍ରଧାନ ଗ୍ରନ୍ଥ ଯହିଁରେ କବି ସନ୍ଥ ଅରକ୍ଷିତ ଦାସଙ୍କ ପରି ନିଜ ସାଧକ ଜୀବନର ବିଭିନ୍ନ କାହାଣୀ ଲିପିବଦ୍ଧ କରିଅଛନ୍ତି । ସେ ଥିଲେ ଜାତିରେ ବୈଶ୍ୟବଣିଆ । ଗ୍ରନ୍ଥର ଶେଷ ଭାଗରେ ସେ ନିଜର ପରିଚୟ ଦେଇ କହିଛନ୍ତି—

''ବୈଶ୍ୟ କୁଳରେ ଜନ୍ମ ମୋର । ରଜତକାଞ୍ଚନ ବେଭାର । ୧୬୬ ।
ଶ୍ରୀଗୁରୁ ଆଗ୍ୟାଂ ମୋତେ ହୋଇ । ମୋ ମୁଖୁଁ ଏ ପଦ ସ୍ଫୁରଇ । ୧୬୭ ।
କହଇ ହୀନ ମଧୁ ଦାସ । ଶ୍ରୀଗୁରୁ ଚରଣେ ମୋ ଆଶ । ୧୬୮ ।'' (ଅ ୨୫)

କବି ଦ୍ୱିତୀୟ ଅଧ୍ୟାୟରେ ଭକ୍ତ ଭାବର ବିଷୟ ବୁଝାଇ ବସିଛନ୍ତି, 'ଭଗତ ଭାବକୁ ମୁଁ ବଶ । ଭାବକୁ ନିକଟେ ସୁଦୃଶ୍ୟ । ଅଭାବେ କେବେ ଦୃଶ୍ୟ ନୋହେ । ଶୁଣ ଅର୍ଜୁନ ମୁହିଁ କହେ ।' ୧୩ । ଅନ୍ୟାନ୍ୟ ଗ୍ରନ୍ଥପରି ଏହି ଗ୍ରନ୍ଥରେ ବ୍ରହ୍ମଙ୍କୁ ଅବିକାର, ଅକ୍ଷୟ ଓ ଅବ୍ୟୟ ବୋଲି ବୁଝାଯାଇଛି । ସେ ଅନାଦି ଓ ଅଣାକାର । କବି କହିଛନ୍ତି ଯେ, ଭୟ ନଥିଲେ ଭକ୍ତିର ଉଦୟ ହେବ ନାହିଁ—'ଭୟ ତୋ ଚିତ୍ତରେ ନଥିଲେ । ମୋତେ ଭେଟନ୍ତୁ କାହିଁ ଭଲେ ।' ପୁଣି 'ବିଷ ଯେ ବିଷୟୀକୁ କହି । ବିଶ୍ୱାସ ଭଗତ ଅଟଇ ।' ୮-୩୬

ଦଶମ ଅଧ୍ୟାୟରେ ମହାଶୂନ୍ୟର ପ୍ରସଙ୍ଗ ବିସ୍ତୃତ କରାଯାଇଛି ଓ ତାହା ସହିତ ଓଡ଼ିଶୀ ବୈଷ୍ଣବଧର୍ମର ଯେଉଁସବୁ ପାରଂପରିକ ତତ୍ତ୍ୱ ତାହା ମଧ୍ୟ ବର୍ଣ୍ଣିତ ହୋଇଛି । ଏକାଦଶ ଅଧ୍ୟାୟଠାରୁ କବିଙ୍କର ଜୀବନୀ ପ୍ରସଙ୍ଗ ଆରମ୍ଭ ହୋଇଛି । ସେ କହିଛନ୍ତି ଯେ, ପିଲାଦିନରୁ ତାଙ୍କର ଧୂଳିଖେଳ ଭିତରେ ମଧ୍ୟ ସେ ପ୍ରତିମା ଗଢ଼ି ତାହାକୁ ଭଗବାନ ବୋଲି ପୂଜା କରୁଥିଲେ ଐକାନ୍ତିକ ଭାବରେ । ଦିନେ ସନ୍ଥ ମଧୁ ଦାସ ପ୍ରଭାତରୁ ଇଚ୍ଛାପୁର ଗଲେ ଓ ସେଠାରୁ ଗଲେ କେନ୍ଦ୍ରାପଡ଼ାର ବଳଦେବଜୀଙ୍କ ଦର୍ଶନ କରିବା ନିମିତ୍ତ । ଗରୁଡ଼ ସ୍ତମ୍ଭ ନିକଟରେ ସେ ପ୍ରାର୍ଥନା କରୁଥିବା ବେଳେ ଭୋଗହାଣ୍ଡି ନେଇ ଆସୁଥିବା ଜନୈକ ବ୍ରାହ୍ମଣ ତାଙ୍କ ଉପରେ ଝୁଣ୍ଟି ପଡ଼ିଲା ଓ ପରେ ସେ ବ୍ରାହ୍ମଣ କ୍ରୋଧାନ୍ୱିତ ହୋଇ ତାଙ୍କୁ ପ୍ରହାର କରିବାରେ ଲାଗିଲା । ଫଳରେ ସେ ଅଚେତା ହୋଇପଡ଼ିଲେ । କେତେକ ଲୋକ ତାଙ୍କୁ ସେଠାରୁ ଝଡ଼ବର୍ଷାରେ ନେଇ ସାଷ୍ଟାମ କରାଇଲେ । ତା'ପରେ ମଧୁଦାସ ଘରକୁ ଆସି ପୂଜୁଥିବା ଜଗନ୍ନାଥଙ୍କୁ ଆଉ ପୂଜା କଲେ ନାହିଁ । ଫଳରେ ତାଙ୍କୁ ବହୁକଷ୍ଟ ଭୋଗକରିବାକୁ ପଡ଼ିଲା । ସେ ପରେ କହିଛନ୍ତି ଘର ଦେବତାହିଁ ପ୍ରକୃତ ଦେବତା । ତାଙ୍କୁ ଛାଡ଼ି ଯେ ଅନ୍ୟ ଆଡ଼େ ତୀର୍ଥବ୍ରତ କରି ଦେବଦେବୀଙ୍କ ନିକଟକୁ ଦଉଡ଼େ ତାଠାରୁ ଆଉ ମୂର୍ଖ କେହି ନାହିଁ । ଏଠାରେ ଘର ଦେବତାର ଅର୍ଥ ଶରୀର ଭିତରର ବ୍ରହ୍ମ ।

ବାଲ୍ୟକାଳରେ ସେ ମାଙ୍କ ନିକଟରେ ଧର୍ମଶାସ୍ତ୍ର ଓ ପୁରାଣାଦି ପାଠ କରୁଥିଲେ । ପିଲାଦିନରୁ ସେ କୌତୂହଳବଶତଃ କୌପୁନୀ ଧାରଣ କଲେ ପିତା ତାଙ୍କୁ କହନ୍ତି ବାବାଜି ବାବାଜି ବୋଲି । ତେବେ ସେ କହିଛନ୍ତି ଯେ, ବାଲ୍ୟ ଜୀବନରୁ ତାଙ୍କ ମନରେ ବୈରାଗ୍ୟ ଭାବର ଉଦ୍ରେକ ହୋଇଥିଲା । ତାପରେ ତାଙ୍କର ଇଚ୍ଛା ହେଲା ଧର୍ମଶାସ୍ତ୍ର ପଢ଼ିବାପାଇଁ । ନଖାଇ ନପିଇ କାହା ଘରେ ମାସେ ଦିମାସେ ରହି—ଶାସ୍ତ୍ର ମାଗି ପଢ଼ିବାକୁ ଲାଗିଲେ । ଘରକୁ ଫେରିଆସିବା ଜ୍ଞାନ ମଧ୍ୟ ତାଙ୍କର ନଥିଲା । ମନରେ ତାଙ୍କର ଆଶା ଜାଗ୍ରତ ହେଲା ଯେ ସେ କିପରି ବ୍ରହ୍ମଜ୍ଞାନ ଲାଭ କରିବେ—ସେଥିପାଇଁ ସନ୍ଥସଙ୍ଗ ଖୋଜି ବୁଲିଲେ । ସେ ଗୁହାରେ ଥାଇ ନାନାଦି ନିଷ୍ଠା ଓ ଅାଗୁର ସହିତ କାଳଯାପନ କରୁଥାନ୍ତି । ଦେହରେ ନାନାଦି ରୋଗ ହେଲା । ତେଣୁ ସେ ଦୁଃଖରେ ସବୁ ନିୟମ ନିଷ୍ଠା ଛାଡ଼ିଦେଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା ନିୟମ ନିଷ୍ଠା ଛାଡ଼ିଦେବା ପରେ ତାଙ୍କର ଶରୀର ଆରୋଗ୍ୟ ହେଲା ।

'ଯେଣୁ ମୁଂ ଆଗୁର ଛାଡ଼ିଲି । ଶରୀର ନିରୋଗୀ ହୋଇଲି ।' ୧୨-୩୧

ମଧୁଦାସ ସନ୍ଥସଙ୍ଗ ଆଦି ଖୋଜି ଖୋଜି ଯାଇ ଓଳାସୁଣୀ ପାହାଡ଼ରେ ପହଞ୍ଚିଲେ । ସେଠାକାର ପାହାଡ଼ର ସମାଧି ନିକଟରେ ତାଙ୍କର ଚେତା ବୁଡ଼ିଗଲା । ପୁଣି ସେଠାକୁ ଆସିବାପାଇଁ ବାସନା ରଖି ନିଜ ଗାଁକୁ ଫେରିଗଲେ । ଘରେ ଶୟନେ ସ୍ୱପନେ ଖାଲି ଦେଖିଲେ ସେହି ସମାଧି—ହଠାତ୍ ଦିନେ ଦେଖିଲେ, ସମାଧିରୁ ଏକ ଅଶରୀରୀ ମୂର୍ତ୍ତିର ଆବିର୍ଭାବ ଓ ସେ ହେଉଛନ୍ତି ତାଙ୍କର ଗୁରୁ । ତାପରେ ଗୃହତ୍ୟାଗୀ ହୋଇ ଗଲେ ବ୍ରହ୍ମର ସଂଧାନରେ । ଶ୍ୱାପଦସଙ୍କୁଳ ବଣ ଜଙ୍ଗଲରେ ରାତିର ଅନ୍ଧକାର ଭିତରେ ସେ ବ୍ୟାଘ୍ରର ସମ୍ମୁଖୀନ ହୋଇଛନ୍ତି, ଆଶ୍ଚର୍ଯ୍ୟ ଭାବରେ ତାଙ୍କ ପ୍ରତି ଶିଳାବୃଷ୍ଟି ହୋଇଛି । ତଥାପି ସାଧକ ସାଧୁ ନିର୍ଭୀକ ଭାବରେ ଚାଲିଛନ୍ତି । ସେ ଆସି ଖଣ୍ଡଗିରିରେ ପହଞ୍ଚିଛନ୍ତି ଓ ସେହିଠାରେ ସେ ବ୍ରହ୍ମଦର୍ଶନ କରିଥିବା ବିଷୟ କହିଛନ୍ତି ।

'ସେ ରୂପ ଦେଖିଲି ମୁଁ ତୋଳେ । ଯେଣୁ ସୁଦୟା ଗୁରୁ କଲେ ।' '୩୮'

ତହିଁରେ ସେ ଆସିଲେ ଖଣ୍ଡଗିରିରୁ କଟକ । ଝଡ଼ବର୍ଷା ଭିତରେ ସେ ନଦୀ ପାରହୋଇ ରାତିରେ ବାଟ ନପାଇ ଚାଲି ଚାଲି ଦେଖିଲେ ଯେ ସେ ଏକ ପାହାଡ଼ ଉପରେ ଭ୍ରମଣ କରୁଛନ୍ତି ଅନ୍ଧାର ଭିତରେ । ସେ ନିଜର ଅନୁଭୂତି ଲେଖିଛନ୍ତି ଏହିପରି—

''ମେଘ ଯେ ବରଷୁଣ ଥାଇ । ମୁହିଁ ଯେ ଚଳି ଯାଉଥାଇ । ୩୯ ।
ବଣା ହୋଇଣ ବଣେ ବଣେ । ବଗ୍ରୁଥାଇ ଯିବି କେଣେ । ୪୦ ।
କଣ୍ଟା ଯେ ଆଉ ବୁଦା ଥାଇ । ଯେବେ ମୁଁ ହାବୋଡ଼େ ପଡ଼ଇ । ୪୧ ।
ଅନ୍ଧାରେ ଅନ୍ଧ ପ୍ରାୟେ ହୋଇ । ଉଣ୍ଡାଳି ତାହାକୁ ଧରଇ । ୪୨ ।
ବାଦୁଡ଼ି ପ୍ରାୟେ ନପଟଇ । ତାର ଉପରେ ଚଢ଼ିଯାଇଁ । ୪୩ ।
ଉପରେ ଛାଡ଼ିଦେଇ ହାତ । ତଳକୁ ପଡ଼ଇ ତୁରିତ । ୪୪ ।'' (ଅ ୨)

ସାଧନାର ଉତ୍ଥାନପତନ ଦୁଃଖ କଷ୍ଟ ଭିତରେ ସେ ଭାବୁଛନ୍ତି—

'ମୋ ମନେ ଭୂମିରେ ଚାଲଇ । ପର୍ବତ ଶିଖେ ଚାଲୁଥାଇ' । ୪୮ । (ଅ-୧୨)

ପ୍ରଭାତ ପରେ ସାଧୁ ଭାବିଲେ ଏ କେଉଁ ପର୍ବତ ? କାହିଁ ଖଣ୍ଡଗିରି କାହିଁ ଓଲାପୁରୀ । ରାତିକ ଭିତରେ ଏତେ ବ୍ୟବଧାନ ପୂରଣ କିପରି ? ଓଲାପୁରୀରେ ସେ କିଛିଦିନ ରହି ତତ୍ପରେ ସେ ନାନା ଗ୍ରାମ ବୁଲିବୁଲି କେନ୍ଦ୍ରାପଡ଼ାର (କେନ୍ଦ୍ରାଂପାଡ଼ା) ରେ ପହଞ୍ଚିଲେ । ସେଠାରେ ସେ ଗୋଟିଏ ଗାଁରେ କିଛିଦିନ ରହି ପୁଣି ଚାଲିଲେ । କ୍ଷୁଧାତୃଷା ପାଇଁ ପ୍ରତିଜ୍ଞା କଲେ ସେ କାହାକୁ କିଛି ମାଗିବେ ନାହିଁ । ସେ କହିଛନ୍ତି ସାଧୁମାନେ ମନରେ କ୍ଷୋଧ ନ ଆଣି ମନର ଆନନ୍ଦରେ ବିହାର କରନ୍ତି । ସେଥିପାଇଁ ସେ କହିଛନ୍ତି— 'ମନ କ୍ଷୋଧିଲେ ସବୁ ନାଶ'—ସନ୍ତୋଷ ମନରେ କେହି କଣିକା ମାତ୍ର ଦ୍ରବ୍ୟ ଅର୍ପଣ କଲେ ସେ ମର୍ଭୁତ ପ୍ରାପ୍ତ ହୋଇଥାଏ । ଏହା କେବଳ ଭାବର କଥା । ଭାବଗ୍ରାହୀ ସର୍ବଦା ସନ୍ତୋଷ ହୋଇଥାନ୍ତି । କୂଟକପଟତାପୂର୍ଣ୍ଣ ସଂସାର ବଣରେ ପଡ଼ି କବି ରକ୍ତାକ୍ତ ହୋଇଛନ୍ତି । ସେ ଆତ୍ମସମର୍ପଣ କରି କହିଛନ୍ତି—

"ପ୍ରଭୁ ରଖିବେଟି ଯାହାକୁ । କେ କିସ କରିବ ତାହାକୁ ।
ପ୍ରଭୁର ଯାହାକୁ ନିର୍ଦ୍ଦୟା । ବ୍ରହ୍ମାଣ୍ଡେ ତାକୁ ନାହିଁ ଠିଆ ।" ୧୧୭ । (ଅ ୧୩)

ସନ୍ଥକବି ସାଧୁ ଦାସ ବିଭିନ୍ନ ସ୍ଥାନରେ କହିଛନ୍ତି 'ବ୍ରହ୍ମରେ ଭକ୍ତି ମୁକ୍ତି ପଥ'— ଯେଉଁଠାରେ ତର୍କ ସେଠାରେ ଭକ୍ତି ନାହିଁ, ତଦ୍ଦ୍ୱାରା ଭକ୍ତି ନାଶ ଯାଏ । ଗ୍ରନ୍ଥର ଅଷ୍ଟାଦଶ ଅଧ୍ୟାୟରେ କବି ଓଡ଼ିଶାର ଅନ୍ୟାନ୍ୟ ବ୍ରହ୍ମଜ୍ଞାନୀ କବିଙ୍କ ପରି ବେଦାନ୍ତ ତତ୍ତ୍ୱର ସମୀକ୍ଷା କରି ବ୍ରହ୍ମ ଓ ତାହାର ସ୍ୱରୂପ ନିର୍ଣ୍ଣୟ କରିଛନ୍ତି ।

ସନ୍ଥ ସାଧୁଚରଣ ବହୁ ଗୀତା, ସଂହିତା ଶାସ୍ତ୍ର ଅଧ୍ୟୟନ କରିଥିବାର ବିଷୟ 'ଭକ୍ତି-ରସାମୃତ' ଗ୍ରନ୍ଥରୁ ଜଣା ପଡ଼ିଥାଏ । ଓଡ଼ିଆ ଗୀତା ଓ ସଂହିତା ସାହିତ୍ୟ ଏପର୍ଯ୍ୟନ୍ତ ଅଗମ୍ୟ ହୋଇ ରହିଛି ।

ଗୀତା ଓ ସଂହିତା ସମ୍ବନ୍ଧରେ କୁହାଯାଇଛି—

'ଗୀତା ପ୍ରଲମ୍ବାସାର (ପ୍ରଣବସାର) କହିଂ । ବ୍ରହ୍ମ ଗୀତାପ୍ରେକ ଅଛଇ । ୬୪ ।
ଭଗବଦ ଯେ ଗୀତା ଜାଣ । ଗୀତା ଛତିଶ ଅଛି ପୁଣ । ୬୫ ।
ବତିଶ ଗୀତା ପ୍ରେକକହି । ତ୍ରେଣ ଚଉଦ ଗୀତା ଥାଇ । ୬୭ ।
ତ୍ରେଣ ଚବିଶ ଗୀତା ଏକ । ଗୁପ୍ତ ଗୀତାପ୍ରେ କବିଦେଖ । ୬୭ ।' (୩୧୯)

ଏହାଛଡ଼ା କବି ଉଲ୍ଲେଖ କରିଛନ୍ତି ବ୍ରହ୍ମାଣ୍ଡଗୀତା, ଦାର୍ଢ୍ୟତାଭକ୍ତି ଗୀତା, ସପ୍ତୋଦଶ ଗୀତା, ଭିକ୍ଷୁ ଗୀତା, ବିରାଟ ଗୀତା, ବିରାଟ ଯନ୍ତ୍ରଂ, ମନଚୈତନ୍ୟ ଗୀତା, ତ୍ରିଶୂଳ ଗୀତା, ବ୍ରହ୍ମାଣ୍ଡ ଭୂଗୋଳ ଗୀତା, ତୁଳାଭିଣା ଗୀତା, ବ୍ରହ୍ମସଂହିତା ଗୀତା କଥା, ଗରୁଡ଼ ଗୀତା, ହନୁମନ୍ତ ଗୀତା, ଅମରକୋଷ ଗୀତା, ଅକ୍ରୂର ଗୀତା, ଅର୍ଜ୍ଜୁନ ଗୀତା, ସପ୍ତାଙ୍ଗ ଗୀତା, କର୍ମ ସଂହିତା ଗୀତା, ଦୁର୍ଗାସ୍ତ ଗୀତା (ଯମଗୀତା—ଦୀନକୃଷ୍ଣ), ନାମରତ୍ନ ଗୀତା, ରାଧାମୃତ ଗୀତା, ନାମରତ୍ନାବଳୀ ଗୀତା, ଭାଗବତ ରତ୍ନମାଳିକା ଗୀତା, ହଂସ ଦୀକ୍ଷା ଗୀତା, ଦିବ୍ୟ-ଦେହି ଗୀତା, ଚୈତନ୍ୟ ଚରଣ ଅମୃତ, ଅପ୍ରକାଶ ଗୀତାପ୍ରେଷାତ । ୭୧ ।, ଶୂନ୍ୟସାଗର ଗୀତା, ଗୁଣସାଗର ଓ ନାମବ୍ରହ୍ମ ଗୀତା, ଭକ୍ତି ରତ୍ନାବଳୀ ଗୀତା, ପ୍ରଣବ ଗୀତା, ମହି ମଣ୍ଡଳ ଗୀତା, ଭକ୍ତିଟୀକା, ଭାଗବତଟୀକା, ଜ୍ଞାନଚୂଡ଼ାମଣି ଟୀକା, ଜ୍ଞାନପରତେ ଚୂଡ଼ାମଣି, ଭାରତଟୀକା ଗୀତା, ଦାରୁବ୍ରହ୍ମ ଗୀତା ।

ଟୀକା ଗ୍ରନ୍ଥ ମଧ୍ୟରେ ରାମାୟଣଟୀକା, ଅଷ୍ଟାଦଶ ପୁରାଣଟୀକା, ଟୀକାସପ୍ତାଙ୍ଗ, ଚତୁର୍ଦ୍ଧାବନ୍ଦନାଟୀକା, ଅମରକୋଷଟୀକା, ପଦ୍ମକଳ୍ପଟୀକା ଇତ୍ୟାଦି ।
ବ୍ରହ୍ମଙ୍କ କବି ଲେଖିଛନ୍ତି—

'ଯେତେ ସବୁ ଗୀତା ଯେ ଅଛନ୍ତି । କେତେ କହିବି ତୋତେ ଚନ୍ଦ୍ରି । ୧୩ ।
ଅନେକ ଅଛି ଆଉ ପୁଣ । ଏତିକ କଲଇଂ ବଖାଣ । ୧୪ । (ଅ୨୦)

ଏଥିରୁ କବିଙ୍କର ବହୁଶାସ୍ତ୍ରଦର୍ଶିତାର ପରିଚୟ ମିଳିଥାଏ କହିବା ବାହୁଲ୍ୟ ହେବ । ସେ ଗାଁ ଗାଁ ବୁଲି ବୁଲି ଲୋକ ଉପାସରେ ରହି ଶାସ୍ତ୍ର ପଢ଼ିବା କଥା ଯାହା କହିଛନ୍ତି ତାହା ସତ । ଏହି ସବୁ ଗୀତା ଓ ଟୀକା ଗ୍ରନ୍ଥ ଭିତରୁ ଅନେକ ପ୍ରକାଶିତ ଓ ଅନେକ ମଧ୍ୟ ଅପ୍ରକାଶିତ । ପଞ୍ଚସଖା ସାହିତ୍ୟର ଇତିହାସ ବା ବ୍ରହ୍ମଜ୍ଞାନ ମୂଳକ ସାହିତ୍ୟର ଆଲୋଚନା ନିମିତ୍ତ ଏହି ବିବରଣୀ ଯେ ବହୁ ଅମୂଲ୍ୟ ଉପାଦାନ କହିବା ବାହୁଲ୍ୟ ହେବ ।

କବି କହିଛନ୍ତି ଯେ ସଂସାରୀ ହୋଇ ମଧ୍ୟ ତା ଭିତରେ ବ୍ରହ୍ମଙ୍କ ପ୍ରତି ଭାବ ରଖିବାରେ ସଂସାରୀ ସଂସାରର ଦୁଃଖକଷ୍ଟରୁ ତ୍ରାଣ ପାଇଥାଏ । ଏହି ପ୍ରସଙ୍ଗରେ ମୀନ କଚ୍ଛପ ଦି ଜଳଜୀବ ପୂର୍ଣ୍ଣ ପଦ୍ମଶୋଭିତ ସରୋବରର ଉପମା ଦେଇ କହିଛନ୍ତି ଯେ ବହୁ ଜଳଜୀବ ମଧ୍ୟରେ ପଦ୍ମ ଥାଇ ମଧ୍ୟ ତାହାର ଧ୍ୟାନ ସୂର୍ଯ୍ୟଙ୍କ ପ୍ରତି—ଜୀବାତ୍ମାରୂପୀ ପଦ୍ମ ପରମାତ୍ମାରୂପୀ ସୂର୍ଯ୍ୟଙ୍କୁ ଧ୍ୟାନ କରିବା ଉଚିତ । ଦେହ ଥିଲେ ବିକାର ରହିବା ଅନିବାର୍ଯ୍ୟ—ଏଥିରେ ମର୍ମାହତ ବା ବିବ୍ରତ ନ ହୋଇ ଉପରୋକ୍ତ ସାଧନ ଅବଲମ୍ବନ କଲେ ସଂସାରୀ ସୁଖୀ ହୋଇପାରିବ ।

କବି ଶେଷ ଅଧ୍ୟାୟରେ ମନୁଷ୍ୟର ବ୍ରହ୍ମଲାଭ ନିମିତ୍ତ ବୈଷ୍ଣବ ଆଚାର ଆଦି ବର୍ଣ୍ଣନ କରି ଉପଦେଶ ଦେଇଛନ୍ତି ଓ ଗୁରୁତତ୍ତ୍ୱକୁ ଶ୍ରେଷ୍ଠ ବୋଲି ପ୍ରତିପାଦନ କରିଅଛନ୍ତି । ଦୁଃଖର କଥା ଏହି ଉପାଦେୟ ଅମୂଲ୍ୟ ଗ୍ରନ୍ଥ ଏ ପର୍ଯ୍ୟନ୍ତ ପ୍ରକାଶଲାଭ କରିନାହିଁ ।

ଗ୍ରନ୍ଥର ବିବରଣୀରୁ ଜଣାଯାଏ ଯେ କବି, ଅରକ୍ଷିତ ଦାସଙ୍କ ପରବର୍ତ୍ତୀ କବି ଓ ସେ ତାଙ୍କର ମତାବଲମ୍ବୀ ଥିଲେ । କଟକ ଜିଲ୍ଲାର ଓଲାସୁଣୀ ପାହାଡ଼ରେ ଅରକ୍ଷିତ ଦାସଙ୍କ ମଠ ରହିଛି । ସନ୍ଥ ମଧୁଦାସ ଓଲାସୁଣୀ ପାହାଡ଼ର ସମାଧିରୁ ସେହି ଅଶରୀରୀ ଗୁରୁଙ୍କ ଦର୍ଶନ କରିଥିବା କଥା କହିଛନ୍ତି ସେ ନିଶ୍ଚୟ ଅରକ୍ଷିତ ଦାସ । ଏ ସବୁ ବିଦ୍ୟାନୁଭୂତିର କଥା । ତେବେ ଯାହାହେଉ କବି ଅଷ୍ଟାଦଶ ଶତାବ୍ଦୀ ଶେଷ ଭାଗର ବୋଲି ଜଣାଯାଇଥାଏ ।

ଶେଷ ଅଧ୍ୟାୟରେ ଏହି ଗ୍ରନ୍ଥର ନାମକରଣ ପ୍ରସଙ୍ଗରେ କବି ଲେଖିଛନ୍ତି—

'ଭକ୍ତିରେ କରି ଏହା ପାନ । ଯେତେ ବ୍ରହ୍ମରସ ବ୍ରହ୍ମଜ୍ଞାନ ।
ତେଣୁଟି ଭକ୍ତି ରସାମୃତ । ଗୀତାରେ ହୋଇଅଛି ଖ୍ୟାତ । ୧୬୭ ।
କହିଲି ହୀନ ମଧୁଦାସ । ସେହି ବ୍ରହ୍ମକୁ ମୋର ଆଶ । ୧୬୮ ।
ଯେତେ ଗୀତା ସଂପୂର୍ଣ୍ଣ ହୋଇଲା । ପଞ୍ଚବିଂଶ ଅଧ୍ୟା ବଢ଼ିଲା । ୧୬୯ ।
ଭକତି ରସାମୃତ ନାମ । ପଚିଶ ଅଧ୍ୟାରେ ସମ୍ପୂର୍ଣ୍ଣ । ୧୭୦ ।
(ଅ୨୫)

ନିକଟରେ ଅରକ୍ଷିତ ଦାସଙ୍କ ଏକଶତ ଅଧ୍ୟାୟ ବିଶିଷ୍ଟ 'ମହିମମଣ୍ଡଳ ଗୀତା' ପ୍ରକାଶିତ ହୋଇଅଛି । ଅରକ୍ଷିତ ଦାସଙ୍କର ଧର୍ମ ମତ 'ଆଲେଖଧର୍ମ' ଭାବରେ କଥିତ ଯେଉଁଥିରେ 'ବ୍ରହ୍ମ' ବା 'ନିର୍ଗୁଣ ବ୍ରହ୍ମ'ଙ୍କୁ ସର୍ବୋଚ୍ଚ ସ୍ଥାନ ଦିଆଯାଇଛି । କବି ମଧ୍ୟ ଅରକ୍ଷିତ ଦାସଙ୍କର ପଦାଙ୍କ ଅନୁସରଣ କରି ଉକ୍ତ ମତ ତାଙ୍କର ଭକ୍ତିରସାମୃତ ଗ୍ରନ୍ଥରେ ପ୍ରଖ୍ୟାପନ କରିଅଛନ୍ତି ।

କୌଣସି ଓଡ଼ିଆ ସାହିତ୍ୟ ଇତିହାସରେ ଏହି ଗ୍ରନ୍ଥର ଉଲ୍ଲେଖ ନାହିଁ । ଅରକ୍ଷିତ ଦାସଙ୍କୁ ଛାଡ଼ିଦେଲେ ସାଧକ ଜୀବନର ବାସ୍ତବ ଚିତ୍ର ସନ୍ଥ ମଧୁଦାସଙ୍କ କୃତି ବ୍ୟତୀତ ଅନ୍ୟ କୌଣସି ଗ୍ରନ୍ଥରେ ଦେଖିବାକୁ ମିଳେନାହିଁ । ଓଡ଼ିଶାର ବହୁ ସନ୍ଥ କବିଙ୍କର ପରିଚୟ ଏ ପର୍ଯ୍ୟନ୍ତ ବିସ୍ମୃତି-ଯବନିକାର ଅନ୍ତରାଳରେ ଇତଃସ୍ତତ ପଡ଼ିରହିଛି । ଏହିସବୁ ଗ୍ରନ୍ଥରେ ଆମର ସାହିତ୍ୟ ଓ ସଂସ୍କୃତି ସଂଜୀବିତ । ଏହିସବୁ ରତ୍ନର ଉଦ୍ଧାରରେ ଆମେ ଯେ ବିଲୁପ୍ତ ପ୍ରାୟ ସାହିତ୍ୟ ସାଧକମାନଙ୍କର ସ୍ମୃତି ତର୍ପଣ କରିବା ତାହା ନୁହେଁ, ଆମେ ଏହା ଦ୍ୱାରା ଆମ ଜାତିର ଗୌରବମୟ ସାହିତ୍ୟ ଓ ସଂସ୍କୃତିର ଇତିହାସକୁ ସମୃଦ୍ଧିବନ୍ତ କରିପାରିବା ।

---

# ଓଡ଼ିଆ ଉପନ୍ୟାସରେ ଚେତନା ପ୍ରବାହ ଧାରା

ଶର୍ମିଷ୍ଠା ମହାନ୍ତ

ସାହିତ୍ୟର ବିଭିନ୍ନ ବିଭାଗ ଭିତରେ କାବ୍ୟ, କବିତା, ଗଳ୍ପ ତଥା ନାଟକ ତୁଳନାରେ ଉପନ୍ୟାସ ଏକ ଅର୍ବାଚୀନ ସୃଷ୍ଟି ହେଲେ ହେଁ ମାନବ ସମାଜ ତଥା ସଭ୍ୟତା ପ୍ରତି ତାହାର ଅବଦାନ ଅତୁଳନୀୟ । ଆଜିର ମାନବ ଜୀବନ ବହୁ ଜଟିଳତା ଭିତରେ ପିଷ୍ଟ । ବିଜ୍ଞାନର ଅଗ୍ରଗତି ତା ମନରେ କଳ୍ପନାତୀତ ଆଶାର ଯେଉଁ ସୁରମ୍ୟ ସୌଧ ତୋଳିଥିଲା, ପ୍ରଥମ ବିଶ୍ୱଯୁଦ୍ଧର ପ୍ରଚଣ୍ଡ ଧକ୍କାରେ ସେହି ଆଶାର ସୌଧ ଅଚିରେ ଭୂଲୁଣ୍ଠିତ ପଡ଼ିଲା । ହତାଶା, ଗ୍ଲାନିର ବାଲିଝଡ଼ରେ ତାର ସବୁଜ ହୃଦୟ ହେଲା ଧୂସର । ହା' ହୁତାଶର ବହ୍ନିଶିଖାରେ ତାର ମନ ହେଲା ଦଗ୍ଧୀଭୂତ । ଏହି ଦ୍ୱନ୍ଦ୍ୱସଂକୁଳ ଦଗ୍ଧ ମନ, କ୍ଷତବିକ୍ଷତ ରକ୍ତାକ୍ତ ହୃଦୟର ସଂଘର୍ଷାତ୍ମକ ଚିନ୍ତାଧାରାକୁ କାବ୍ୟ, କବିତା, ଗଳ୍ପ, ନାଟକ ତଥା ପାରମ୍ପରିକ ଉପନ୍ୟାସରେ ସୁସ୍ପଷ୍ଟ ରୂପେ ପ୍ରକାଶ କରିବା ପାଇଁ ସେ ଅକ୍ଷମ ହୋଇପଡ଼ିଲା । ଫଳରେ ବାସ୍ତବ ଜୀବନର ଏହି ନିରାଟ ସତକଥାର ବର୍ଣ୍ଣନା କରି, ମଣିଷ ମନର ଏକ ପୂର୍ଣ୍ଣ ପରିଚୟ ଦେବାପାଇଁ ଉପନ୍ୟାସ କ୍ଷେତ୍ରରେ ବହୁ ସାଧ୍ୟ ସାଧନାତ୍ମକ ପରୀକ୍ଷା ନିରୀକ୍ଷା ଦେଖାଦେଲା । ଯାହା ଫଳରେ ଉପନ୍ୟାସର ଆଙ୍ଗିକ ତଥା ଆତ୍ମିକ ବିଭବରେ ଦେଖାଦେଲା ଏକ ନୂତନ ମୂଲ୍ୟବୋଧ ।

ମଣିଷର ଏକ ସ୍ୱୟଂସମ୍ପୂର୍ଣ୍ଣ ପରିଚୟ ଦେବାପାଇଁ ତାର ବାହ୍ୟ କାର୍ଯ୍ୟକଳାପ ଅପେକ୍ଷା ଆନ୍ତଃ ପ୍ରକୃତିର ଅନ୍ଧାର ଗହ୍ୱରରେ ଆଲୋକ ସମ୍ପାତ କରିବାରେ ଆଧୁନିକ ଔପନ୍ୟାସିକ ଅଧିକ ଆଗ୍ରହୀ ହୋଇଉଠିଲେ । ମନସ୍ତତ୍ତ୍ୱବିତ୍ William Jamesଙ୍କ ମତରେ ଏହି ଆନ୍ତଃ ପ୍ରକୃତି ବା ମନସ୍ତତ୍ତ୍ୱ ହେଉଛି, "Science of mental life, both of the phenomena and of their conditions. The phenomena are such things as we call feelings, desires, cognitions, reasonings, decisions and the like." ମାନସିକ ଅଦ୍ଭୁତ କାର୍ଯ୍ୟକଳାପ ଏବଂ ତା ଅବସ୍ଥାର ବୈଜ୍ଞାନିକ ଅନ୍ୱେଷଣ ହିଁ psychology । ଏହି ମନସ୍ତତ୍ତ୍ୱ ହିଁ stream of consciousness ବା ଚେତନା ପ୍ରବାହ ଧାରାର ମୂଳ ଉତ୍ସ ବା ଜନ୍ମପୀଠ । ପୃଥିବୀ ଇତିହାସରେ ସର୍ବପ୍ରଥମେ William

James ଏହାର ସନ୍ଧାନ କରିଥିଲେ ୧୮୮୬ ଖ୍ରୀଷ୍ଟାବ୍ଦରେ ଏବଂ ୧୮୯୦ରେ ତାଙ୍କର "Principles of Psychology" ଗ୍ରନ୍ଥରେ ଏହାକୁ ପ୍ରକାଶ କରିଥିଲେ ।

ଉପନ୍ୟାସ ଜଗତରେ ଏହି ଚେତନା ପ୍ରବାହଧାରା ଏକ ଉଲ୍ଲେଖଯୋଗ୍ୟ ନୂତନ ଦିଗନ୍ତର ସନ୍ଧାନ ଦେଇଥିଲା । Leon Edelଙ୍କ ମତରେ କଳ୍ପନାତୀତ ଭାବରେ ଏହା ଉପନ୍ୟାସର ପରିସରକୁ ପରିବର୍ଦ୍ଧିତ କଲା ଏବଂ ଏଥିରେ ମଣିଷର ଅବଚେତନ ମନର ଜଟିଳତାର ଗଭୀର ଚିତ୍ର ଅଙ୍କନ କରିବାର ପ୍ରଥମ ପ୍ରୟାସ ଦେଖାଦେଇଥିଲା । ଏହି ନୂତନ ବସ୍ତୁର ଆବିଷ୍କାର ପରେ ଉପନ୍ୟାସ ଜଗତରେ ଏକ ନୂତନ ଶୈଳୀର ପ୍ରୟୋଜନ ମଧ୍ୟ ଅନୁଭୂତ ହେଲା ।

ସାହିତ୍ୟ କ୍ଷେତ୍ରରେ ଏହି ନୂତନ ଆଗନ୍ତୁକଙ୍କ ଜନ୍ମ ୧୯୧୩ରୁ ୧୯୧୫ ମଧ୍ୟରେ ହୋଇଥିଲା । ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ତିନିଜଣ ଔପନ୍ୟାସିକ ପରସ୍ପର ଅଜଣା ଭାବରେ ନିଜ ନିଜର ସାହିତ୍ୟ ସାଧନାରେ ବ୍ୟସ୍ତ ଥିଲେ, ଯାହା ପରବର୍ତ୍ତୀ ଇଂରାଜୀ ଉପନ୍ୟାସ ଜଗତ ଉପରେ ଯଥେଷ୍ଟ ପ୍ରଭାବ ପକାଇଥିଲା । ଫରାସୀ ଲେଖକ Marcel Proust ୧୯୧୩ ଖ୍ରୀଷ୍ଟାବ୍ଦ ବେଳକୁ ତାଙ୍କ "Remembrance of Things Past"ର ଲେଖା ଆରମ୍ଭ କରିଥିଲେ । ଏହି ଗ୍ରନ୍ଥ ସମ୍ପୂର୍ଣ୍ଣ ଥିବା ବେଳେ ଇଂରାଜୀ ମହିଳା Dorothy Miller Richardson ତାଙ୍କ ଶ୍ରେଷ୍ଠ ଗ୍ରନ୍ଥ "Pilgrimage"ରେ ପରୀକ୍ଷାମୂଳକ ଭାବରେ ନୂତନ ଦୃଷ୍ଟିକୋଣର ପରିବେଷଣରେ ବ୍ୟସ୍ତ ଥିଲେ । ଏକ ପଦ୍ଧତି ପ୍ରଣାଳୀର ଦୁଇପଟରୁ ଯେତେବେଳେ ଦୁଇଜଣ ସମ୍ମାନ ଯୋଗ୍ୟ ଲେଖକ ନିଜ ନିଜ ସାହିତ୍ୟିକ କୃତିର ବୃହତ୍ ନୌକାକୁ ଭସାଇ ଦେଇଥିଲେ, ସେହି ସମୟରେ ଅନ୍ୟ ଜଣେ Irish ଲେଖକ ଜେମ୍ସ୍ ଜୟେସ୍ ତାଙ୍କ ଉପନ୍ୟାସ "A Potrait of the Artist as a Young Man" ପୁସ୍ତକ ସମାନ୍ତରରେ ପ୍ରକାଶ କରିବା ଆରମ୍ଭ କରି ଦେଇଥିଲେ । ଏହି ପରିପ୍ରେକ୍ଷିରୁ ଜନ୍ମ ନେଲା ଏକ ନୂତନ ସମ୍ପଦ—ଚେତନାପ୍ରବାହ ଧାରାର ଉପନ୍ୟାସ ବା ସ୍ୱଗତାତ୍ମକ ନୀରବ ଉପନ୍ୟାସ ।

ମନୋବିଜ୍ଞାନର ଗବେଷକମାନଙ୍କ ମତରେ ଚେତନ ହେଉଛି ଅତୀତର ଅନୁଭୂତି, ବର୍ତ୍ତମାନର ଅନୁଭବ ଏବଂ ଯେଉଁ ଅନୁଭୂତି ଦିଗହିଜା ଭବିଷ୍ୟତରେ ମଧ୍ୟ ଆତ୍ମଗୋପନ କରିବା ପାଇଁ ଧାବିତ, ତାହାର ଏକ ମିଶ୍ରରୂପ । ମାନବର ପ୍ରତି ମୁହୂର୍ତ୍ତର ପ୍ରତ୍ୟେକ ଭାବନା ବ୍ୟକ୍ତିଗତ ଚେତନାର ଏକ ଅଂଶ ବିଶେଷ ଏବଂ ନିତ୍ୟ ପରିବର୍ତ୍ତନଶୀଳ । ମାନବର ଅବଚେତନ ମନ ଏହି ପ୍ରବହମାନ ଚିନ୍ତାଧାରାର ଏକ ରଙ୍ଗଶାଳା । ଯେଉଁଠି ଅନେକ ଚିନ୍ତାର ଆବିର୍ଭାବ ହୁଏ, ତାର ବିଲୟ ବି ହୁଏ । ମଣିଷ ତାର ଅତୀତ ସହ ବର୍ତ୍ତମାନର ତୁଳନା କରେ ଏବଂ ଭବିଷ୍ୟତର ଦିଗହିଜା ଅନ୍ଧକାରରେ ତାର ଭବିଷ୍ୟତ ଚିନ୍ତାଧାରା ବିଲୀନ ହୁଏ । ତାର ଅବଚେତନ ମନରେ ଅତୀତ, ବର୍ତ୍ତମାନ ଏବଂ ଭବିଷ୍ୟତ ଏକ ସରଳ ରେଖାରେ ଗତିକରେ ।

ଉପନ୍ୟାସର ଏହି ନୂତନ ଶୈଳୀ କାହାଣୀର ପ୍ରାଧାନ୍ୟକୁ ପୃଷ୍ଠଭୂମିରୁ ଅପସାରିତ କରିଦେଲା । ଯାହା ଫଳରେ ଚରିତ୍ର ବା 'hero' ପରିଧିର ଅନ୍ତରାଳକୁ ଚାଲିଗଲା ।

ସମାଲୋଚକଙ୍କ ମତରେ ଆଧୁନିକ ଉପନ୍ୟାସରେ କାହାଣୀର ମୃତ୍ୟୁ ଘଟିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଆଜନ୍ମ ଅନ୍ଧ Irish ମନସ୍ତତ୍ତ୍ୱବିତ୍ ଜେମ୍ସ୍ ଜୟେସ୍ କୋଲାହଳ-ମୟ ଡବ୍‌ଲିନ୍ ସହରରେ ସମଗ୍ର ଜୀବନ ବିତାଇ ଦେଇଥିଲେ । ଦୃଷ୍ଟିଶକ୍ତି କ୍ଷୀଣ ହୋଇ-ଥିବାରୁ ମାନସିକ ଅନୁଭୂତି ହିଁ ତାଙ୍କ ପାଖରେ ଥିଲା ସବୁଠାରୁ ବଡ଼ କଥା । ଫଳରେ ପ୍ରତ୍ୟେକ ମୁହୂର୍ତ୍ତର immediate conscienceକୁ ଧରି ରଖିବା ପାଇଁ ସେ ଚାହୁଁଥିଲେ । ଯାହାକୁ ସେ କହୁଥିଲେ—An epiphany ; ମୁହୂର୍ତ୍ତିକର ଚେତନାକୁ ବାସ୍ତବ ରୂପ ଦେଇ, ଅନୁଭୂତିର ବିଶ୍ଳେଷଣ କରିବା ଫଳରେ ଉପନ୍ୟାସ ପରିବର୍ତ୍ତିତ ରୂପସହ ତାର ଗତିପଥ ବଦଳାଇଲା ।

ଜୟେସ୍‌ଙ୍କ ମତରେ ପାଠକ ସଚେତନ ହୋଇ ଲେଖକ ନିଜର ମତ ବ୍ୟକ୍ତ କରିବା ଫଳରେ ଉପନ୍ୟାସର ଗତିପଥ ଶିଥିଳ ହୁଏ । ସେଇଥିପାଇ ସେ ନିଜେ ଉପନ୍ୟାସର ପରିସରକୁ ପଶିଆସି ନିଜେ କିଛି ନ କରି ପାଠକଙ୍କୁ ସିଧାସଳଖ ଅବିଚ୍ଛିନ୍ନ ଭାବରେ ଔପନାସିକ ଚରିତ୍ରର ମାନସିକ ଅନୁଚିନ୍ତନସହ ପରିଚିତ କରାଇବାର ଚେଷ୍ଟା କରିଛନ୍ତି । ତାଙ୍କ ଉପନ୍ୟାସର ସମଗ୍ର କଳେବରରେ ଯାହା କିଛି ଘଟି ଯାଉଥିଲା ତାହା କେବଳ ଚରିତ୍ରର ମାନସିକ ଚେତନଶକ୍ତି ଦ୍ୱାରାହିଁ ପ୍ରତିଫଳିତ ହେଉଥିଲା । ଚରିତ୍ରର ମନ ଏକ ଜ୍ୱଳନ୍ତ ପ୍ରତିଫଳକ ରୂପେ ତାଙ୍କର ପ୍ରତ୍ୟେକ ଉପନ୍ୟାସରେ ଦେଖାଦେଇଛି ।

Dorothy Richardson, Marcel Proust, Leon Edle ଏବଂ Jemes Joyceଙ୍କ ଦ୍ୱାରା ଉପନ୍ୟାସ ତାର ବର୍ଣ୍ଣନାତ୍ମକ କାହାଣୀ ପରିବେଷଣର ମନୋବୃତ୍ତି ଛାଡ଼ି ମାନବର ଅନ୍ତଃକରଣର ନିଭୃତ ପ୍ରଦେଶର ଏକ ବିଶ୍ଳେଷଣାତ୍ମକ ଚିତ୍ର ଅଙ୍କିଲା । Richardson, Woolf ଏବଂ Joyce ରୋମାଣ୍ଟିକ୍ ଭାବପ୍ରବଣତାର ପକ୍ଷପାତୀ ନ ଥିଲେ । ସେମାନେ ବିଶେଷ ଭାବରେ ମାନବିକ ଚେତନାର ଜଟିଳତା ଏବଂ ପ୍ରବାହ ପ୍ରତି ଆଗ୍ରହୀ ଥିଲେ ଏବଂ ଏହି ଆଭ୍ୟନ୍ତରୀଣ ବାସ୍ତବତାର କଳାତ୍ମକ ଅଭିବ୍ୟକ୍ତି ପାଇଁ ଚେଷ୍ଟା କରିଥିଲେ । ମନସମୀକ୍ଷାର ପରିସର ସୀମିତ ନୁହେଁ କିମ୍ବା ଏହାର ଶେଷ ନାହିଁ । ବରଂ ଏହା ଚେତନା ରାଜ୍ୟର ଗୁପ୍ତ ରହସ୍ୟକୁ ଉନ୍ମୁକ୍ତ କରି ମନର ଅନ୍ଦର ମହଲର ଗୋପନ ରାଜ୍ୟରେ ପ୍ରବେଶ କରି ମାନବ ପ୍ରକୃତିର ଏକ ସ୍ୱୟଂ ସମ୍ପୂର୍ଣ୍ଣ ପରିଚୟ ଦେବାରେ ଅଧିକ କ୍ଷମ ।

Stream of Consciousnessର ବ୍ୟାଖ୍ୟା କରିବାକୁ ଯାଇ William James କହିଛନ୍ତି ମାନବିକ ଚେତନାର ଅବିଚ୍ଛିନ୍ନ ଗତି ବା ପ୍ରବାହକୁ ବର୍ଣ୍ଣନାତ୍ମକ ରୂପ ଦେବାପାଇଁ 'Stream' ବା 'ଧାରା' ହେଉଛି ଏକ ଉପଯୁକ୍ତ ରୂପକ (metaphor) । ତାଙ୍କ ମତରେ ଅବଚେତନ ମନର ଭାବନା ହେଉଛି ଅତୀତର ଏକ ଆଲୋକିତ କେନ୍ଦ୍ରବିନ୍ଦୁ ଯାହା ପାରିପାର୍ଶ୍ୱିକ ଅବସ୍ଥାର ଅସ୍ପଷ୍ଟ ଲୋକଦ୍ୱାରା କେତେକ ପରିମାଣରେ ପରି-ବେଷ୍ଟିତ । ଅସୀମ ଅତୀତ ଠାରୁ ଜୀବନ୍ତ ବର୍ତ୍ତମାନ ପର୍ଯ୍ୟନ୍ତ ଏହା ଏକ କ୍ରମିକ ପ୍ରବାହ । ଆଭ୍ୟନ୍ତରୀଣ ସଂଘର୍ଷ, ଅତୀତ ସ୍ମୃତିର ରୋମନ୍ଥନ ଏବଂ ବର୍ତ୍ତମାନର ଦିବାସ୍ୱପ୍ନ ଦ୍ୱାରା ସ୍ୱକୀୟ ଅନୁଭୂତିକୁ ପ୍ରକଟ କରିବାରେ ଏହା ଏକ ଉତ୍କୃଷ୍ଟ ମାଧ୍ୟମ ।

ନାଟକୀୟତା ଏବଂ ନିରନ୍ତର ପରିବର୍ତ୍ତନଶୀଳତା ମାନବୀୟ ଚେତନାର ଦୁଇଟି ବିଶିଷ୍ଟ ସ୍ବରୂପିକ ବୈଶିଷ୍ଟ୍ୟ। ବ୍ୟକ୍ତିର ଅତୀତର ସ୍ମୃତି, ବର୍ତ୍ତମାନର ଦୃଢ଼ ଆଗ୍ରହ ଏବଂ ଦୂରନ୍ତ ଭବିଷ୍ୟତର ସ୍ୱପ୍ନର ଏକକ ସ୍ୱାଧୀନ ସମ୍ମେଳନ ଦ୍ୱାରା ମାନସିକ କର୍ଯ୍ୟକଳାପର କ୍ରମିକ ଅଗ୍ରଗତି ନିର୍ଦ୍ଧାରଣ କରାଯାଇଥାଏ। Rubert Hymphreyଙ୍କ ମତରେ ଏହି ସ୍ୱାଧୀନ ସମ୍ମେଳନ ତିନିଗୋଟି ବସ୍ତୁ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ—ପ୍ରଥମ ହେଲା ସ୍ମୃତି; ଯାହା ପୃଷ୍ଠଭୂମି ରୂପେ କାର୍ଯ୍ୟକରେ, ଦ୍ୱିତୀୟ ହେଲା ଚେତନା; ଯାହା ଏହାର ପଥ ପ୍ରଦର୍ଶକ ଏବଂ ତୃତୀୟ ହେଲା କଳ୍ପନା ଯାହା ଏହାର ପରିବର୍ତ୍ତନର ମାନ ନିର୍ଦ୍ଧାରଣ କରେ। ଏହି ମନସ୍ତାତ୍ତ୍ୱିକ ଭାବ ସମ୍ମେଳନର ଏକ ସୁନ୍ଦର ଚିତ୍ର 'ୟୁଲିସିସ୍'ରେ Molly Bloomର ଚେତନା ପ୍ରବାହ ଧାରାରେ ଦିଆଯାଇଛି। Molly ଶୋଇଯାଇଛି। ଘଣ୍ଟାର ଟିକ୍‌ଟିକ୍ ଶବ୍ଦ, ଓ୍ୱାଲ୍ ପେପରର ଦୃଶ୍ୟ ଏବଂ ଲ୍ୟାମ୍ପର ସ୍ତିମିତ ଆଲୋକ ବ୍ୟତୀତ ଅନ୍ୟକିଛି କାର୍ଯ୍ୟ ପ୍ରାଣେ ଦକ ବାହ୍ୟ ବସ୍ତୁ ନ ନଥିଲା। ଏହିପରି ଏକ ଅଳସ ପରିବେଶରେ ତାର ଚେତନା ପ୍ରବାହଧାରା ଅତି ସୁନ୍ଦର ଭାବରେ ଜୟେସ୍‌ଙ୍କ ଦ୍ୱାରା ବର୍ଣ୍ଣିତ ହୋଇଛି—

"ପାଖ ଘଣ୍ଟାକୁ ଅନାଇଲା ବେଳେ ସେ ସମସ୍ତ ପ୍ରତି ସଚେତନ ହେଉଛି, ଅନ୍ୟ ମୁହୂର୍ତ୍ତରେ ତାର କଳ୍ପନା ଫେରି ଯାଉଛି ଟୀନ୍ ରାଜ୍ୟକୁ, ପର ମୁହୂର୍ତ୍ତରେ ସେ ଶୋଇବା ପାଇଁ ଚେଷ୍ଟା କରୁଛି। ଆଉ କେତେବେଳେ ବା wall paperର ଫୁଲଗୁଡ଼ିକୁ ଦେଖି ଆକାଶର ତାରାସହି ତୁଳନା କରୁଛି। ଅତୀତରେ Limbard Streetରେ ଥିଲାବେଳେ ସେଗୁଡ଼ିକ କିପରି ଆହୁରି ସୁନ୍ଦର ଦିଶୁଥିଲା ତାହା ମଧ୍ୟ ଏକ ସମୟରେ ଭାବୁଛି··· ।"

କେବଳ 'ଭାବସଙ୍ଗ' ନୁହେଁ ଏ ଧରଣର ଉପନ୍ୟାସର ଅନ୍ୟ ଏକ ସ୍ୱରୂପିକ ବୈଶିଷ୍ଟ୍ୟ ହେଲା ଏହା ସ୍ଥାନ ଏବଂ କାଳର ନିଗଡ଼ ବନ୍ଧନରୁ ମୁକ୍ତ। ମାନବର ମନ ସ୍ମୃତି, ବିସ୍ମୃତିର ଏକ ମାଶାଣିଭୂଇଁ । ଜୀବନର ଗୋଟିଏ ଗୋଟିଏ ବିରାଟ ଅଧ୍ୟାୟର ଇଂଗିତ ବହନକରି ପ୍ରତ୍ୟେକ ମୁହୂର୍ତ୍ତ ଶାଶ୍ୱତ । ଏ ମୁହୂର୍ତ୍ତରେ ମାନସପଟରେ ଯେଉଁ ଭାବନା ଦେଖା ଦେଇଥାଏ ଅନ୍ୟ ମୁହୂର୍ତ୍ତରେ ତାହା ହୁଏତ ବିଲୟ ହୋଇଯାଇପାରେ। ମଣିଷର ମନ ଅତୀତ, ବର୍ତ୍ତମାନ ଏବଂ ଭବିଷ୍ୟତର ଚିନ୍ତା ଓ ଚେତନର ଏକ ଗନ୍ତାଘର। ଏଣୁ ଚେତନା ପ୍ରବାହ ଧାରାର ଉପନ୍ୟାସରେ ଯେତେବେଳେ ମାନବର ମାନସିକ ଅବସ୍ଥାର, ତାର ଚିନ୍ତା ଚେତନାର, ଅନୁଭୂତି ଏବଂ କଳ୍ପନାର ବିଶ୍ଳେଷଣ କରାଯାଏ ସେତେବେଳେ ଏଥିରେ ସ୍ଥାନ ଏବଂ କାଳର କୌଣସି ନିର୍ଦ୍ଦିଷ୍ଟ ସୀମା ରେଖା ରହିପାରେ ନାହିଁ। David Daichesଙ୍କ ମତରେ—"The stream of consciousness techonique; is a means of escape from the tyrany of time dimension."

ମୋଟ ଉପରେ କହିବାକୁ ଗଲେ—"What these writers have contributed to fiction is broadly one thing they have opened up for it a new area of life. They have added mental functioning and psychic existance to the already established domain of motive and action. They have

created a fiction centered on the core of human experience, which if it has not been the usual domain of fiction is not they have proved an improper one."

James Joyceଙ୍କ "ୟୁଲିସିସ୍" ଉପନ୍ୟାସ ପରେ ନୋବେଲ୍ ପୁରସ୍କାର ପ୍ରାପ୍ତ ହେମିଂ ୱେ୍ଙ୍କର "The Oldman and the Sea" ଉପନ୍ୟାସ ଏ ଧରଣର ଉପନ୍ୟାସମାନଙ୍କ ମଧ୍ୟରେ ଅନ୍ୟତମ ଶ୍ରେଷ୍ଠ ଦୃଷ୍ଟାନ୍ତ ।

ପାଶ୍ଚାତ୍ୟ ଜଗତର ଚିନ୍ତା ଜଗତରେ ଦେଖାଦେଇଥିବା ଏହି ଆଲୋଡ଼ନ ବହୁ ବିଳମ୍ବରେ ଓଡ଼ିଆ ସାହିତ୍ୟରେ ତାର ପ୍ରତିଧ୍ୱନି ସୃଷ୍ଟି କରିଛି । ଅବଶ୍ୟ ମନସ୍ତାତ୍ତ୍ୱିକ ଉପନ୍ୟାସର ରଚନାଭଙ୍ଗୀ ଓଡ଼ିଆ ସାହିତ୍ୟରେ ପରଂପରାହୀନ ନୁହେଁ. ତଥାପି ଜଏସ୍ଙ୍କୀୟ ଚିନ୍ତାଧାରାର ବିଶିଷ୍ଟ ଭଙ୍ଗୀରେ ରଚିତ ଉପନ୍ୟାସ କେବଳ କେତେକ ସମସାମୟିକ ଔପନ୍ୟାସିକଙ୍କ ଲେଖାରେ ସଫଳ ରୂପ ପାଇଛି । ସେମାନଙ୍କ ମଧ୍ୟରୁ ରାଜକିଶୋର ପଟ୍ଟନାୟକ, କାହ୍ନୁଚରଣ ମହାନ୍ତି, ଗୋପୀନାଥ ମହାନ୍ତି, ମହାପାତ୍ର ନୀଳମଣି ସାହୁ, କୃଷ୍ଣପ୍ରସାଦ ମିଶ୍ର, ଶାନ୍ତନୁ ଆଚାର୍ଯ୍ୟ ପ୍ରଭୃତି ସ୍ୱଳ୍ପ କେତେକଙ୍କ ନାମ ଉଲ୍ଲେଖଯୋଗ୍ୟ ।

ରାଜକିଶୋର ପଟ୍ଟନାୟକଙ୍କ "ଚଲାବାଟ" ବାସ୍ତବରେ ସଦା ଚଳଚଞ୍ଚଳ ଅବଚେତନ ମନର ଏକ ବିସ୍ତୀର୍ଣ୍ଣ ଚଲାବାଟ । ଚଲାବାଟର ଧୂଳିଧୂସରିତ ପଥରେ ନିଜକୁ ହଜାଇ ଦେଇ ଅମରେନ୍ଦ୍ରର ଅବଚେତନ ମନ ଖାଲି ବର୍ତ୍ତମାନରୁ ଫେରିଯାଇଛି ସେହି ସ୍ୱପ୍ନିଳ ଅତୀତକୁ; ଯେଉଁ ଅତୀତ ସୀତା, ଗୀତା, ବିମ୍ବ, ସୁମତି, ସରଳା. କବିତା, ପ୍ରଭୃତି ନାନା ତରୁଣୀଙ୍କର କଳନାଦରେ ଏକଦା ମୁଖରିତ ଥିଲା । ଫ୍ରଏଡ୍ଙ୍କୀୟ ଚିନ୍ତାଧାରାର ପରିପ୍ରେକ୍ଷିରେ ରଚିତ ଏହି ଉପନ୍ୟାସ ଜୀବନର ବିଶେଷ ବିଶେଷ ଅନୁଭୂତି ଏବଂ ମାନସିକ ଦ୍ୱନ୍ଦ୍ୱର ଏକ ସାର୍ଥକ ସୃଷ୍ଟି ।

ବହୁ ଉପନ୍ୟାସର ସ୍ରଷ୍ଟା କାହ୍ନୁଚରଣଙ୍କ "ଢେଉ ଢେଉକା" ଉପନ୍ୟାସରେ ଚେତନା ପ୍ରବାହ ଧାରାର ଅନ୍ୟତମ ଦୃଷ୍ଟାନ୍ତ ଦେଖାଯାଏ । ଜୀବନର କ୍ଷୁଦ୍ର ବୃହତ୍ତ ଘଟଣାଠୁଁ ଆରମ୍ଭ କରି ନାନା ଆଶା ଆକାଂକ୍ଷାର, ସ୍ମୃତି ବିସ୍ମୃତିର ଢେଉ ଅବଚେତନ ମନର ବେଳା ଭୂମିରେ ମଥାପିଟି ଯେଉଁ ନିନାଦ ସୃଷ୍ଟି କରିଛି; ଏକ ସୀମିତ ପରିଧି ଭିତରେ ସେସବୁକୁ ସୁପରିକଳ୍ପିତ ଭାବରେ ସାଇତି ରଖିବାର ଚେଷ୍ଟା କରାଯାଇଛି ଏହି ଉପନ୍ୟାସରେ । 'ୟୁଲିସେସ୍' ଉପନ୍ୟାସର ସମୟସୀମା ମାତ୍ର ଅଠର ଘଣ୍ଟା । କିନ୍ତୁ ଢେଉ ଢେଉକାର ସମୟ ସୀମା ତିନିଦିନ । 'ରମା ମନରେ ଦୁଃଖ ଦେଇ ଟୁର୍‌ରେ ଯାଇଥିବାରୁ ନିର୍ଜନ ଡାକବଙ୍ଗଳାରେ ଗୋଟିଏ ମୁହୂର୍ତ୍ତ ବି ଶାନ୍ତିରେ କଟାଇ ପାରିନାହିଁ ସୁକାନ୍ତ । ମନ ଗହ୍ୱରର ଅତଳ ପ୍ରଦେଶରେ ଦେଖା ଦେଇଛି ଅନେକ ଚିନ୍ତା, ଅନେକ ଦ୍ୱନ୍ଦ୍ୱ, ଅଶାନ୍ତ ଭାବନା । ସୁକାନ୍ତର ଅନୁପସ୍ଥିତିରେ ଅନୁରୂପ ଭାବରେ ଚିନ୍ତାର ଆଲୋଡ଼ନ ଦେଖାଦେଇଛି ରମାର ଅବଚେତନ ମାନସରେ । ସୁକାନ୍ତର ଅପ୍ରତ୍ୟାଶିତ ପ୍ରତ୍ୟାବର୍ତ୍ତନରେ ଏହି ଭାବନାର ଅବସାନ ହୋଇଛି ।

ଗୋପୀନାଥ ମହାନ୍ତିଙ୍କର "ରାହୁର ଛାୟା" ଏବଂ "ଲୟବିଲୟ" Stream of Consciousness ଉପନ୍ୟାସ ଦୃଷ୍ଟିରୁ ଦୁଇଟି ସଫଳ ସୃଷ୍ଟି । "ରାହୁରଛାୟା" ଉପନ୍ୟାସର ନାୟିକା 'ସତୀ' । ନାଁଟି ତାର ସତୀ ହେଲେ ବି ପରିସ୍ଥିତି ଏବଂ ପରିବେଷ୍ଟନୀ ତାକୁ କରିଛି ଅସତୀ । ବର୍ତ୍ତମାନର ନିଷ୍ଠୁର ବାସ୍ତବତାର ଧକ୍‌କାରେ ପେଶି ହୋଇବି ଅତୀତକୁ ସେ ଭୁଲି ପାରିନାହିଁ । ହୃଦୟର ନିଭୃତ କୋଣରେ ଗଭୀର ରେଖାପାତ କରିଥିବା କେତୋଟି ସ୍ମୃତି, ଆଶା ଆକାଂକ୍ଷାର ରଙ୍ଗିନ୍ ନିଶା ତାର ଅବଚେତନ ମନରେ ଯେଉଁ ଆଲୋଡ଼ନ ସୃଷ୍ଟି କରିଛି ତାକୁଇ ଭିତ୍ତି କରି ଗଢ଼ିଉଠିଛି ଏହି ଆତ୍ମ ସଂଳାପଧର୍ମୀ ଉପନ୍ୟାସଟି । ସେହିପରି "ଲୟ ବିଲୟ" ଜଞ୍ଜାଳିଆ ତରୁଣ ଗୃହର ଉନିଦିନିଆ ପୁରୀ ରହଣିର ଚିତ୍ରିଦେଏ । ଚରିତ୍ରମାନଙ୍କର ଆତ୍ମାନୁଶୀଳନ, ଅନ୍ତଃନିରୀକ୍ଷଣ ସହ ଅତୀତ, ବର୍ତ୍ତମାନର ଏବଂ ଭବିଷ୍ୟତର ଭାବନାକୁ ଏକ ସରଳରେଖାରେ ଗଠି କରିଇ ଜୀବନର ଅପରିହାର୍ଯ୍ୟ ବାସ୍ତବତା ପ୍ରତି ସଙ୍କେତ ପ୍ରଦାନ କରିବା ଏହାର ଉଦ୍ଦେଶ୍ୟ ।

ଏମାନଙ୍କ ବ୍ୟତୀତ ଅଧ୍ୟାପକ କୃଷ୍ଣପ୍ରସାଦ ମିଶ୍ରଙ୍କ "ନେପଥ୍ୟେ", "ସିଂହକଟୀ" ମହାପାତ୍ର ନୀଳମଣି ସାହୁଙ୍କ "ଧରି ଓ ଧାରି" ଶାନ୍ତନୁ ଆଚାର୍ଯ୍ୟଙ୍କ "ନରକିନ୍ନର" ପ୍ରଭୃତି ଉପନ୍ୟାସରେ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଚିତ୍ର ଜୀବନ୍ତ ହୋଇପାରିଛି । ଆତ୍ମକଥନ ମୂଳକ, ଚେତନା ପ୍ରବାହ ପଦ୍ଧତି ସପନ୍ନ ଉପନ୍ୟାସଗୁଡ଼ିକ ତାର ଟିକିନଖି ବିଶ୍ଳେଷଣାତ୍ମକ ମନୋବୃତ୍ତି ଏବଂ ବୌଦ୍ଧିକ ଆବେଦନଶୀଳତା ଯୋଗୁ କେତେକ ପରିମାଣରେ ଅବୋଧ ହୋଇପଡ଼ୁଛି । ତଥାପି ଆଜିର ଯାନ୍ତ୍ରିକ ଯୁଗରେ ଜୀବନ ଯେଉଁଠି ଏକ ଛନ୍ଦହୀନ ଅବୋଧ ଗଦ୍ୟ କବିତା ସେଠି ଜୀବନ ପାଇଁ ସୃଷ୍ଟ ସାହିତ୍ୟ ମଧ୍ୟ ଅବୋଧ ହେଲେ ବିଶେଷ କ୍ଷତିକାରକ ପରି ମନେହୁଏ ନାହିଁ । ମାତ୍ର ଦୁଃଖର ବିଷୟ ପାଶ୍ଚାତ୍ୟ ସାହିତ୍ୟରେ ଉପନ୍ୟାସ ଆଜି ଯେତେବେଳେ ନାନା ପରୀକ୍ଷା ମାଧ୍ୟମ ଦେଇ ଉନ୍ନତର ଶିଖର ପ୍ରଦେଶରେ ଉପନୀତ ସେତେବେଳେ ଓଡ଼ିଆ ଉପନ୍ୟାସ ଜଗତରେ ଏହାର ମାତ୍ର ଅସ୍ତମାରମ୍ଭ ହୋଇଛି କହିଲେ ଅତ୍ୟୁକ୍ତ ହେବ ନାହିଁ ।

—o—

# ସାହିତ୍ୟ ସମ୍ବାଦ

ସଂପାଦନା :
ପ୍ରାଧ୍ୟାପକ ଡକ୍ଟର୍ ବଂଶୀଧର ମହାନ୍ତ

## ଉତ୍କଳ ଦୀପିକା

## ୧୮୭୩

( ପ୍ରାଚୀନ ଓଡ଼ିଆ ପତ୍ରପତ୍ରିକାରେ ଓଡ଼ିଆ ଭାଷା ଓ ସାହିତ୍ୟ ସମ୍ବନ୍ଧରେ ଅନେକ ସାରଗର୍ଭକ ଆଲୋଚନା ଓ ସମ୍ବାଦ ପ୍ରକାଶିତ ହୋଇଥିଲା । ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ ରଚନା ଓ ଗବେଷଣା ନିମିତ୍ତ ଏସବୁର ମୂଲ୍ୟ ଅକଳନୀୟ । ପ୍ରତ୍ୟେକବର୍ଷ 'ପାଠଚକ୍ର' ପ୍ରବନ୍ଧରେ ଏହିସବୁ ସମ୍ବାଦ ପରିବେଷଣ କରିବା ନିମିତ୍ତ ଚେଷ୍ଟା କରାଯାଉଅଛି ।)

# ଉତ୍କଳ ଦୀପିକା

## ୧୮୭୩

### ଓଡ଼ିଶା ଶିକ୍ଷାବିଭାଗର ବାର୍ଷିକ ବିଜ୍ଞାପନୀ :

× × ମାର୍ଟିନ ସାହେବଙ୍କ ବିଜ୍ଞାପନୀରୁ ଜଣାଯାଏ ଯେ କଟକ ହାଇସ୍କୁଲର କାଲେଜ କ୍ଲାସ ପାଇଁ ଏବର୍ଷ ୧୬୮୨୭ ଟଙ୍କା ବ୍ୟୟ ହୋଇଥିଲା । ତହିଁରୁ କେବଳ ୧୩୪୫ ଟଙ୍କା ଛାତ୍ରଙ୍କ ଠାରୁ ଫିସ ଗ୍ରହଣ ପୂର୍ବକ ଆଦାୟ ହୋଇଅଛି ସୁତରାଂ ପ୍ରାୟ ସମୁଦାୟ ବ୍ୟୟ ଗଭର୍ଣ୍ଣମେଣ୍ଟଙ୍କର ବୋଲିବାକୁ ହେବ । ଅତି ଉଚ୍ଚଶିକ୍ଷା ଛଡ଼ା ଗଭର୍ଣ୍ଣମେଣ୍ଟଙ୍କ ଆଉ ସମସ୍ତ ପ୍ରକାର ଶିକ୍ଷା ଦାନରେ ୩୦୧୨୪ ଟଙ୍କା ସରକାରଙ୍କର ଏବଂ ୩୦୬୭୮ ଟଙ୍କା ଲୋକ-ମାନଙ୍କର ବ୍ୟୟ ହୋଇଥିଲା ।

× × ×

ଓଡ଼ିଶାର ବିଦ୍ୟାଳୟମାନଙ୍କରେ ବଙ୍ଗଳା ଭାଷାରେ ଶିକ୍ଷା ଦେବା ଏକାବେଳକେ ନିଷେଧ କରିବା ପାଇଁ ଶ୍ରୀଯୁକ୍ତ କମିଶନର ସାହେବ ଗଭର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରିଥିଲେ ଏଥିକୁ ଗଭର୍ଣ୍ଣମେଣ୍ଟ ବଙ୍ଗଳା ଏହି ମନ୍ତବ୍ୟ ପ୍ରକାଶ କରିଅଛନ୍ତି ଯେ ଯେପରି ହେବାର ଉଚିତ କେବଳ ବଡ଼ ବଡ଼ ସ୍କୁଲରେ ବଙ୍ଗାଳିଙ୍କ ସଂଖ୍ୟା ଅଧିକ ହେବାରୁ ଗୋଟିଏ ସ୍ୱତନ୍ତ୍ର ଶ୍ରେଣୀ ସ୍ଥାପନ ହୋଇପାରେ । ଏ ରୂପ ଉପାୟ କଲେ କି ରୂପ କାର୍ଯ୍ୟହେବ ଅର୍ଥାତ କୌଣସି ବାଧା ହେବ କି ନାହିଁ ଏ ବିଷୟରେ କମିଶନର ଓ ଇନ୍‌ସିପେକ୍‌ଟରଙ୍କ ମତ ପ୍ରାର୍ଥନା କରାଯାଇଅଛି ।

× × ×

ବାଲେଶ୍ୱର ସ୍କୁଲର ଅବସ୍ଥା ନିତାନ୍ତ ଅପ୍ରଶଂସନୀୟ ବୋଲି କମିଶନର ସାହେବ ଲେଖିଅଛନ୍ତି ଓ ତହିଁର ଏହିହେତୁ ଦର୍ଶାଇ ଅଛନ୍ତି ଯେ ସେଠାରେ ଅଧିକ ଇଂରାଜୀ ଓ ସଂସ୍କୃତ ଓ ଅତ୍ୟାଳ୍ପ ଉତ୍କଳ ଭାଷାରେ ଶିକ୍ଷା ଦିଆଯାଏ । ଉକ୍ତ ସ୍କୁଲରେ ଜମିଦାରଙ୍କ ସନ୍ତାନ ଶତକରା ୧୪ ଜଣ ଓ ସରକାରୀ କାର୍ଯ୍ୟକାରଙ୍କ ସନ୍ତାନ ଶତକରା ୩୦ ଜଣ ଅଧ୍ୟୟନ କରନ୍ତି । × × ପୁରୀ ସଂସ୍କୃତ ବିଦ୍ୟାଳୟର ପ୍ରଶଂସା କମିଶନର ଓ ଇନ୍‌ସପେକ୍‌ଟରଙ୍କ ଠାରୁ ଶ୍ରବଣ କରି ଲେଫ୍‌ଟେନେଣ୍ଟ ଗଭର୍ଣ୍ଣର ସାହେବ ସନ୍ତୁଷ୍ଟ ହୋଇ ଅଛନ୍ତି × × ।

× × ×

ଶ୍ରୀଯୁକ୍ତ ରେବନ୍‌ସା ସାହେବ ଉତ୍କଳ ପାଠ୍ୟପୁସ୍ତକ କ ଯାହା କେତେକ ବର୍ଷ ମଧ୍ୟରେ ପ୍ରକାଶିତ ହୋଇଅଛି ତହିଁର ଖଣ୍ଡିଏ ତାଲିକା ପଠାଇ ଅଛନ୍ତି । ମାନ୍ୟବର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ଏ ବିଷୟରେ କହିଅଛନ୍ତି ଯେ କଟକ, ବାଲେଶ୍ବର, ମଧ୍ୟପ୍ରଦେଶ, ଗଞ୍ଜାମ ଓ କଲିକତାରେ ପ୍ରକାଶିତ ସମସ୍ତ ଉତ୍କଳ ପୁସ୍ତକ ଅନୁସନ୍ଧାନ ପୂର୍ବକ ରିପୋର୍ଟ ଦେବାରେ ଯେଉଁ ଉଦ୍‌ଯୋଗ ହୋଇଅଛି ତାହା ଅତି ପ୍ରଶଂସା ଯୋଗ୍ୟ ଅଟଇ ×× ।

(ଉ.ଦୀ. ୮ ଭାଗ, ୧ମ ସଂଖ୍ୟା ଜାନୁଆରୀ ୧୮୭୩ ମସିହା ପୃଷ୍ଠା ୧ ।

**ବିଜ୍ଞାପନ :**

ବାଲେଶ୍ବରର ଉତ୍କଳ ଦର୍ପଣ କ ଯହିଁର ବିଜ୍ଞାପନ ଏଥିପୂର୍ବେ ଏ ପତ୍ରିକାରେ ପ୍ରକାଶିତ ହୋଇଥିଲା ଏହି ମାସରେ ବାହାରିଅଛି ଓ ଆମ୍ଭେମାନେ ତହିଁରେ ଅତିଶୟ ଆନନ୍ଦିତ ହୋଇଅଛୁଁ ଓ କୃତଜ୍ଞତା ପୂର୍ବକ ଖଣ୍ଡିଏ ପତ୍ରିକା ପାଇବାର ସ୍ୱୀକାର କରୁଅଛୁଁ । ଉତ୍କଳ ଦର୍ପଣର ଉଦ୍ଦେଶ୍ୟ ମହତ୍‌ ଅଟେ ଓ ତାହା ସଫଳ ହେଲେ ଦେଶର ଅନେକ ଉପକାର ହେବ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

(ଉ.ଦୀ, ୮ ଭାଗ ୩ ସଂଖ୍ୟା ଜାନୁଆରୀ ୧୮୭୩ ପୃ-୧୧)

**ନୂତନ ପୁସ୍ତକର ସମାଲୋଚନା :**

ଆଖ୍ୟାନମଞ୍ଜରୀ ନାମକ ଖଣ୍ଡିଏ ପୁସ୍ତକ ପ୍ରାପ୍ତ ହୋଇଥିବାର ଆମ୍ଭେମାନେ କୃତଜ୍ଞତା ସହିତ ସ୍ୱୀକାର କରିଅଛୁ । ××ପୁସ୍ତକ ଖଣ୍ଡିକ ଏହି ନାମର ଶ୍ରୀଯୁକ୍ତ ପଣ୍ଡିତ ଈଶ୍ବରଚନ୍ଦ୍ର ବିଦ୍ୟାସାଗରଙ୍କ ବଙ୍ଗଳା ପୁସ୍ତକରୁ ବାବୁ ଚନ୍ଦ୍ରନାଥ ବସୁ ଅନୁବାଦ କରିଅଛନ୍ତି । ପଣ୍ଡିତ ଈଶ୍ବରଚନ୍ଦ୍ରଙ୍କର ପୁସ୍ତକର ଗୁଣ ଦୋଷ ବାଛିବା ଆମ୍ଭମାନଙ୍କର ସାଧ୍ୟଯୁକ୍ତ ନୁହଇ । ବାସ୍ତବରେ ତାହାଙ୍କ ପୁସ୍ତକମାନ ସର୍ବଗୁଣରେ ଭୂଷିତ ଓ ସର୍ବତ୍ରରେ ଆଦୃତ ସୁତରାଂ ଏ ପୁସ୍ତକ ତହିଁରୁ ଅନୁବାଦିତ ହୋଇଥିବାରୁ ପୁସ୍ତକଗତ ବିଷୟମାନ ଓ ରଚନା ପ୍ରଣାଳୀ ସମ୍ପର୍କରେ କିଛି ବକ୍ତବ୍ୟ ନାହିଁ । କେବଳ କେମନ୍ତ ଭାଷାରେ ଅନୁବାଦିତ ହୋଇଅଛି ତାହାହିଁ କହିବାରେ କହିଲେ ପୁସ୍ତକର ଯଥେଷ୍ଟ ସମାଲୋଚନା ହେଲା । ଆମ୍ଭେମାନେ ଦୁଇ ଏକ ସ୍ଥାନ ପାଠ କରି ଦେଖିଲୁଁ ଯେରୂପ ଉତ୍କଳ ଭାଷାରେ ଅନୁବାଦିତ ହୋଇଅଛି ତାହା ମନ୍ଦ ନୁହଇ ବରଂ ବାଲେଶ୍ବର ପ୍ରେସରେ ଛାପା ହୋଇଥିବା ଅନେକ ପୁସ୍ତକରୁ ଭଲ ଅଟଇ । ପୁସ୍ତକଟି ଶ୍ରୀଯୁକ୍ତ ଜନ୍‌ବିମସ୍‌ ସାହେବଙ୍କୁ ଉପହାର ସ୍ୱରୂପ ପ୍ରଦତ୍ତ ହୋଇଅଛି ସୁତରାଂ ବିଜ୍ଞସ୍ୱ ପକ୍ଷରେ ବ୍ୟାଘାତ ନାହିଁ ଓ ଆମ୍ଭେମାନେ ଅନୁମାନ କରୁଅଛୁଁ ଏହା ବିଦ୍ୟାଳୟର ଉପଯୋଗୀ ଅଟଇ । ସ୍ଥାନ ସ୍ଥାନରେ ସାମାନ୍ୟ ଦୋଷ ଲକ୍ଷିତ ହୁଅଇ ମାତ୍ର ସେ ସବୁ ବାହୁଲ୍ୟ କରି ଲେଖିବାର ପ୍ରୟୋଜନ ନାହିଁ ।

(ଉ.ଦୀ: ୮ ଭାଗ ୮ ସଂଖ୍ୟା ଫେବୃଆରୀ ୧୮୭୩ ପୃଷ୍ଠା ୩୪।୩୫)

## ଓଡ଼ିଆଭାଷା ଓ ବାବୁ ରାଜେନ୍ଦ୍ରଲାଲ ମିତ୍ର :

ଓଡ଼ିଆ ଭାଷା ଉପରୁ ବାବୁ ରାଜେନ୍ଦ୍ରଲାଲ ମିତ୍ରଙ୍କ କୋପ ଅଦ୍ୟାବଧି ଶାନ୍ତ ହୋଇ ନାହିଁ । ଗତ ଜାନୁଆରୀ ମାସରେ ୨୩ ତାରିଖରେ କଲିକତା ବେଥୁନ ସୋସାଇଟୀ ସଭାରେ ଡାକ୍ତର ମରେମିଚଲ ସାହେବ ଭାଷା ସମୂହର ସମ୍ବନ୍ଧତତ୍ତ୍ୱ ବିଷୟରେ ଗୋଟିଏ ସୁଦୀର୍ଘ ଓ ବିଜ୍ଞବକ୍ତୃତା ଶେଷ ହେଲାରୁ ବାବୁ ରାଜେନ୍ଦ୍ରଲାଲ ମିତ୍ର ଡାକ୍ତର ମହୋଦୟଙ୍କୁ ସଭାର ଧନ୍ୟବାଦ ଦେବା ପ୍ରସ୍ତାବ ଛଳରେ ଯେଉଁ ବକ୍ତୃତା କଲେ ତହିଁରେ ବ୍ୟକ୍ତଥିଲା ଯେ ଭାରତ ବର୍ଷର ଭାଷା ସମସ୍ତର ବିଭିନ୍ନତା ବିଷୟରେ ଅନେକ ମତ ଭେଦ ଦେଖାଯାଏ ଓ ଭ୍ରମବଶତଃ ଶିକ୍ଷା ବିଭାଗର କର୍ମଚାରୀ ଓ ଅନ୍ୟ ଲୋକମାନେ ଯାହାକୁ ବିଭିନ୍ନତା ଜ୍ଞାନ କରନ୍ତି ତାହା ପ୍ରକୃତ ନୁହଇ ଯଥା ଓଡ଼ିଆ ବଙ୍ଗଳା ଓ ଆସାମୀ ଭାଷାମାନ ବାସ୍ତବରେ ଏକ କିଛି ଭ୍ରମ ହେତୁରୁ ତାହାକୁ ଭିନଭାଷା ଜ୍ଞାନ କରାଯାଏ । ବଙ୍ଗାଳିମାନଙ୍କୁ ଏକଥା ବାଧୁନାହିଁ କାରଣ ସେମାନେ ଆପଣା ଅବସ୍ଥା ରକ୍ଷା କରିବାକୁ ସକ୍ଷମ ଅଛନ୍ତି କିନ୍ତୁ ଆସାମୀ ଓ ଓଡ଼ିଆ ଅଳ୍ପ ସଂଖ୍ୟକ ଲୋକ ହେତୁରୁ ଆପଣା ଭାଷା ରକ୍ଷା କରିବାକୁ ସକ୍ଷମ ନୁହନ୍ତି । ଯେବେ ସେମାନେ ବଙ୍ଗଳା ପଢ଼ିବାକୁ ଆରମ୍ଭ କରିବେ ତେବେ ଅଳ୍ପ କାଳରେ ବଙ୍ଗାଳିଙ୍କ ସହିତ ଭ୍ରାତୃଭାବରେ ଲିପ୍ତ ହୋଇ ଏକ ହୋଇ ଯିବେ ଓ ବଙ୍ଗଳାରେ ଯେ ସମସ୍ତ ଉନ୍ନତି ହୋଇଅଛି ସେ ସବୁର ଫଳ ଭୋଗ କରିବେ । ଏମାନଙ୍କ ଭାଷା ଭିନ୍ନ ଭିନ୍ନ ରଖିଲେ ଏମାନେ କ୍ଷୁଦ୍ର କ୍ଷୁଦ୍ର ପୃଥକ୍ ସମାଜବଦ୍ଧ ହୋଇ ଆପଣାକୁ ଅତିଶୟ ଅସହାୟ ମଣିବେ କାରଣ ଭାଷାରେ ଯେମନ୍ତ ସମାଜର ପ୍ରଭେଦ ହୁଅଇ ଏମନ୍ତ ପ୍ରାୟ କାହିଁରେ ହୁଅଇ ନାହିଁ । ତାହାଙ୍କ ଏମନ୍ତ ମାନସ ନୁହଇ ଯେ ଭାରତ ବର୍ଷର ୧୦୮ ଭାଷାକୁ ସେ ବଳପୂର୍ବକ ଗୋଟାଏ କରିନେବେ କାରଣ ସେଥିର ସିଦ୍ଧାନ୍ତ ଅଦ୍ୟାବଧି କିଛି ହୋଇ ନାହିଁ । ଏ ଦେଶର ଉନ୍ନତିଶୀଳ ଲୋକଙ୍କ ଉପରେ ଏଥିର ଭାର ରହିଅଛି ଭବିଷ୍ୟତରେ ତାହା ସିଦ୍ଧାନ୍ତ ହୋଇ ପାରେ । × × × ଏଥିରୁ ପାଠକମାନେ ଜାଣିବେ ଯେ ରାଜେନ୍ଦ୍ର ବାବୁଙ୍କ କଥା କେବଳ ତାହାଙ୍କୁ ସାଜଇ କେହି ତାହାଙ୍କ ସଙ୍ଗେ ମିଶୁ ନାହାନ୍ତି ତଥାପି ସେ ଆପଣା ଖିଆଲ ଛାଡ଼ୁନାହାନ୍ତି ।

(ଉ.ଦୀ. ୮ ଭାଗ ୯ ସଂଖ୍ୟା ମାର୍ଚ୍ଚ । ୧୮୭୩ ପୃ-୩୪)

**ବିଜ୍ଞାପନ :**

ଉତ୍କଳପୁତ୍ର ନାମକ ରାଜକୀୟ, ସାମାଜିକ, ନୈତିକ, ଐତିହାସିକ ପ୍ରଭୃତି ବିଷୟକ ଓଡ଼ିଆ ଓ କେତେ କେତେ ବେଳେ ଅନ୍ୟାନ୍ୟ ଭାଷାରେ କ୍ଷୁଦ୍ରାକୃତିର ଖଣ୍ଡିଏ ପାକ୍ଷିକ ସମସାମୟିକ ପତ୍ର ଆଗାମୀ ୧୨୮୦ ସାଲର ବୈଶାଖ ମାସ ୧୦ ତାରିଖଠାରୁ ବାହାରିବ । ଏଥିର ବାର୍ଷିକ ଅଗ୍ରୀମ ମୂଲ୍ୟ ୧ ଟଙ୍କା ବାର୍ଷାନ୍ତେ ମୂଲ୍ୟ ହେଲେ ଟ ୧/୮ ପଡ଼ିବ । ମୂଲ୍ୟଛଡ଼ା ଖଣ୍ଡ ପ୍ରତି ବର୍ଷକୁ ଡାକମାସୁଲ ଟ ୦।୬/୮ ଓ ୨ ଖଣ୍ଡଠାରୁ ୨୫ ଖଣ୍ଡ ଯାକେ ବର୍ଷକୁ ଡାକ ମାସୁଲ ଟ ୧। ।

ଶ୍ରୀ ଶ୍ୟାମସୁନ୍ଦର ନାୟକ
କାର୍ଯ୍ୟକାର
କଟକ

(ଉ. ଦୀ. ମାର୍ଚ୍ଚ ୧୮୭୩ ୮/୧୭ ପୃଷ୍ଠା ୫୦)

## ଓଡ଼ିଶାର ଶିକ୍ଷାବିଭାଗରେ ବଙ୍ଗଦେଶୀୟଙ୍କ କର୍ତ୍ତୃତ୍ୱ :

ଆମ୍ଭେମାନେ ଏ ବିଷୟରେ ଦୁଇଖଣ୍ଡି ପ୍ରେରିତପତ୍ର ପାଇ ପାଠକଙ୍କ ଗୋଚରାର୍ଥେ ପ୍ରକାଶ କରୁଅଛୁଁ ତହିଁରୁ ଦେଖାଯିବ ଯେ ଗଭର୍ଣ୍ଣମେଣ୍ଟ ଓ ସ୍ଥାନୀୟ କର୍ମକର୍ତ୍ତାମାନେ ବିଶେଷରେ କମିଶନର ସାହେବ ଓଡ଼ିଆଙ୍କ ଉନ୍ନତି ସକାଶେ ସର୍ବଦା ଚେଷ୍ଟା କରୁଥିଲେହେଁ ସେମାନଙ୍କ ସମସ୍ତଚେଷ୍ଟା ବଙ୍ଗଦେଶୀୟ କର୍ମଚାରୀଙ୍କ ଦ୍ୱାରା ବିଫଳ ହେଉଅଛି । ଏମାନେ ସାଧ୍ୟାନୁସାରେ ବଙ୍ଗଳା ଭାଷା ଅଥବା ସ୍ୱଜାତିଙ୍କର ଉନ୍ନତି ପକ୍ଷରେ ଯତ୍ନବାନ୍ ହେଉଅଛନ୍ତି ଏବଂ ଆଶ୍ଚର୍ଯ୍ୟର ବିଷୟ ଏହି ଯେ ତାହାଙ୍କ ଯତ୍ନ ଫଳପ୍ରଦ ହେଉଅଛି କମିଶନର ସାହେବ ଅଥବା ସ୍ଥାନୀୟ କର୍ମକର୍ତ୍ତାମାନେ ତାହା ନିବାରଣ କରିବାକୁ ସକ୍ଷମ ହୋଇ ପାରୁ ନାହାନ୍ତି । ବଙ୍ଗୋତ୍କଳ ବର୍ଣ୍ଣ ପରିଚୟ ବିଦ୍ୟାଳୟରେ ବ୍ୟବହାର ହେବାର କୌଣସି କାରଣ ନାହିଁ ଅଥଚ ତାହା ଚଳୁଅଛି ବୋଧ ହୁଏଇ ପୁସ୍ତକ ବିକ୍ରେତା ବଙ୍ଗଦେଶୀୟ ଥିବାରୁ ସେପରି ହୋଇଥିବ । ପ୍ରାକୃତ ଭୂଗୋଳ ପକ୍ଷରେ ଯେଉଁ ଆପତ୍ତି ହୋଇଅଛି ତାହା ଅନ୍ୟାୟ ନୁହଇ ।

(ଉ.ଦୀ. ଅପ୍ରେଲ ୮/୧୫ ସଂଖ୍ୟା ୧୮୭୩ ପୃଷ୍ଠା ୬୮)

## ଉତ୍କଳ ଭାଷୋଦ୍ଦୀପିନୀ ସଭା :

ଏହି ନାମରେ ଗୋଟିଏ ସଭା ଏ ନଗରରେ ସ୍ଥାପିତ ହୋଇଅଛି ବୋଲି ଏକମାସ ହେବ 'ଉତ୍କଳପୁତ୍ର'ରୁ ପାଠକମାନେ ଅବଗତ ହୋଇଥିବେ । ମାତ୍ର ଆମ୍ଭେମାନେ ତହିଁର ବିଶେଷ ପରିଚୟ କିଛି ପାଇ ନଥିବାରୁ ଏପର୍ଯ୍ୟନ୍ତ ପାଠକମାନଙ୍କୁ ଜଣାଇ ନଥିଲୁଁ । ଗତ ସପ୍ତାହରେ ଉକ୍ତ ସଭାର ସଭାପତି ଶ୍ରୀ ପଣ୍ଡିତ ପ୍ରଭାକର ବିଦ୍ୟାରତ୍ନଙ୍କ ଠାରେ ସଭା ସଂକ୍ରାନ୍ତ ସମସ୍ତ ବିବରଣ ଓ ନିୟମାବଳୀ ଓ କାର୍ଯ୍ୟ ଦର୍ଶନାରୁ ଅବଗତ ହେଲୁ ଯେ ଏ ସଭା ଗତ ଜୁଲାଇମାସ ଆଦ୍ୟରୁ ଆରମ୍ଭ ହୋଇ ପ୍ରତି ରବିବାର କଟକ ନର୍ମାଲ ସ୍କୁଲ ଗୃହରେ ଏହାର ଅଧିବେଶନ ହେଉଅଛି । ସଭାର ଉଦ୍ଦେଶ୍ୟ ଏହିରୂପେ ବର୍ଣ୍ଣିତ ହୋଇ ଅଛି ଯଥା—"ଯଦ୍ଦ୍ୱାରା ଉତ୍କଳ ଭାଷାର ଉନ୍ନତି ଓ ଉତ୍କଳ ପାଠ୍ୟ ପୁସ୍ତକାଦିର ସମାଲୋଚନା ଏବଂ ଆଧୁନିକ ଶିକ୍ଷିତ ବ୍ୟକ୍ତିମାନଙ୍କର ବକ୍ତୃତା ଓ ରଚନା ଶକ୍ତିର ବୃଦ୍ଧି ଆଉ ତର୍କ ବିତର୍କ ପ୍ରଭୃତି ।" ଉଦ୍ଦେଶ୍ୟ ଅବଶ୍ୟ ଭଲ ତହିଁରେ ସନ୍ଦେହ ନାହିଁ ଓ ସଭ୍ୟଗଣ ପ୍ରାୟ ସମସ୍ତେ ନର୍ମାଲ ଓ ହାଇସ୍କୁଲର ଶିକ୍ଷକ ଓ ଛାତ୍ର ଅଟନ୍ତି । ଅତଏବ ଦେଖାଯାଏ ଯେ ସଭ୍ୟଶ୍ରେଣୀ ଭୁକ୍ତ ହୋଇଥିବା ଶିକ୍ଷକ ଓ ଛାତ୍ରମାନେ କି ଯାହାଙ୍କ ଦ୍ୱାରା ଦେଶର ବିଦ୍ୟୋନ୍ନତି ହେବାର ଆଶା କରାଯାଇପାରେ ସେମାନେ ଆପଣା ଗୁରୁଭାରର ମହତ୍ତ୍ୱ ସୁନ୍ଦର ରୂପେ ବୁଝିଅଛନ୍ତି ଏହା ସୁଖର ବିଷୟ ଅଟେ । ସଭାର ପ୍ରଥମ ଅଧିବେଶନ ଠାରୁ ଅବଧି ଯେଉଁ ବିଷୟ ସବୁର ଚର୍ଚ୍ଚା ହୋଇଅଛି ତହିଁରୁ ପ୍ରତ୍ୟକ୍ଷ ହୁଏଇ ଯେ ପ୍ରକୃତ ବିଷୟ ସବୁର ସମାଲୋଚନା ହେଉଅଛି ପାଠକଙ୍କ ଜାଣିବା କାରଣ ଲେଖୁଅଛୁ ଯେ ଭାଷୋନ୍ନତିର ଫଳ, ଉତ୍କଳ ଭାଷାର ପୂର୍ବାପର ଅବସ୍ଥା, ଉତ୍କଳୀୟମାନଙ୍କର ପୂର୍ବାପର ସଭ୍ୟତାର ଉନ୍ନତି ଇତ୍ୟାଦି ବିଷୟରେ ରଚନା ପାଠ ଓ ତର୍କବିତର୍କ ହୋଇଥିଲା । ସଭ୍ୟଙ୍କ ସଂଖ୍ୟା ପଞ୍ଚାଶ ଜଣରୁ ନ୍ୟୂନ ହେବ ନାହିଁ ଓ ପ୍ରତି ଅଧିବେଶନରେ ୪୦ ଜଣରୁ ଊଣା ଉପସ୍ଥିତ ହୁଅନ୍ତି ନାହିଁ । ସଭ୍ୟମାନେ ଯେରୂପ ଉତ୍ସାହ ପୂର୍ବକ ଏ ସଭାର ଉଦ୍ଦେଶ୍ୟ

ସଫଳ କରିବାକୁ ଯତ୍ନବାନ ଅଛନ୍ତି ଏଥିରୁ ବଳି କରି ତାହାଙ୍କର ପରିଚୟ ଦିଆ ଯାଇ-ପାରେ । ଆମ୍ଭେମାନେ ଭରସା କରୁଁ ଯେ ଏ ସଭାଟି ଦୀର୍ଘଜୀବୀ ହେବ ଓ ପ୍ରଥମ ମାସ ଏହାର କାର୍ଯ୍ୟ ଯେରୂପେ ଚାଲିଅଛି ତାହାଙ୍କୁ ଅନୁମାନ ହୁଅଇ ଯେ ଆମ୍ଭମାନଙ୍କର ଆଶା ପୂର୍ଣ୍ଣ ହେବ । ତେବେ ଦୁଃଖ ସହିତ ବୋଲିବାକୁ ହେଉଅଛି ଯେ ଏ ନଗରରେ ସମୟ ସମୟରେ ସ୍ଥାପିତ ହୋଇଥିବା ଅନେକ ସଭାର ଅବସ୍ଥା ଦେଖି ଆମ୍ଭମାନଙ୍କର କୁସଂସ୍କାର ଜନ୍ମିଅଛି ଯେ ଓଡ଼ିଶାକୁ ସଭା ସହଇ ନାହିଁ । ଉତ୍କଳ ଭାଷୋଦ୍ଦୀପନୀ ସଭାକୁ ଏତକ ପ୍ରାର୍ଥନା ଯେ ପ୍ରତ୍ୟକ୍ଷ ପ୍ରମାଣ ଦର୍ଶାଇ ଆମ୍ଭମାନଙ୍କୁ ଉକ୍ତ କୁସଂସ୍କାରରୁ ମୁକ୍ତ କରନ୍ତୁ ।

(ଉ, ଦୀ. ୮/୩୩ ସଂଖ୍ୟା ଅଗଷ୍ଟ ୧୮୭୩ ପୃଷ୍ଠା ୧୨୬)

## ଇଂରାଜୀ ଓ ଓଡ଼ିଆ ଡିକ୍‌ସିନେରି ବା ଅଭିଧାନ :

ଉକ୍ତ ଗ୍ରନ୍ଥ ବହୁ ଯତ୍ନ ଓ ପରିଶ୍ରମ ପୂର୍ବକ ନାନାବିଧ ସୁବିଖ୍ୟାତ ଡିକ୍‌ସନେରି ମାନଙ୍କରୁ ସଂଗୃହୀତ ହୋଇ କଟକ ମିଶନ ଛାପାଯନ୍ତ୍ରରେ ମୁଦ୍ରିତ ହେଉଅଛି । ଏଥି ମଧ୍ୟରୁ ଇଂରାଜୀ ଶବ୍ଦର ଭିନ୍ନ ଭିନ୍ନ ଭାବାର୍ଥମାନ ଓ ଅନେକ କଠିନ ଶବ୍ଦର ପ୍ରକୃତ ଉଚ୍ଚାରଣ ଓ ଓ ଭାଷାର ଅନୁଯାୟୀ ଅନେକ ପ୍ରଚଳିତ ବାକ୍ୟମାନଙ୍କର ଅର୍ଥମାନ ପ୍ରୟୋଗ କରାଯାଇ ଅଛି । ଉକ୍ତ ପୁସ୍ତକର ଆୟତନ ରଏଲ ଆଠପେଜୀ ଆଡ଼ାରେ ୫୦୦ ପତ୍ର ହେବ ତନ୍ମଧ୍ୟରୁ ବର୍ତ୍ତମାନ ୨୧୨ ପତ୍ର ମୁଦ୍ରିତ ହେଲାଣି । ଅବଶିଷ୍ଟାଂଶ ସମୟାନୁକ୍ରମେ ମୁଦ୍ରିତ ହୋଇ ଉତ୍ତମ ସଂକଳନ ସହିତ ପ୍ରକାଶିତ ହେବ ।

ଦାଶରଥି ରାଉତ

(ଉ. ଦୀ ୮/୩୩ ସଂଖ୍ୟା ଅଗଷ୍ଟ ୧୮୭୩ ମସିହା ପୃଷ୍ଠା ୧୫୨)

## ଭଗବଦ୍‌ଭକ୍ତି ପ୍ରଦାୟିନୀ :

ଏହିନାମରେ ଖଣ୍ଡିଏ ପତ୍ରିକା ଆଗାମୀ ଭାଦ୍ରମାସ ପୌର୍ଣ୍ଣମୀଠାରୁ ପ୍ରତି ପକ୍ଷରେ ପ୍ରକାଶିତ ହେବ । ଏହି ପତ୍ରିକା ହିନ୍ଦୁଧର୍ମ ବହିର୍ଭୂତ ଅନ୍ୟ କୌଣସି ସମ୍ପ୍ରଦାୟ ବିଶେଷରେ ମତ ପ୍ରତିପୋଷକ ହେବନାହିଁ । ଯେଉଁମାନେ ଏହାର ସମ୍ପାଦନ କାର୍ଯ୍ୟରେ ବ୍ରତୀ ହୋଇଅଛନ୍ତି ସେମାନେ ହିନ୍ଦୁସମାଜ ଭୁକ୍ତ ଓ ହିନ୍ଦୁ ଧର୍ମାବଲମ୍ବୀ ସୁତରାଂ ଭିନ୍ନ ଜାତୀୟ ଆଚାର, ବ୍ୟବହାର ଓ ଧର୍ମ ଅନୁକରଣ କରିବା ଏମାନଙ୍କର ଅଭିପ୍ରେତ ନୁହେଁ । ଏହି ପତ୍ରିକାର ଅବୟବ ଏକଖଣ୍ଡ ସାନ ଆଡ଼ା କାଗଜର ଷୋଳପୃଷ୍ଠା ହେବ । ଏଥିରେ ଅଧିକାଂଶ ଭଗବଦ୍ ଭକ୍ତି ସଂକ୍ରାନ୍ତ ବିଷୟମାନ ଓ ପ୍ରୟୋଜନାନୁସାରେ ସାମାଜିକ ବିଷୟମାନ ମଧ୍ୟ ସ୍ଥାନ ପ୍ରାପ୍ତ ହେବ ।

ମୂଲ୍ୟ

| | |
|---|---|
| ଅଗ୍ରିମ ବାର୍ଷିକ ମୂଲ୍ୟ | ଟ ୧।୧ |
| ପଶ୍ଚାଦେୟ | ଟ ୧। |
| ଡାକମାସୁଲ | ଟ ୦।୯ |

କଟକ ୨୮ ତାରିଖ ଶ୍ରାବଣ ସନ ୧୨୮୦

ଶ୍ରୀ କ୍ଷିରୋଦନାଥ ମିଶ୍ର ।

ଗ୍ରାହକମାନେ ପତ୍ର ଓ ମୂଲ୍ୟ ଇତ୍ୟାଦ ଶ୍ରୀଯୁକ୍ତ ବାବୁ ହରେକୃଷ୍ଣ ଦାସ ଆଶିଷ୍ଟାଣ୍ଟ ସୁପରଣ୍ଟେଣ୍ଡେଣ୍ଟଙ୍କ ଠାକୁ ପଠାଇ ଦେବେ ।

(ଉ·ଦୀ ୮ ଭାଗ ୩୩ ସଂଖ୍ୟା ୧୮୭୩ ଅଗଷ୍ଟ । ପୃଷ୍ଠା ୧୫୬)

# ଉତ୍କଳ ଦୀପିକା

## (୧୮୭୪)

### ଓଡ଼ଶାର ସମ୍ବାଦପତ୍ର :

ଉତ୍କଳଦର୍ପଣର ଆକାର ପରିବର୍ତ୍ତନରେ ବାଲେଶ୍ୱର ସମ୍ବାଦବାହିକା ଆକ୍ଷେପ ପ୍ରକାଶ କର କହୁଅଛନ୍ତ ଯେ ପରବର୍ତ୍ତନଟି ଭଲ ହେଉ ନାହିଁ, କାରଣ ଓଡ଼ଶାରେ ଅନେକ ଗୁଡ଼ଏ ସମ୍ବାଦପତ୍ର ଅଛୁ, ତଦ୍ଵାରା ସାହତ୍ୟର ଉପକାର ହେଉ ନାହିଁ । ସାହତ୍ୟର ଉତ୍କର୍ଷ ସାଧନ ନମିତ୍ତ ଖଣ୍ଡିଏମାତ୍ର ମାସିକ ପତ୍ରିକା ଉତ୍କଳ ଦର୍ପଣ ଥିଲା ତାହା ସ୍ଥଗିତ ହେବା ଅନୁଚତ ହୋଇଅଛୁ ।

× × ×

( ଉ·ଦୀ ୧୦/୪ ସଂଖ୍ୟା ଜାନୁଆରୀ ୧୮୭୫ ପୃଷ୍ଠା—୧୫)

### ନୂତନ ପୁସ୍ତକ ସମାଲୋଚନା :

ହିତପାଠ ପ୍ରଥମଭାଗ—ପୁରୀ ଜିଲ୍ଲାସ୍କୁଲ ସମୂହର ଭୂତପୂର୍ବ ଡେପୁଟୀ ଇନସପେକ୍‌ଟର ବାବୁ ଗୋବନ୍ଦଚନ୍ଦ୍ର ମହାପାତ୍ରଙ୍କ ଦ୍ୱାରା ରଚତ ଓ କଟକ ପ୍ରିଣ୍ଟିଂ କମ୍ପାନିଙ୍କ ଯନ୍ତ୍ରାଳୟରେ ମୁଦ୍ରିତ ହୋଇ ଅଛୁ ।

ଗ୍ରନ୍ଥକର୍ତ୍ତା ଭୂମିକାରେ ଯାହା ଲେଖି ଅଛନ୍ତ ତହିଁରୁ ପ୍ରକାଶ ଯେ ବିଦ୍ୟାଳୟ ସମୂହର ପାଠୋପଯୋଗୀ ସାହତ୍ୟ ପୁସ୍ତକର ଅଭାବ ଥିବାରୁ ତାହା ପୂର୍ଣ୍ଣ କରିବା ଉଦ୍ଦେଶ୍ୟରେ ସେ ଶ୍ରେଣୀ କ୍ରମେ କେନଖଣ୍ଡି ପୁସ୍ତକ ରଚନା କରିବେ ତହିଁ ମଧ୍ୟରୁ ବର୍ତ୍ତମାନ ପୁସ୍ତକ ଖଣ୍ଡିକ ଆଦ୍ୟ ଶ୍ରେଣୀ ଅଟଇ । ଏଥିରେ ୩୦ଟି ଗଦ୍ୟ ପଦ୍ୟ ମିଶ୍ରିତ ପାଠ ଅଛୁ । ପାଠଗୁଡ଼ିକ ନୀତିବିଜ୍ଞାନ ଓ ପ୍ରକୃତି ବର୍ଣ୍ଣନା ଘଟିତ ଥିବାରୁ ବାଳକମାନଙ୍କର ବଡ଼ ଉପଯୋଗୀ ହୋଇଅଛୁ ।

× × ×

### ରାମବିଳାସ :

ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣଙ୍କ ଦ୍ୱାରା ରଚତ ଓ କଟକ ପ୍ରିଣ୍ଟିଂକମ୍ପାନିଙ୍କ ଦ୍ୱାରା ମୁଦ୍ରିତ ହୋଇଅଛୁ । ବିଦ୍ୟାଳୟର ପାଠ୍ୟପୁସ୍ତକର ଅଭାବ ମୋଚନ କରିବା ଏହାର ଉଦ୍ଦେଶ୍ୟ ଅଟଇ । ଏଖଣ୍ଡିକ ଗଦ୍ୟସାହତ୍ୟ ଓ ଏଥିରେ ଶ୍ରୀରାମଚନ୍ଦ୍ରଙ୍କର ଜୀବନ ବୃତାନ୍ତ ଓ ରାବଣ ସହିତ ଯୁଦ୍ଧ ସବିଶେଷରେ ବର୍ଣ୍ଣିତ ହୋଇଅଛୁ । ପୁସ୍ତକ ବିବେଚନା କମିଟୀ ଏହାକୁ ପାଠୋପଯୋଗୀ ବୋଲି ସ୍ଥିର କରି ଅଛନ୍ତ ଓ ଆମ୍ଭମାନଙ୍କ ମତରେ ଏହାର

ଭାଷା ଓ ରଚନା ପ୍ରଣାଳୀ ଉତ୍ତମ ଅଟଇ । ପୁଣି ରାମଚନ୍ଦ୍ରଙ୍କ ଜୀବନ ବୃତ୍ତାନ୍ତ ଆଦ୍ୟୋପ୍ରାନ୍ତ ସୁନୀତରେ ପୂର୍ଣ୍ଣ । ଏହାକୁ ଏ ଦେଶୀୟ ଛାତ୍ରମାନେ ଯେତେ ଅଧିକ ପଢ଼ିବେ ତେତେ ନୀତଶିକ୍ଷା ଲଭି ଆପଣା ଆପଣ ଚରିତ୍ର ବିଶୁଦ୍ଧ କରିବାକୁ ଉତ୍ସାହୀ ହେବେ । ଅତଏବ ସର୍ବପ୍ରକାରରେ ବିଦ୍ୟାଳୟର ପାଠ୍ୟ ପୁସ୍ତକ ହୋଇଅଛି ମାତ୍ର ଦୁଃଖର ବିଷୟ ଯେ ଏଠାରେ ଶିକ୍ଷାକମିଟୀ ଉପରଲକ୍ଷିତ ଦୁଇ ପୁସ୍ତକ ବିଦ୍ୟାଳୟମାନଙ୍କରେ ପଢ଼ାଇବାକୁ ସନମତ ଦେଇ ନାହାନ୍ତି ।

(ଉ.ଦୀ. ୧୦/୫ ସଂଖ୍ୟା ଜାନୁଆରୀ ୧୮୭୫ ପୃ ୨୪)

## ସାପ୍ତାହିକ ସଂବାଦ :

XX ବାବୁ ରାଜେନ୍ଦ୍ରଲାଲ ମିତ୍ର ଓଡ଼ିଶାର ଆଦିମ ବୃତ୍ତାନ୍ତ ବିଷୟରେ ଯେଉଁ ପୁସ୍ତକ ରଚନା କରିଅଛନ୍ତି ତାହା ସମ୍ପ୍ରତି ପ୍ରଚାରିତ ହେବ । ଓଡ଼ିଶାବାସୀମାନେ ଏ ପୁସ୍ତକ ଆଗ୍ରହ ସହିତ ପାଠକରିବେ ଏମନ୍ତ ଭରସା ହେଉଅଛି ।

X X X

(ଉ, ଦୀ ୧୦/୯ ସଂଖ୍ୟା ୧୮୭୫ ପୃ ୩୬)

## ସିଦ୍ଧାନ୍ତ ଦର୍ପଣ—

ଶ୍ରୀ ଚନ୍ଦ୍ରଶେଖର କୃତ ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥାନୁସାରେ ସାଧିତ ହେବା ଆଗାମୀ ସମ୍ବତ୍ସର ପଞ୍ଜିକା ପ୍ରତ୍ୟୟାର୍ଥେ ଗତପୂର୍ବ ଶକାବ୍ଦ ୧୭୯୭ ବର୍ଷର ନୂତନ ପଞ୍ଜିକାରେ କେତେକ ଦିନର ଗ୍ରହଯୁତିମାନଙ୍କୁ ସାଧି ଲେଖିବାକୁ ହେଉଅଛି । ଏଥକୁ ବିଜ୍ଞାପନ ଏହି ଯେ ଲେଖିଷ୍ୟମାଣ ସମୟମାନଙ୍କରେ ସାବଧାନ ହୋଇ ଶ୍ରୀ କବିବର ମହୋଦୟଙ୍କର ଆକାଶରେ ଦୃଷ୍ଟିପାତ ହେଲେ ଆମ୍ଭର ଚିରକାଳ ପରିଶ୍ରମ ଚରିତାର୍ଥ ହେବ ।

(ଉ, ଦୀ, ୧୦/୯ ୧୮୭୫ ପୃଷ୍ଠା ୩୬)

## ବିଜ୍ଞାପନ—

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ବିରଚିତ ପ୍ରେମ ତରଙ୍ଗିଣୀ ନାମକ ପୁସ୍ତକ ମୁଦ୍ରିତ ହୋଇ ବିକ୍ରୟ ହେଉଅଛି ମୂଲ୍ୟ ୫ ୦/୍ୟ ମାତ୍ର । ଗ୍ରାହକଗଣ କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ଯନ୍ତ୍ରାଳୟରେ ଓ ସହର କଟକ ମାଣିକ ଘୋଷ ବଜାରସ୍ଥିତ ଶ୍ରୀଯୁକ୍ତ ବାବୁ ହରେକୃଷ୍ଣ ଦାସ ଆଶିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟଙ୍କ ବସାରେ ତଦ୍ଦ୍ୱାକଲେ ପ୍ରାପ୍ତ ହୋଇ ପାରିବେ । ମୋଫସଲ ଗ୍ରାହକମାନଙ୍କୁ ମୂଲ୍ୟଛଡ଼ା ଡାକ ମାସୁଲ ଦେବାକୁ ହେବ ।

୧୧ । ୩ । ୭୫ ଶ୍ରୀ ରାଜକିଶୋର ଦାସ

( ଉ. ଦୀ. ଭାଗ ୧୦/୧୧ ସଂଖ୍ୟା ମାର୍ଚ୍ଚ ୧୮୭୫ ପୃ ୫୨)

## ସପ୍ତାହିକ ସମ୍ବାଦ—

× × × ×

ବାବୁ ରାଜେନ୍ଦ୍ରଲାଲ ମିତ୍ରଙ୍କ ରଚିତ 'ଓଡ଼ିଶାର ଆଦିମ ବୃତ୍ତାନ୍ତ' ପ୍ରଥମ ଭାଗ ପ୍ରକାଶିତ ହୋଇ ଅଛି ମାତ୍ର ଏହାର ମୂଲ୍ୟ ଅତ୍ୟନ୍ତ ଅଧିକ ଏକ ଖଣ୍ଡକୁ ଟ ୩୬। ହୋଇଅଛି । × ×

(ଉ. ଦୀ. ୧୦ ଭାଗ ୧୨ ସଂଖ୍ୟା ମାର୍ଚ୍ଚ ୧୮୭୫ ପୃଷ୍ଠା ୫୨)

ପୁରୁଷୋତ୍ତମରେ ଅନେକ କାଳରୁ ଛାପାଖାନା ଗୋଟିଏ ବସିବାର ଉଦ୍ୟମ ଲାଗିଥିଲା ମାତ୍ର କୌଣସି କାରଣରୁ ତାହା ସିଦ୍ଧ ହୋଇ ପାରୁ ନଥିଲା । ପରିଶେଷରେ ବାବୁ ରାମଗୋପାଲ ଗୃହସ୍ଥୀ ଆପଣା ହାତରୁ ସବୁ ବ୍ୟୟ ସ୍ୱୀକାର କରି ଦଢ଼ ସାହସ ସହିତ ଗତ ବର୍ଷ ସେଠାରେ ଛାପାଖାନାଟିଏ ବସାଇଲେ ଓ ଅଳ୍ପକାଳ ମଧ୍ୟରେ ତହିଁର ଭଗବଦ୍‌ଭକ୍ତି ପ୍ରଦାୟିନୀ ଓ ପୁରୁଷୋତ୍ତମ ଚନ୍ଦ୍ରିକା ନାମରେ ଦୁଇଖଣ୍ଡ ସାମୟିକ ପତ୍ରିକା ବାହାରିଲା । କିନ୍ତୁ ଦୁଃଖର ବିଷୟ ଯେ ଗତ ଦୁଇମାସ ଅଥବା ତହିଁରୁ ଅଧିକକାଳରୁ କୌଣସି ପତ୍ରିକା ସଙ୍ଗେ ଆଉ ଭେଟ ହେଉନାହିଁ ଓ ଏମାନଙ୍କର କି ଦୁର୍ଦ୍ଦଶା ଘଟିଲା କିଛି ମଧ୍ୟ ଶୁଣାଯାଇ ନାହିଁ । × × ×

(ଉ, ଦୀ. ୧୦ ଭାଗ ୧୫ ସଂଖ୍ୟା ଏପ୍ରେଲ ୧୮୭୫ ପୃଷ୍ଠା ୬୨)

## ଗ୍ରନ୍ଥକର୍ତ୍ତାମାନଙ୍କ ପ୍ରତି ବିଜ୍ଞାପନ—

ଏ ପ୍ରଦେଶରେ ଯେତେ ଓଡ଼ିଆ ପୁସ୍ତକ ଛାପା ହେଉଅଛି ତାହା କିଣିବାରେ ବଡ଼ ଅସୁବିଧା ହେଉଅଛି । ଯେବେ ଗ୍ରନ୍ଥକର୍ତ୍ତାମାନେ ସମ୍ମତ ହୋଇ କଟକ, ପୁରୀ, ଓ ବାଲେଶ୍ୱରରେ ଜଣେ ଲେଖାଏ ଏଜେଣ୍ଟ ନିଯୁକ୍ତ କରନ୍ତି ତେବେ ଶୀଘ୍ର ଶୀଘ୍ର ବିକ୍ରୀ ହେବ ଓ ସାଧାରଣ ମଧ୍ୟ ଅକ୍ଳେଶରେ ସବୁ ପୁସ୍ତକ ପାଇ ପାରିବେ ।

ଆବଶ୍ୟକ ହେଲେ ଏ ବିଷୟରେ ସାହାଯ୍ୟ କରିବାକୁ ଆମ୍ଭେ ଇଚ୍ଛୁକ ଅଛୁଁ ।

| 14, 15 May 1875 | } | N. K. Das<br>Joint Inspector of Schools |
|---|---|---|

(ଉ. ଦୀ. ୧୦ ଭାଗ ୧୯ ସଂଖ୍ୟା ମେ ୧୮୭୫ ପୃଷ୍ଠା ୮୨) o.c

## ଓଡ଼ିଶାର ସମ୍ବାଦପତ୍ରମାନଙ୍କର ଦୁରବସ୍ଥା—

ଏଥିପୂର୍ବେ ଆମ୍ଭେମାନେ ଥରେ ଲେଖିଥିଲୁଁ ଯେ ଓଡ଼ିଶାକୁ ସମ୍ବାଦପତ୍ର ବଦଳାଇ ଅଛି । ତହିଁରେ ଉତ୍କଳପୁତ୍ର ଆମ୍ଭମାନଙ୍କ ସହିତ ପ୍ରତିବାଦ କରିଥିଲେ ଓ ବାଣିଜ୍ୟର ନିୟମ ଆମ୍ଭମାନଙ୍କୁ ବୁଝାଇ ଦେଇ ଉପହାସ କରିଥିଲେ । ଆଶ୍ଚର୍ଯ୍ୟର ବିଷୟ ଯେ ଦୁଇ ତିନମାସ ଗତ ନ ହେଉଣୁ ଉତ୍କଳପୁତ୍ର ଅନାହାରରେ ମୃତ୍ୟୁ ଆଶଙ୍କାରେ "ଥରେ ପଢ଼" ପ୍ରବନ୍ଧରେ

ଗ୍ରାହକମାନଙ୍କୁ ବିଶେଷରେ 'ଅନ୍ଧଆ ଗ୍ରାହକମାନଙ୍କୁ' ବିସ୍ତର କଟୁବାକ୍ୟ କହି ତାହାଙ୍କ ମନ୍ଦରୁଚିକି ଖୁବ ନିନ୍ଦା କରି ଅଛନ୍ତି ଓ ତହିଁ ସଙ୍ଗେ ସଙ୍ଗେ ଭିକାରୀ ବ୍ରାହ୍ମଣଙ୍କ ପରି ବ୍ରହ୍ମହତ୍ୟା ଦୋଷ ଲଗିବାର ଭୟ ଦେଖାଇ ନରମ ଗରମ ବହୁତ କଥା କହି ଅଛନ୍ତି । ପ୍ରବନ୍ଧଟି ଯେମନ୍ତ ଛଟାରେ ଲେଖାଯାଇଅଛି ତହିଁରୁ ବୋଧ ହୁଅଇ ଯେ ପୁନ୍ଫଙ୍କର ଗ୍ରାହକ ସମସ୍ତେ ନ ହେଉନ୍ତୁ ଅଧିକାଂଶ ଅନ୍ଧଆ ଓ ଟଙ୍କା ନଥିବା ଗ୍ରାହକ କାଗଜ ପଢ଼ିବାକୁ ସୁଖ ପାଆନ୍ତି । ଏ ପ୍ରକାର ରୁଚି ଅବଶ୍ୟ ମନ୍ଦ ଅଟଇ କିନ୍ତୁ ପୁନ୍ଫ ଯେ ତାହାଙ୍କର ଶିକ୍ଷାଦାତା ହୋଇ ତାହାଙ୍କ କୁରୁଚିକି ବଢ଼ାଇବାରେ ଉତ୍ସାହ ଦେଇ ଅଛନ୍ତି ଏହା ତହୁଁ ଅଳିକରି ମନ୍ଦ ଅଟଇ ।× × ତେବେ ଏତିକି ବୋଲିଯାଇ ପାରେ ଯେ ଉତ୍କଳପୁନ୍ଫ' ତିନିବର୍ଷର ଶିଶୁମାନ୍ଦ, ଦୁଧରୁଣ୍ଡର କଥା କର୍କଶ ହେଲେ ମଧ୍ୟ ମିଷ୍ଟ ଜଣାଯାଏ ଓ ଶିଶୁ ଗାଳି ଦେଲେ ସୁଦ୍ଧା ତାହା ମଧୁର ବୋଧ ହୁଅଇ ଏହେତୁ ସର୍ବ-ସାଧାରଣ ଓ ଗ୍ରାହକମାନେ ପୁନ୍ଫଙ୍କର କଥାକୁ କୌତୁକରେ ଉଡ଼ାଇ ଦେବେ ଓ ପଇସା ଦେଇ ବୋଧ କରିବେ ଏମନ୍ତ ଆମ୍ଭେମାନେ ଆଶାକରୁଁ ।

ଯାହାହେଉ ଏକ ପକ୍ଷରେ 'ପୁନ୍ଫ'ର କଥା ଧର୍ତ୍ତବ୍ୟ ନୁହଇ କିନ୍ତୁ 'ଉତ୍କଳ ହିତୈଷୀ' ଯେତେ ନାମ ଧାରଣ କରି ଆପଣାକୁ ବିବେକ ବୋଲାଇ ସପରିବାରରେ ବିଳାପ କରିବା ଉଚିତ । ବୋଧନରୁ ପୁନ୍ଫକଥା ଗାଇ ବୁଲିଲେ ଏହା ବଡ଼ ଆଶ୍ଚର୍ଯ୍ୟର ବିଷୟ ଅଟଇ ଯେ କି ଭିକ୍ଷାମାଗି ଛାପାଖାନାଟି ବସାଇଥିବାରୁ ସେହି ଭିକ୍ଷା ମାଗିବା ତାହାଙ୍କୁ ଛୁଉନାହିଁ । ତାହାଙ୍କ କଥାରୁ ବୋଧ ହୁଅଇ ଯେମନ୍ତେ ଆପଣା ପରିବାର ପ୍ରତିପାଳନ ସକାଶେ ଯେ ଏ ବୃତ୍ତିର ଅନୁଷ୍ଠାନ କରିଥିଲେ ତାହାସିଦ୍ଧ ନ ହେବାରୁ ବାଳକ ପ୍ରାୟ କ୍ରନ୍ଦନ କରି ଚଳି ହେଉଅଛନ୍ତି । ତାହାଙ୍କର ଅଭିଷ୍ଟ ସିଦ୍ଧ ନ ହେବାର ଦେଖି ଆମ୍ଭେମାନେ ଦୁଃଖିତ ହେଉଅଛୁଁ ତଥାଚ ତାହାଙ୍କଠାରେ ଏତିକି ଆଶା କରୁ ଯେ ସେ ସେ ବାଳୁତ କଥାରେ ନ ଭୁଲି ଥରେ ଆପଣା ମର୍ଯ୍ୟାଦା ପ୍ରତି ଦୃଷ୍ଟି କରନ୍ତୁ ।

× × ×

(ଉ. ପା. ୧୦ ଭାଗ ୨୧ ସଂଖ୍ୟା ମେ ୧୮୭୫ ପୃ ୧୦)

**କଟକ କଲେଜ—**

ଆମ୍ଭମାନଙ୍କ ଲେଫ୍‌ଟନେଣ୍ଟ୍ ସାର୍ ରିଚ୍‌ଡ଼ ଟେମ୍ପଲ ଯେଉଁ ସମୟରେ ଓଡ଼ିଶାକୁ ଆସିଥିଲେ ସେ ସମୟରେ କଟକରେ ହାଇସ୍କୁଲ ପରିବର୍ତ୍ତରେ ଗୋଟିଏ କଲେଜ ସ୍ଥାପନ କରିବାର କଥା ତାହାଙ୍କ ଠାରେ ପ୍ରକାଶ ହୋଇଥିଲା ଓ ଜିଲାର କମିଶନର ସାହେବଙ୍କ ଇଚ୍ଛା ଯେ ବାର୍ଷିକ ଟ ୧୨୦୦୦ଙ୍କା ଅଧିକ ଗବର୍ଣ୍ଣମେଣ୍ଟ ନେଲେ ସେ ଏ ପ୍ରସ୍ତାବକୁ ପରୀକ୍ଷା କରି ଦେଖିବେ । ଉକ୍ତ ଟଙ୍କା ମାସକୁ ଏକ ହଜାର ଲେଖାଏଁ ତଳ ଲିଖିତ ରୂପେ ଖର୍ଚ୍ଚ ହେବ । ଯଥା

| | | |
|---|---|---|
| ଏକଜଣ ଅଧ୍ୟକ୍ଷ | ମାସକୁ | ଟ ୪୫୦-୦୦ |
| ,, ଅଧ୍ୟାପକ .... | ,, | ଟ ୨୫୦-୦୦ |
| ,, ରସାୟନ ଶିକ୍ଷକ ... | ,, | ଟ ୨୦୦-୦୦ |
| ବାଜେ ଖର୍ଚ୍ଚ | ,, | ଟ ୧୦୦-୦୦ |

ବର୍ତ୍ତମାନ ହାଇସ୍କୁଲରେ ମାସକୁ ୯୮୪ ଟଙ୍କା ବ୍ୟୟ ହେଉଅଛୁ ଯେ ତହିଁ ମଧ୍ୟରେ ଗବର୍ଣ୍ଣମେଣ୍ଟ ୭୫୦ ଟଙ୍କା ଦଅନ୍ତି । × × ×

( ଉ. ଦୀ. ୧୦ ଭାଗ ୨୩ ସଂଖ୍ୟା ଯୁନ ୧୮୭୫ ମସିହା ପୃଷ୍ଠା ୯୮ )

---

# ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗର ବାର୍ଷିକ ବିବରଣୀ

୧୯୭୧-୭୨

ସମ୍ମାନନୀୟ ସଭାପତି, ବରେଣ୍ୟ ଅତିଥି ଶ୍ରୀଯୁକ୍ତ ପଟ୍ଟନାୟକ ଓ ଶ୍ରୀଯୁକ୍ତ ଦାସ, ଆମ ବିଭାଗର ପ୍ରାଧ୍ୟାପକ ଓ ସୁଧୀବୃନ୍ଦ ।

ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗର ଏହି ତୃତୀୟ ବାର୍ଷିକ ଉତ୍ସବକୁ ମୁଁ ଆପଣମାନଙ୍କୁ ବିଭାଗ ତରଫରୁ ସସମ୍ମାନ ସ୍ୱାଗତ ଜଣାଉଛି ଓ ଏହି ଶୁଭ ଅବକାଶରେ ଆମ ବିଭାଗର ଗତ ବର୍ଷର କାର୍ଯ୍ୟକଳାପ ଆପଣମାନଙ୍କ ନିକଟରେ ଉପସ୍ଥାପିତ କରୁଅଛି । ଓଡ଼ିଆ ଭାଷା ଓ ସାହିତ୍ୟର ଅଧ୍ୟୟନ, ଗବେଷଣା, ଅନ୍ୱେଷଣ ଓ ଅଭିବିକାଶର ଆଭିମୁଖ୍ୟ ନେଇ ଆମ ବିଭାଗର ସୃଷ୍ଟି ହୁଏ ୧୯୬୯ ମସିହା ଜୁଲାଇ ମାସରେ । ବର୍ତ୍ତମାନ ଏହାର ଦୁଇଟି ଶ୍ରେଣୀରେ ୩୭ ଜଣ ଛାତ୍ରଛାତ୍ରୀ ଅଧ୍ୟୟନ କରୁଛନ୍ତି ଓ ପ୍ରାଧ୍ୟାପକ ଡକ୍ଟର ବଂଶୀଧର ମହାନ୍ତିଙ୍କ ସମେତ ରିଡ଼ର ଡକ୍ଟର କୃଷ୍ଣଚରଣ ସାହୁ, ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀ, ଅଧ୍ୟାପକ ବାସୁଦେବ ସାହୁ, ବିଶ୍ୱବିଦ୍ୟାଳୟ ଆୟୋଗ ଅନୁଦାନର ଅବସର-ପ୍ରାପ୍ତ ଅଧ୍ୟାପକମାନଙ୍କର ଅବସର ବିନିଯୋଗ ଯୋଜନା ଅନୁଯାୟୀ ନିଯୁକ୍ତ ଡକ୍ଟର କୁଞ୍ଜବିହାରୀ ଦାଶ ଓ ଉଚ୍ଚକୋଟୀର ପାଠ୍ୟ ରଚନା ଯୋଜନା ଅନୁଯାୟୀ ନିଯୁକ୍ତ ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି ଅଧ୍ୟାପନା ଦାୟିତ୍ୱ ଗ୍ରହଣ କରିଛନ୍ତି ।

ଦୈନନ୍ଦିନ ଅଧ୍ୟୟନ ଓ ଅଧ୍ୟାପନା କାର୍ଯ୍ୟ ବ୍ୟତୀତ ଏହି ବିଭାଗର ଅଧ୍ୟାପକ ଓ ଛାତ୍ରଛାତ୍ରୀମାନେ ଓଡ଼ିଆ ଭାଷା ଓ ସାହିତ୍ୟ ସମ୍ବନ୍ଧୀୟ ବିଭିନ୍ନ ତଥ୍ୟ ସଂଗ୍ରହ, ଗବେଷଣା, ଓଡ଼ିଆ ଭାଷା ଓ ସାହିତ୍ୟର ପୂର୍ଣ୍ଣାଙ୍ଗ ଇତିହାସ ସଂକଳନ ତଥା ବୈଜ୍ଞାନିକ ଅଧ୍ୟୟନ ଲାଗି ନିମ୍ନଲିଖିତ କେତୋଟି ଦାୟିତ୍ୱ ଗ୍ରହଣ କରିବାପାଇଁ ଆଗ୍ରହ ପ୍ରକାଶ କରିଥାନ୍ତି ଓ ଏ ଦିଗରେ ସେମାନେ ଅନେକ ଅଗ୍ରସର ହୋଇଛନ୍ତି ମଧ୍ୟ ।

(୧) ପ୍ରାଚୀନ ତାଳପତ୍ର ପୋଥି, ତାମ୍ରଲେଖ, ଶିଳାଲେଖ ଓ ପ୍ରତ୍ନତାତ୍ତ୍ୱିକ ପଦାର୍ଥ ସଂକଳନ ଏବଂ ସଂରକ୍ଷଣ ।

(୨) ବିଭିନ୍ନ ପ୍ରାଚୀନ ଗ୍ରନ୍ଥର ଶୁଦ୍ଧ ସଂସ୍କରଣ ଓ ସମ୍ପାଦନା ।

(୩) ଲୋକ ମୁଖରେ ପ୍ରଚଳିତ ସାହିତ୍ୟିକ ଓ ଐତିହାସିକ ଉପାଦାନ ସଂଗ୍ରହ ।

(୪) ଓଡ଼ିଆ ଭାଷାରେ ପ୍ରକାଶିତ ସମସ୍ତ ଗ୍ରନ୍ଥର ଏକ ସୂଚୀଗ୍ରନ୍ଥ ( Bibliogr-aphy ) ପ୍ରସ୍ତୁତ ।

(୫) ଓଡ଼ିଆ ସାହିତ୍ୟର ଏକ ପୂର୍ଣ୍ଣାଙ୍ଗ ଇତିହାସ ସଂକଳନ ।

(୬) ଓଡ଼ିଆ ଭାଷାର କ୍ରମବିକାଶ ଓ କ୍ରମବିବର୍ତ୍ତନ ସଂପର୍କରେ ଏକ ପ୍ରାମାଣିକ ଇତିହାସ ସଂକଳନ ।

(୭) ଓଡ଼ିଆ ଭାଷା ଓ ସାହିତ୍ୟ ସଂପର୍କରେ ଗବେଷଣା କରିବା ପାଇଁ ଆଗ୍ରହୀ ବିଦେଶୀ ବ୍ୟକ୍ତିମାନଙ୍କର ସୁବିଧା ନିମନ୍ତେ ଇଂରାଜୀ ଭାଷାରେ ଓଡ଼ିଆ ଭାଷାର ଏକ ତୁଳନାତ୍ମକ ବ୍ୟାକରଣ ଓ ରୋମାନ ଲିପିରେ ଓଡ଼ିଆ ଅଭିଧାନ ପ୍ରଣୟନ ।

(୮) ଉତ୍କଳ ଦୀପିକା, ପ୍ରବୋଧ ଚନ୍ଦ୍ରିକା ପରି ପତ୍ରିକାମାନଙ୍କ ଅବଲମ୍ବନରେ ଓଡ଼ିଆ ଭାଷା, ସାହିତ୍ୟ, ଶିକ୍ଷା, ଶାସନ, ସମାଜ ଓ ସଂସ୍କୃତି ସଂପର୍କୀୟ ଇତିବୃତ୍ତ ସଂକଳନ ।

ତିନିବର୍ଷର କାର୍ଯ୍ୟକାଳ ମଧ୍ୟରେ ଏହି ବିଭାଗ ତାହାର ଲକ୍ଷ୍ୟ ସାଧନରେ କେତେକ ପରିମାଣରେ ସଫଳତା ହାସଲ କରିଛି । ବିଭାଗୀୟ ଅଧ୍ୟାପକ ଗୁରୁଗୁରୀ ଓ କାର୍ଯ୍ୟାଳୟ ସହାୟକଙ୍କ ଉଦ୍ୟମରେ ୩୮୧ ଖଣ୍ଡ ତାଳପତ୍ର ପୋଥି ସଂଗୃହୀତ ହୋଇଅଛି । ତନ୍ମଧ୍ୟରେ ଶିଳ୍ପଶାସ୍ତ୍ର, ଆୟୁର୍ବେଦ ଶାସ୍ତ୍ର, ଜ୍ୟୋତିଷ ଶାସ୍ତ୍ର, ଚିତ୍ରାଙ୍କିତ କାବ୍ୟ ସମେତ ୩୪ ଖଣ୍ଡ ଅପ୍ରକାଶିତ ଉପାଦେୟ ପୋଥି ରହିଅଛି । ବିଭାଗୀୟ ମୁଖ୍ୟ ଅଧ୍ୟାପକଙ୍କ ପ୍ରଚେଷ୍ଟାରେ ୧୩୦ଟି ଐତିହାସିକ ପାର୍ଶୀ ଓଡ଼ିଆ ରେକର୍ଡ଼, ବ୍ରିଟିଶ ରାଜତ୍ୱର ପ୍ରଥମ ପର୍ଯ୍ୟାୟ କାଳୀନ ୪୧ଟି ଓଡ଼ିଆ ରେକର୍ଡ଼, କେତୋଟି ତିନି ଖୁଣ୍ଟିଆ ଓ ଛଅଟି ତାମ୍ର ଫଳକ ମଧ୍ୟ ସଂଗୃହୀତ ହୋଇ ପାରିଅଛି । ଏହି ବିଭାଗ ରିଡ଼ର ଡକ୍ଟର କୃଷ୍ଣଚରଣ ସାହୁ ମଧ୍ୟ ଶତାଧିକ ତାଳପତ୍ର ପୋଥି ସଂଗ୍ରହ କରିଛନ୍ତି । ଏ ସବୁ ମଧ୍ୟରୁ କେତେଟିର ସମାବେଶରେ ଆଜି ଏକ ପ୍ରଦର୍ଶନୀ ଉଦ୍‌ଘାଟିତ ହୋଇଅଛି । ଅାମ ବିଭାଗ ୧୮୬୬, ୧୮୬୭ ଓ ୧୮୬୮ ଖ୍ରୀଷ୍ଟାବ୍ଦର ଉତ୍କଳ ଦୀପିକା, ୧୮୫୭ ମସିହାର ଦୁର୍ଲଭ ଓଡ଼ିଆ ପତ୍ରିକା ପ୍ରବୋଧ ଚନ୍ଦ୍ରିକା, କ୍ରମସଜ୍ଜିତ ବହୁ ବର୍ଷର ସହକାର, ନବଭାରତ, ଝଙ୍କାର, ଡଗର, ନବଜୀବନ ଓ ଜୀବନ ରଙ୍ଗ ଆଦି ପତ୍ରିକା, ପଞ୍ଚସଖା ଯୁଗର ଓ ସପ୍ତଦଶ ଶତାବ୍ଦୀର ପ୍ରକାଶିତ ଶତାଧିକ ଦୁଷ୍ପ୍ରାପ୍ୟ ପୁସ୍ତକ ପୁସ୍ତିକା, ବୈଷ୍ଣବପାଣିଙ୍କର କେତେକ ଦୁର୍ଲଭ ରଚନା ସଂଗ୍ରହ କରି ପାରିଅଛି । ଆସନ୍ତା ବର୍ଷ ଆମ୍ଭେମାନେ ଓଡ଼ିଶାର ବିଭିନ୍ନ ଅଞ୍ଚଳ ପରିକ୍ରମା କରି ଓଡ଼ିଆ ଭାଷା ସାହିତ୍ୟ ସମ୍ବନ୍ଧୀୟ ଉପାଦାନ ସଂଗ୍ରହ କରିବା ପାଇଁ ଯୋଜନା କରିଅଛୁ ଏବଂ ସେଥି ନିମିତ୍ତ ଉତ୍କଳ ବିଶ୍ୱବିଦ୍ୟାଳୟ ଆବଶ୍ୟକ ଅର୍ଥ ସାହାଯ୍ୟର ବ୍ୟବସ୍ଥା କରିବା ପାଇଁ ଅନୁରୋଧ କରାଯାଇ ଅଛି ।

ଆମ ବିଭାଗର ମୁଖ୍ୟ ଡକ୍ଟର ମହାନ୍ତିଙ୍କର ଆନୁକୂଲ୍ୟରେ ବିଶ୍ୱବିଦ୍ୟାଳୟ ଓଡ଼ିଆ ସାହିତ୍ୟ ପ୍ରକାଶନୀ ବିଭାଗ ଦ୍ୱାରା ବିଭିନ୍ନ ଯୁଗର ପ୍ରାଚୀନ ଗ୍ରନ୍ଥମାନଙ୍କର ସଂପାଦନା କାର୍ଯ୍ୟ

ହୋଇଛି । ସାରଳା ଦାସଙ୍କର 'ଚଣ୍ଡୀ ପୁରାଣ' ଅନନ୍ତ ଦାସଙ୍କର 'ହେତୁଦୟ ଭାଗବତ' ଓ ଗୋପାଳ ପୁରୁଷୋତ୍ତମ ଦାସଙ୍କର କାଞ୍ଚିକାବେରୀ କାବ୍ୟ ସମ୍ପାଦିତ ହୋଇ ସାରିଲାଣି । ଆଶା, ଆସନ୍ତା ବର୍ଷକୁ ଏହି ତିନୋଟି ଗ୍ରନ୍ଥ ପ୍ରକାଶ ପାଇପିବ ।

ଆମ୍ଭେମାନେ ଉତ୍କଳ ବିଶ୍ବବିଦ୍ୟାଳୟ ଗ୍ରନ୍ଥାଗାରରେ ସଂରକ୍ଷିତ ପ୍ରାୟ ଦୁଇ ହଜାର ପାଣ୍ଡୁଲିପିର ବର୍ଣ୍ଣନାତ୍ମକ ଗ୍ରନ୍ଥସୂଚୀ ପ୍ରସ୍ତୁତ କରୁଛୁ । ଏଥି ମଧ୍ୟରୁ ୪୦୦ ତାଳପତ୍ର ପୋଥିର ବିବରଣୀ ପ୍ରସ୍ତୁତ ହୋଇ ଛପାହେଉଛି । ବିଭାଗୀୟ ମୁଖ୍ୟ ଡକ୍ଟର ବଂଶୀଧର ମହାନ୍ତି ଓ ଅଧ୍ୟାପକ ବାସୁଦେବ ସାହୁଙ୍କର ମିଳିତ ଉଦ୍ୟମରେ ଏକ ତୁଳନାତ୍ମକ ଓଡ଼ିଆ ବ୍ୟାକରଣ ଏବଂ ରୋମାନ ଲିପିରେ ଏକ ଓଡ଼ିଆ ଅଭିଧାନ ପ୍ରଣୟନ କାର୍ଯ୍ୟ ଅଧାଅଧି ଶେଷ ହୋଇଛି । ପ୍ରକାଶିତ ସମସ୍ତ ଓଡ଼ିଆ ପୁସ୍ତକର ସୂଚୀଗ୍ରନ୍ଥ ସମ୍ପାଦନ କାର୍ଯ୍ୟ ମଧ୍ୟ ଏହି ବିଭାଗର ପ୍ରାକ୍ତନ ଛାତ୍ରଛାତ୍ରୀମାନଙ୍କ ଦ୍ଵାରା ଆରମ୍ଭ ହୋଇଛି ।

ବିଭାଗର ଗବେଷଣାତ୍ମକ କାର୍ଯ୍ୟାବଳୀକୁ ତ୍ଵରାନ୍ଵିତ କରିବା ଲାଗି ଅତିଶୀଘ୍ର ଜଣେ ଗବେଷକ ଓ ଜଣେ ଗବେଷଣା ସହାୟକ ନିଯୁକ୍ତ ହେବେ । ଓଡ଼ିଆ ବିଭାଗର ଅଙ୍ଗ ରୂପେ ଏକ ଗବେଷଣା ବିଭାଗ ଓ ଏକ ଭାଷାବିଜ୍ଞାନ ବିଭାଗର ସୃଷ୍ଟି ପାଇଁ ମଧ୍ୟ ପ୍ରସ୍ତାବ ଦିଆଯାଉଛି ।

ଏହି ବିଭାଗର ମୁଖ୍ୟ ଅଧ୍ୟାପକ ଡକ୍ଟର ବଂଶୀଧର ମହାନ୍ତି ସାରଳା ମହାଭାରତରେ ସମାଜ ଚିତ୍ର, ରିଡ଼ର ଡକ୍ଟର କୃଷ୍ଣଚରଣ ସାହୁ ପଞ୍ଚସଖା ସାହିତ୍ୟ, ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀ ଓଡ଼ିଆ କବିତାର ୫୦ ବର୍ଷ (୧୯୧୫-୧୯୬୫), ଅଧ୍ୟାପକ ବାସୁଦେବ ସାହୁ ଓଡ଼ିଆ ଭାଷାରେ ବିଦେଶୀ ଭାଷାର ପ୍ରଭାବ, ଡକ୍ଟର କୃଷ୍ଣବିହାରୀ ଦାଶ 'ଓଡ଼ିଆ ଢଗଢମାଳି ଓ ଶ୍ରୀଯୁକ୍ତ ଦେବେନ୍ଦ୍ର ମହାନ୍ତି 'ଓଡ଼ିଆ ଶବ୍ଦଭଣ୍ଡାର' ଉପରେ ଗବେଷଣା କରୁଛନ୍ତି । ଡକ୍ଟର କୃଷ୍ଣଚରଣ ସାହୁ ଜଗମୋହନ ରାମାୟଣର ସମ୍ପାଦନା କାର୍ଯ୍ୟ ମଧ୍ୟ ଆରମ୍ଭ କରିଛନ୍ତି ।

ଡକ୍ଟର ବଂଶୀଧର ମହାନ୍ତି ନୂଆଦିଲ୍ଲୀଠାରେ ଅନୁଷ୍ଠିତ ଆନ୍ତର୍ଜାତିକ ସଂସ୍କୃତ ସମ୍ମିଳନୀରେ ଉତ୍କଳ ବିଶ୍ବବିଦ୍ୟାଳୟର ପ୍ରତିନିଧି ଭାବରେ ଯୋଗଦେଇ ଭାଗବତ ପୁରାଣ ଉପରେ ଏକ ସାରଗର୍ଭକ ସନ୍ଦର୍ଭ ପ୍ରଦାନ କରିଥିଲେ । ଡକ୍ଟର ଆର୍ତ୍ତବଲ୍ଲଭଙ୍କ ସ୍ମୃତି ଉଦ୍ଦେଶ୍ୟରେ ଆୟୋଜିତ ପ୍ରବନ୍ଧ ପ୍ରତିଯୋଗିତାରେ ପ୍ରଥମ ପୁରସ୍କାର ପ୍ରାପ୍ତ ତାଙ୍କର ନିବନ୍ଧ 'ଓଡ଼ିଆ ସାହିତ୍ୟକୁ ଆର୍ତ୍ତବଲ୍ଲଭଙ୍କ ଦାନ' ନିକଟରେ ପ୍ରକାଶିତ ହୋଇଛି । ଡକ୍ଟର କୃଷ୍ଣ ଚରଣ ସାହୁ ଫୁଲବାଣୀ ମହାବିଦ୍ୟାଳୟର ସାହିତ୍ୟ ସମାରୋହରେ ମୁଖ୍ୟ ଅତିଥି ଭାବରେ ଯୋଗ ଦେଇ 'ଇଣ୍ଡୋନେସିଆରେ ଓଡ଼ିଆ ସାହିତ୍ୟର ସୂଚନା' ଏବଂ ମୂଳଗାଁଠାରେ 'ସାରଳା ଦାସଙ୍କର ଜନ୍ମଭୂମି ଦର୍ଶନ' ସମ୍ପର୍କରେ ଭାଷଣ ଦେଇଥିଲେ । ଅଧ୍ୟାପକ-ଶ୍ରୀ ନିତ୍ୟାନନ୍ଦ ଶତପଥୀ ପୁନାଠାରେ ଓଡ଼ିଆ, ବଙ୍ଗାଳୀ, କାଶ୍ମୀର ଓ ସଂସ୍କୃତ ଲେଖକ-ମାନଙ୍କ ସମାବେଶରେ ଅନୁଷ୍ଠିତ ଭାରତୀୟ ଲେଖକ ସମ୍ମିଳନୀରେ ଯୋଗଦେଇ 'ଆଧୁନିକ ଓଡ଼ିଆ କବିତାର ଆଭିମୁଖ୍ୟ' ସମ୍ପର୍କରେ ଓ କଲିକତାରେ ଅନୁଷ୍ଠିତ ପୂର୍ବାଞ୍ଚଳୀୟ ସାହିତ୍ୟ ସମ୍ମିଳନୀରେ ଯୋଗ ଦେଇ 'Problem of Inter Communication

between the writers of the Eastern Zone' ଶୀର୍ଷକ ପ୍ରବନ୍ଧ ପାଠ କରିଥିଲେ । ଅଧ୍ୟାପକ ଶ୍ରୀ ବାସୁଦେବ ସାହୁ ଖଡ଼ଗପୁରର ପ୍ରବାସୀ ଓଡ଼ିଆ ସାଂସ୍କୃତିକ ପରିଷଦ ଦ୍ୱାରା ଆୟୋଜିତ ସାଂସ୍କୃତିକ ଉତ୍ସବରେ ଯୋଗଦେଇ 'ଓଡ଼ିଶାର ଐତିହ୍ୟ ଓ ସଂସ୍କୃତି' ଉପରେ ଏକ ପ୍ରବନ୍ଧ ପାଠ କରିଥିଲେ ଓ 'ଉତ୍କଳ ବିଦ୍ୟାଭବନ'ର ପ୍ରତିଷ୍ଠା ଦିବସରେ ମୁଖ୍ୟ ଅତିଥି ଭାବରେ ଯୋଗଦେଇ ଓଡ଼ିଆ ସାହିତ୍ୟରେ ବିଶ୍ୱଭାବ ଚେତନା ସମ୍ପର୍କରେ ଏକ ଭାଷଣ ଦେଇଥିଲେ ।

ଏହି ବିଭାଗର ଅନ୍ୟ ଏକ ଆଭିମୁଖ୍ୟ ହେଲା ବିଭିନ୍ନ ସମୟରେ ପାଠଚକ୍ର ମାଧ୍ୟମରେ ଅଧ୍ୟାପକ ଓ ଛାତ୍ରମାନଙ୍କର ଭାଷା ଏବଂ ସାହିତ୍ୟିକ ଗବେଷଣା ସମୀକ୍ଷା ତଥା ସୃଷ୍ଟିଶୀଳ ପ୍ରତିଭାକୁ ପ୍ରୋତ୍ସାହିତ କରିବା । ଗତବର୍ଷ ପାଠଚକ୍ର ପାଇଁ ପ୍ରସ୍ତୁତ ୩୭ଟି ପ୍ରବନ୍ଧ ମଧ୍ୟରୁ ନିର୍ବାଚିତ ୨୦ଟି ପ୍ରବନ୍ଧ ସମାବେଶରେ 'ପାଠଚକ୍ର ପ୍ରବନ୍ଧାବଳୀ' ପ୍ରକାଶ ପାଇଛି । ଏହା ଏକ ଗବେଷଣା-ମୂଳକ ଉପାଦେୟ ଗ୍ରନ୍ଥ ଭାବରେ ସାହିତ୍ୟ ପ୍ରେମୀମାନଙ୍କର ଦୃଷ୍ଟି ଆକର୍ଷଣ କରିଛି । ଏ ବର୍ଷ ବିଭାଗୀୟ ଅଧ୍ୟାପକମାନଙ୍କର ତତ୍ତ୍ୱାବଧାନରେ ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ପ୍ରସ୍ତୁତ ପାଠଚକ୍ର ପ୍ରବନ୍ଧାବଳୀର ଦ୍ୱିତୀୟ ସଂଖ୍ୟା ବର୍ତ୍ତମାନ ଯନ୍ତ୍ରସ୍ଥ ଅଛି । ମେ ମାସ ଶେଷ ଭାଗରେ ଏହାର ପ୍ରକାଶନ କାର୍ଯ୍ୟ ଶେଷ ହୋଇଯିବ ବୋଲି ଆଶା । ଏ ବର୍ଷ ଯଥା ସମୟରେ ଏହି ବିଭାଗର ପାଠଚକ୍ର ପାଇଁ ବିଧିବଦ୍ଧ ଭାବରେ କର୍ମକର୍ତ୍ତା ନିର୍ବାଚନ ହୋଇ-ଥିଲା । ଏଥିରେ ନିମ୍ନଲିଖିତ ଛାତ୍ରଛାତ୍ରୀମାନେ ବିଭିନ୍ନ କାର୍ଯ୍ୟଭାର ପାଇଁ ନିର୍ବାଚିତ ହୋଇଥିଲେ ।

ଶ୍ରୀ ସୁରେନ୍ଦ୍ରନାଥ ଦାସ—ସାହିତ୍ୟିକ ଓ ସାଂସ୍କୃତିକ ସମ୍ପାଦକ
ଶ୍ରୀ ଭଗବାନ ମହାପାତ୍ର—ପାଠାଗାର ଓ ସଗଠନ ସମ୍ପାଦକ
ଶ୍ରୀ ବିରଜାନନ୍ଦ ବସ୍ତିଆ—ସହ ସମ୍ପାଦକ
ଶ୍ରୀ ଲକ୍ଷ୍ମୀଧର ପଣ୍ଡା—ଷଷ୍ଠବାର୍ଷିକ ଶ୍ରେଣୀ ପ୍ରତିନିଧି
ଶ୍ରୀ ଦେବରାଜ ରଥ—ପଞ୍ଚମ ବାର୍ଷିକ ଶ୍ରେଣୀ ପ୍ରତିନିଧି

ପାଠଚକ୍ର ପାଇଁ ମୁଖ୍ୟ ଅଧ୍ୟାପକ ଡକ୍ଟର ବଂଶୀଧର ମହାନ୍ତି ସଭାପତି ଓ ଅଧ୍ୟାପକ ବାସୁଦେବ ସାହୁ ତତ୍ତ୍ୱାବଧାରକ ଦାୟିତ୍ୱ ଗ୍ରହଣ କରିଛନ୍ତି ।

ଏ ବର୍ଷ ଓଡ଼ିଶାରେ ବନ୍ୟା ଓ ବାତ୍ୟାଜନିତ ଦାରୁଣ ଦୁର୍ବିପାକ ଯୋଗୁଁ ଆମ୍ଭେମାନେ ପୂର୍ବ ବର୍ଷମାନଙ୍କ ପରି ବହୁ ସଂଖ୍ୟାରେ ପାଠଚକ୍ର ଆୟୋଜନ କରିବା ପାଇଁ ସମୟ ଓ ସୁବିଧା ପାଇପାରି ନ ଥିଲେହେଁ ଆମ ପାଠଚକ୍ରର କାର୍ଯ୍ୟକଳାପ କଦାପି ମନ୍ଥର ନ ଥିଲା । ଆମ୍ଭେମାନେ ଅଳ୍ପକାଳ ମଧ୍ୟରେ ୧୬ଟି ଆଲୋଚନା ଚକ୍ର ଅନୁଷ୍ଠାନ କରିପାରିଅଛୁ । ପ୍ରତି ସପ୍ତାହରେ ଗୋଟିଏ ଦିନ ପାଠଚକ୍ରର ଆଲୋଚନା ପାଇଁ ନିର୍ଦ୍ଦିଷ୍ଟ ହୋଇଥିଲେହେଁ ଆମ୍ଭେମାନେ ବିଭିନ୍ନ ସମୟରେ ଅଧିକ ସାହିତ୍ୟ ଆଲୋଚନା ପାଇଁ ଓ ଓଡ଼ିଶାର ବରିଷ୍ଠ ସାହିତ୍ୟିକମାନଙ୍କର ଜୟନ୍ତୀ ତଥା ଶ୍ରାଦ୍ଧୋତ୍ସବ ପାଳନ କରିବା ଲାଗି ସ୍ୱତନ୍ତ୍ର ଉତ୍ସବର ଆୟୋଜନ କରିଥିଲୁ । ଏ ବର୍ଷ ପାଠଚକ୍ର ପକ୍ଷରୁ ମାଟିଲା ଶ୍ରାଦ୍ଧୋତ୍ସବ, ଗଙ୍ଗାଧର ଜୟନ୍ତୀ, ରାଧାନାଥ ଶ୍ରାଦ୍ଧୋତ୍ସବ, ନୀଳକଣ୍ଠ ଶ୍ରାଦ୍ଧୋତ୍ସବ, ପଣ୍ଡିତ ଗୋଦାବରୀଶ

ଶ୍ରାଦ୍ଧୋତ୍ସବ, ପ୍ରତ୍ନତାତ୍ତ୍ୱିକ ପରମାନନ୍ଦ ଆଚାର୍ଯ୍ୟ ଓ ପଣ୍ଡିତ ବିନାୟକ ମିଶ୍ରଙ୍କ ବିୟୋଗରେ ଶୋକସଭା ଆଦି ଅନୁଷ୍ଠିତ ହୋଇଥିଲା । ଗୋଦାବରୀଶ ଶ୍ରାଦ୍ଧୋତ୍ସବରେ ପୂର୍ବତନ କୁଳପତି ଡକ୍‌ଟର ଘନଶ୍ୟାମ ମହାପାତ୍ର ଗୋଦାବରୀଶଙ୍କ ପ୍ରତିମୂର୍ତ୍ତିରେ ମାଲ୍ୟାର୍ପଣ କରିଥିଲେ ଓ ଶ୍ରାଦ୍ଧୋତ୍ସବରେ ଉତ୍କଳ ବିଶ୍ୱବିଦ୍ୟାଳୟର ଦର୍ଶନ ବିଭାଗର ପ୍ରାଧ୍ୟାପକ ଡକ୍‌ଟର ଗଣେଶ୍ୱର ମିଶ୍ର ମୁଖ୍ୟ ଅତିଥି ଏବଂ ପ୍ରାଣନାଥ ମହାବିଦ୍ୟାଳୟର ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ଶ୍ରୀ ଅବନୀ କୁମାର ବରାଳ ମୁଖ୍ୟବକ୍ତା ଭାବରେ ଯୋଗଦେଇ ଗୋଦାବରୀଶଙ୍କ ବହୁମୁଖୀ ପ୍ରତିଭା ଉପରେ ଆଲୋକପାତ କରିଥିଲେ । ନୀଳକଣ୍ଠ ଶ୍ରାଦ୍ଧୋତ୍ସବରେ ସାମନ୍ତଚନ୍ଦ୍ରଶେଖର ମହାବିଦ୍ୟାଳୟର ଇତିହାସ ବିଭାଗର ମୁଖ୍ୟ ଅଧ୍ୟାପକ ଶ୍ରୀ ରାଜେନ୍ଦ୍ର ପ୍ରସାଦ ଦାସ ଓ ଗଙ୍ଗାଧର ଜୟନ୍ତୀରେ ଅଧ୍ୟାପକ ଅବନୀ କୁମାର ବରାଳ ମୁଖ୍ୟ ଅତିଥି ଭାବରେ ଯୋଗଦେଇ ଯଥାକ୍ରମେ ନୀଳକଣ୍ଠ ଓ ଗଙ୍ଗାଧରଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଥିଲେ ।

ଏବର୍ଷ ପାଠଚକ୍ରରେ ସାହିତ୍ୟ ସମ୍ପର୍କୀୟ ବିଭିନ୍ନ ମୌଖିକ ଆଲୋଚନା ବ୍ୟତୀତ ଅଧ୍ୟାପକ ଓ ଛାତ୍ରଛାତ୍ରୀମାନଙ୍କର ନିମ୍ନଲିଖିତ ପ୍ରବନ୍ଧ ପଠିତ ଓ ଆଲୋଚିତ ହୋଇଥିଲା ।

ଡକ୍‌ଟର କୃଷ୍ଣଚରଣ ସାହୁ—କହେ କବି କୃଷ୍ଣ ଦାସ ।

ସୁରେନ୍ଦ୍ର ନାଥ ଦାଶ—ସତ୍ୟବାଦୀ ଚିନ୍ତାଧାରା ଓ ସାହିତ୍ୟିକ ଗୋଦାବରୀଶ, ଗଙ୍ଗାଧର ସାହିତ୍ୟର କେତୋଟି ଦିଗ, ବ୍ରାହ୍ମଧର୍ମ ଓ ରାଷ୍ଟ୍ରିପାଣେ ଦେବାବତରଣ, ମାଦଳା ପାଞ୍ଜିର ସାହିତ୍ୟିକ ଓ ଐତିହାସିକ ମୂଲ୍ୟ, କୋଣାର୍କରେ ନୀଳକଣ୍ଠଙ୍କର କବି ମାନସ ।

ଭଗବାନ ମହାପାତ୍ର—ସମାଜ ସଂସ୍କାରକ ନୀଳକଣ୍ଠ ।

ଲକ୍ଷ୍ମୀଧର ପଣ୍ଡା— ସୁଶିକ୍ଷିତ ଗୋଦାବରୀଶ, ବ୍ରହ୍ମଚେତା ମଧୁସୂଦନ, କୃଷକ ପ୍ରାଣ ଗଙ୍ଗାଧର, ନୀଳକଣ୍ଠଙ୍କ ଉତ୍କଳୀୟ ସଂସ୍କୃତି ଚେତନା ।

ବିଜୟ ବସନ୍ତ ଦାସ—ଗୋଦାବରୀଶଙ୍କ ସାହିତ୍ୟରେ ପ୍ରଣୟ ଓ ପରିଣୟର ଭାବଚେତନା, ମୋ ଦୃଷ୍ଟିରେ କୋଣାର୍କେ ଓ ତାର କବି ନୀଳକଣ୍ଠ, ରାଧାନାଥ ସ୍ମରଣେ—ଏକ ସସ୍ନେହ ପଶ୍ଚାଦ୍‌ଦୃଷ୍ଟି, ନୈତିକତା ମାନଦଣ୍ଡରେ ମଧୁସୂଦନ ସାହିତ୍ୟର ମୂଲ୍ୟାୟନ ।

ଦୀନବନ୍ଧୁ ସାମଲ— ସାହିତ୍ୟିକ ଓ ଭାଷାବିତ୍ ନୀଳକଣ୍ଠ, ବ୍ରାହ୍ମଧର୍ମ ଓ କୁସୁମାଞ୍ଜଳିରେ ମଧୁସୂଦନଙ୍କ ବ୍ରହ୍ମଚେତନା ।

ମଧୁସୂଦନ ପରିଡ଼ା— ଔପନ୍ୟାସିକ ଗୋଦାବରୀଶ ।

କୃଷ୍ଣପ୍ରିୟା ଜେନା— ସ୍ୱଳ୍ପସ୍ଥ କାବ୍ୟରେ ନୀଳକଣ୍ଠଙ୍କ ବ୍ୟକ୍ତିତ୍ୱ ।

ସୁଷମା ପରିଡ଼ା— ଉଗ୍ର ପ୍ରାଦେଶିକତା ବାଦୀ କବି ନୀଳକଣ୍ଠ, ମେହେର ସୃଷ୍ଟିରେ ପୁରୁଷ ଦୃଷ୍ଟିରେ ନାରୀ ।

ଗୀତା ଉଦ୍‌ଗାତା— ଗୋଦାବରୀଶଙ୍କ ସାହିତ୍ୟରେ ନୀତିନିଷ୍ଠତା, ବ୍ରାହ୍ମଧର୍ମ ଓ ମଧୁସୂଦନଙ୍କର କେତୋଟି କବିତା, କବି ମେହେରଙ୍କ ଜୀବନ ଦର୍ଶନ ଓ ପ୍ରକୃତି ଦର୍ଶନ ।

ସୁଷମା ସାହୁ— ବ୍ରାହ୍ମଧର୍ମ ଓ ଭକ୍ତକବି ମଧୁସୂଦନ, ମେହେର ସାହିତ୍ୟର ମହତ୍ତ୍ୱ ।

ଶର୍ମିଷ୍ଠା ପ୍ରଭା ମହାନ୍ତି—ସାହିତ୍ୟ ସାଧକ ଗଙ୍ଗାଧର ।

ହେମନ୍ତ ଦାସ – ମେହେରଙ୍କ ଲେଖନୀରେ ପ୍ରକୃତି ଓ ପ୍ରେମ ।

କୁଳମଣି ନାୟକ—ପତ୍ରାବଳୀରେ ଗଙ୍ଗାଧରଙ୍କ ବ୍ୟକ୍ତିତ୍ୱ, ବ୍ରହ୍ମର୍ଷି ମଧୁସୂଦନ ଓ ତାଙ୍କ ସାହିତ୍ୟ ।

ରବୀନ୍ଦ୍ର କୁମାର ମହାନ୍ତି—ମହାଯାତ୍ରା ରାଧାନାଥ ପ୍ରତିଭାର ଜୟଯାତ୍ରା ।

ରଜନୀକାନ୍ତ ଗିରି— ରାଧାନାଥଙ୍କ କାବ୍ୟରେ ନାରୀ ।

ନରେନ୍ଦ୍ର କୁମାର ପଟ୍ଟନାୟକ—ରାଧାନାଥଙ୍କ ସାହିତ୍ୟରେ ପ୍ରକୃତି ।

ଏବର୍ଷ ପାଠଚକ୍ରର ଏକ ଆକର୍ଷଣୀୟ ଉତ୍ସବ ଥିଲା କବିତା ପାଠୋତ୍ସବ । ଏହି ଉତ୍ସବରେ ଡକ୍ଟର ବଂଶୀଧର ମହାନ୍ତି ପୌରହିତ୍ୟ କରିଥିଲେ । ସାହିତ୍ୟ ଏକାଡେମୀର ସଂପାଦକ ଓ ବିଶିଷ୍ଟ କବି ଶ୍ରୀ ବିନୋଦ ଚନ୍ଦ୍ର ନାୟକ ମୁଖ୍ୟ ଅତିଥି ଭାବରେ, ଓଡ଼ିଶାର ଡେପୁଟି ଏ: ଜ: ଶ୍ରୀ ହରପ୍ରସାଦ ଦାସ ମୁଖ୍ୟବକ୍ତା ଓ ନୟାଗଡ଼ ମହାବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ ନିମାଇଚରଣ ପଟ୍ଟନାୟକ ଅନ୍ୟତମ ଅତିଥି ବକ୍ତା ଭାବରେ ଯୋଗଦେଇ ଆଧୁନିକ ଓଡ଼ିଆ କବିତାର ପ୍ରକୃତି ଓ ଅଭିମୁଖ୍ୟ ଉପରେ ଆଲୋକପାତ କରିଥିଲେ । ଡକ୍ଟର କୃଷ୍ଣବିହାରୀ ଦାଶ ମଧ୍ୟ ନିଜ କବି ଜୀବନର ଅଭିଜ୍ଞ ଦୃଷ୍ଟିକୋଣରୁ ସାଂପ୍ରତିକ ଓଡ଼ିଆ କବିତାର ସମୀକ୍ଷା କରିଥିଲେ । ଡକ୍ଟର ମହାନ୍ତି ଉନ୍ନତ ଭାବ ଓ ଉନ୍ନତ ରୁଚି ନେଇ କାଳଜୟୀ କବିତା ରଚନା କରିବା ପାଇଁ କବିମାନଙ୍କୁ ଉଦ୍‌ବୋଧନ ଦେଇଥିଲେ ।

ପାଠଚକ୍ରର ସାହିତ୍ୟ ଆଲୋଚନା ବ୍ୟତୀତ ନିୟମିତ ଅଧ୍ୟୟନର ସୁବିଧା ପାଇଁ ବିଭାଗୀୟ ଶ୍ରେଣୀ କକ୍ଷରେ ଏକ ସ୍ୱତନ୍ତ୍ର ପାଠାଗାରର ବ୍ୟବସ୍ଥା ରହିଛି । ପାଠାଗାରର ସଂପାଦକ ଶ୍ରୀ ଭଗବାନ ମହାପାତ୍ରଙ୍କର ତତ୍ତ୍ୱାବଧାନରେ ପାଠାଗାର ପ୍ରତ୍ୟହ ପୂର୍ବାହ୍ଣରେ ତିନିଘଣ୍ଟା ଅପରାହ୍ଣରେ ତିନିଘଣ୍ଟା ଖୋଲାରହେ ଏବଂ ଛାତ୍ରଛାତ୍ରୀମାନେ ଏଠାରେ ନିୟମିତ ପଢ଼ାପଢ଼ି କରିଥାନ୍ତି । ବର୍ତ୍ତମାନ ପାଠାଗାରରେ ପୁସ୍ତକସଂଖ୍ୟା ଏକହଜାର ଏକଶହ ଚଉତିରିଶ । ଏଥିପାଇଁ ବିଶ୍ୱବିଦ୍ୟାଳୟ ଗ୍ରନ୍ଥାଗାର ଗବେଷଣାମୂଳକ ଗ୍ରନ୍ଥ ଯୋଗାଇ ଦେଇଛି । ପାଠଚକ୍ର ଆନୁକୂଲ୍ୟରେ ପାଠାଗାରରେ 'ପତ୍ରପତ୍ରିକା ବିଭାଗ' ସ୍ୱତନ୍ତ୍ର ଭାବରେ ରଖାଯାଇଛି ଓ ବିଭିନ୍ନ ଭାଷାର ପତ୍ରପତ୍ରିକା ଅଧ୍ୟେତାମାନଙ୍କ ପାଇଁ ଗଚ୍ଛିତ ରହିଛି ।

ବିଭାଗର ସାହିତ୍ୟିକ କାର୍ଯ୍ୟକ୍ରମ ବ୍ୟତୀତ ଏହି ବିଭାଗର ଛାତ୍ରମାନେ ବିଶ୍ୱବିଦ୍ୟାଳୟ ଛାତ୍ର ସଂସଦ ଓ ଛାତ୍ରାବାସମାନଙ୍କରେ ବିଭିନ୍ନ କ୍ଷେତ୍ରରେ କୃତିତ୍ୱ ଅର୍ଜନ କରିଛନ୍ତି ।

ଶ୍ରୀ ରବୀନ୍ଦ୍ର କୁମାର ମହାନ୍ତି ଛାତ୍ର ସଂସଦ ଆନୁକୂଲ୍ୟରେ ଆୟୋଜିତ ଓଡ଼ିଆ ଗଳ୍ପ ପ୍ରତିଯୋଗିତାରେ ପ୍ରଥମ, ଶ୍ରୀ ବିଜୟ ବସନ୍ତ ଦାସ ପ୍ରଥମ ଛାତ୍ରାବାସ ଓଡ଼ିଆ ପ୍ରବନ୍ଧ ପ୍ରତିଯୋଗିତାରେ ପ୍ରଥମ, ଗଳ୍ପ ପ୍ରତିଯୋଗିତାରେ ପ୍ରଥମ, କବିତା ପ୍ରତିଯୋଗିତାରେ ତୃତୀୟ, ଶ୍ରୀ ଚନ୍ଦ୍ରଶେଖର ଦାସ ଏ ଛାତ୍ରାବାସର ତର୍କ ପ୍ରତିଯୋଗିତାରେ ଦ୍ୱିତୀୟ, ପାର୍ଶ୍ୱ ଅଭିନେତା ଭାବରେ ପ୍ରଥମ, ଶ୍ରୀ ନରେନ୍ଦ୍ର କୁମାର ପଟ୍ଟନାୟକ ଓ ଶ୍ରୀ ସୁରେନ୍ଦ୍ରନାଥ ଦାଶ ଦ୍ୱିତୀୟ ଛାତ୍ରାବାସ ପ୍ରବନ୍ଧ ପ୍ରତିଯୋଗିତାରେ ଯଥାକ୍ରମେ ପ୍ରଥମ ଓ ତୃତୀୟ ସ୍ଥାନ ଅଧିକାର କରିଅଛନ୍ତି । ଏହି ବିଭାଗର ଛାତ୍ରୀ କୁମାରୀ ହେମନ୍ତ ଦାସ ଛାତ୍ରୀ ନିବାସର ସାଧାରଣ ସମ୍ପାଦିକା ଭାବରେ ନିର୍ବାଚିତ ହେବାର ଗୌରବ ଅର୍ଜନ କରିଛନ୍ତି । ଛାତ୍ରୀ ନିବାସର ଟେବୁଲ ଟେନିସ ପ୍ରତିଯୋଗିତାରେ ଆମ ବିଭାଗର ଛାତ୍ରୀ କୁମାରୀ ଶର୍ମିଷ୍ଠାପ୍ରଭା ମହାନ୍ତି ରନର୍ସ-ଅପ୍ ହେବାର କୃତିତ୍ୱ ହାସଲ କରିଛନ୍ତି ।

ଏବର୍ଷ ବିଭିନ୍ନ ସ୍ଥାନ ପର୍ଯ୍ୟଟନ କାର୍ଯ୍ୟକ୍ରମ ଥିଲା ଅତୀବ ଆନନ୍ଦଦାୟକ । ବିଭାଗୀୟ ରିଡ଼ର୍ ଡକ୍ଟର କୃଷ୍ଣଚରଣ ସାହୁଙ୍କ ନେତୃତ୍ୱରେ ଏହି ବିଭାଗର ଛାତ୍ରମାନେ ଜାମ୍‌ସେଦ୍‌ପୁର, ନାଗପୁର, ବମ୍ବେ ହାଇଦ୍ରାବାଦ ପ୍ରଭୃତି ପ୍ରସିଦ୍ଧ ସ୍ଥାନ ପରିଭ୍ରମଣ କରିଆସିଛନ୍ତି । ଏ ପର୍ଯ୍ୟଟନ ବେଳେ ଅଧ୍ୟାପକ ଶ୍ରୀ ସାହୁଙ୍କର ସ୍ନେହ ଓ ମମତା ଆମର ସବୁଦିନ ପାଇଁ ମନେ ରହିବ । ଆମେମାନେ ଆମର ଅଧ୍ୟାପକମାନଙ୍କ ସହିତ ନରାଜ, ଧବଳେଶ୍ୱର ଓ ନନ୍ଦନକାନନ ପର୍ଯ୍ୟଟନରେ ଯାଇଥିଲୁ ଓ ନରାଜ ଏବଂ ନନ୍ଦନକାନନଠାରେ ଆମୋଦ-ଦାୟକ ବଣଭୋଜି କରିଥିଲୁ । ଏ ବର୍ଷ ନଭେମ୍ବର ଓ ବୈଦିକ ରୀତିରେ ଆମ୍ଭେମାନେ ଗଣନାଥ ଓ ବାଗ୍‌ଦେବୀଙ୍କର ଆବାହନ କରିଥିଲୁ ।

ଆମ ବିଭାଗର ଆଠଜଣ ଛାତ୍ର ଉତ୍କଳ ବିଶ୍ୱବିଦ୍ୟାଳୟ ଜାତୀୟ ସେବାବାହିନୀ ବାଣୀବିହାର ଶାଖାରେ ଯୋଗ ଦେଇଛନ୍ତି । ଅଧ୍ୟାପକ ଶ୍ରୀ ବାସୁଦେବ ସାହୁ ଏହି ଜାତୀୟ ସେବାବାହିନୀର ତତ୍ତ୍ୱାବଧାରକ ଭାବରେ ନିଯୁକ୍ତ ହୋଇଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ଛାତ୍ର କଲ୍ୟାଣ ନିର୍ଦ୍ଦେଶକ ଶ୍ରୀଯୁକ୍ତ ରମାପଦ ଚନ୍ଦଙ୍କ ସହିତ ଜଗତ୍‌ସିଂହପୁରଠାରେ ଅନୁଷ୍ଠିତ କେନ୍ଦ୍ର ଶ୍ରମଶିବିରର ପରିଚାଳନା ଦାୟିତ୍ୱରେ ରହି ଏକ ପୁଷ୍କରିଣୀ ଖନନ କରାଇଛନ୍ତି ଓ ଏକ କ୍ଷୁଦ୍ର ରାସ୍ତା ନିର୍ମାଣ କରାଇଛନ୍ତି ।

ଏହିପରି ଭାବରେ ଆମ ବିଭାଗର କର୍ମମୟ ଗୋଟିଏ ବର୍ଷ ବିତିଯାଇଛି । ଆମ ବିଭାଗ ମାତ୍ର ତିନି ବର୍ଷର ଶିଶୁ ହେଲେହେଁ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କର ସଦୟ ଓ ସସ୍ନେହ ଯତ୍ନ ଫଳରେ ବିଶେଷ ଅସୁବିଧାର ସମ୍ମୁଖୀନ ହୋଇନାହୁଁ । ସେଥିପାଇଁ ଆମେ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଅଛୁ ।

ଅଭୟରେ କହିରଖେ ଓଡ଼ିଆ ଭାଷାର ଇତିହାସ, ଓଡ଼ିଆ ସାହିତ୍ୟର ଇତିହାସ, ଓଡ଼ିଆ ସାହିତ୍ୟର ସମାଲୋଚନା ଓ ଗବେଷଣାର ପ୍ରସାର ସାଧନ କରିବା ହେଉଛି ଆମ ବିଭାଗ ସୃଷ୍ଟିର ଅଭିମୁଖ୍ୟ । ଅନ୍ୟାନ୍ୟ ଭାଷାର ଅଧ୍ୟୟନ ଓ ଗବେଷଣା ମଧ୍ୟ ଏହି ବିଭାଗ ସୃଷ୍ଟିର ଏକ ସମାନ୍ତରାଳ ଲକ୍ଷ୍ୟ । ଏହି ଆଦର୍ଶ ଲକ୍ଷ୍ୟରେ ପହଞ୍ଚିବା ପାଇଁ ଏକ ଆଦର୍ଶ ଗବେଷଣା କେନ୍ଦ୍ର ଓ ଶିକ୍ଷାପୀଠ ରୂପେ ଏ ବିଭାଗ ଗଢ଼ିଉଠୁ—ଏହାହିଁ ଆମର ସ୍ୱପ୍ନ ।

ଏହି ସ୍ୱପ୍ନକୁ ବାସ୍ତବରେ ପରିଣତ କରିବା ପାଇଁ ଆମେ ଆମ ଯାତ୍ରା ପଥରେ ସାଧନାକୁ ପାଥେୟ କରି କାର୍ଯ୍ୟକରି ଚାଲିଛୁ । ଆମର କୁଳପତି ଡକ୍ଟର ରମାନାଥ ମହାନ୍ତି ସ୍ନାତକୋତ୍ତର ପରିଷଦ ମୁଖ୍ୟ ଡକ୍ଟର ବିଦ୍ୟାଧର ମିଶ୍ର ଆମ୍ଭମାନଙ୍କୁ ଏ ଦିଗରେ ଯଥେଷ୍ଟ ପ୍ରେରଣା ଦେଇଛନ୍ତି । ସେମାନଙ୍କୁ ଆମେ ସଭକ୍ତି କୃତଜ୍ଞତା ଜ୍ଞାପନ କରୁଅଛୁ । ଆମ ବିଭାଗର ମୁଖ୍ୟ ଅଧ୍ୟାପକ ଡକ୍ଟର ବଂଶୀଧର ମହାନ୍ତି, ରିଡ଼ର୍ ଡକ୍ଟର କୃଷ୍ଣଚରଣ ସାହୁ, ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀ, ଅଧ୍ୟାପକ ବାସୁଦେବ ସାହୁ, ଡକ୍ଟର କୁଞ୍ଜବିହାରୀ ଦାଶ ଓ ଅଧ୍ୟାପକ ଦେବେନ୍ଦ୍ର ମହାନ୍ତିଙ୍କର ସ୍ନେହ, ସାହାଯ୍ୟ ମମତ୍ୱ ସଦୁପଦେଶ ଓ ଚିନ୍ତା ଆମ ଜୀବନରେ ଚିର ଅଭୁଲା ହୋଇ ରହିବ ।

ଆଜିର ଉତ୍ସବରେ ପୌରହିତ୍ୟ କରିଛନ୍ତି କୁଳପତି ଡକ୍ଟର ରମାନାଥ ମହାନ୍ତି । ସମ୍ମାନିତ ଅତିଥି ଭାବରେ ଯୋଗ ଦେଇଛନ୍ତି ଓଡ଼ିଆ ସାହିତ୍ୟର ଦୁଇଜଣ ସମର୍ଥ ସାରଥି ଶ୍ରୀଯୁକ୍ତ ଅନନ୍ତ ଚରଣ ପଟ୍ଟନାୟକ ଓ ଶ୍ରୀଯୁକ୍ତ ମନୋରଞ୍ଜନ ଦାସ—ଜଣେ ଓଡ଼ିଶାର କ୍ରାନ୍ତି କବି ଓ ଜଣେ ନାଟକ କ୍ଷେତ୍ରରେ ନୂତନ ଦିଗ୍‌ବଳୟର ସନ୍ଧାନୀ । ଏହି ଦୁଇ ସ୍ୱନାମଧନ୍ୟ ସାହିତ୍ୟିକଙ୍କୁ ପାଇ ଆମେ ଧନ୍ୟ ଓ ସେମାନଙ୍କୁ ମୁଁ ବିଭାଗ ତରଫରୁ ଅଶେଷ କୃତଜ୍ଞତା ଜଣାଉଛି । ସୁଧୀବୃନ୍ଦ, ଆପଣମାନେ ଏ ଉତ୍ସବକୁ ମଧୁମୟ କରିଛନ୍ତି—ଆପଣ-ମାନଙ୍କ ପାଇଁ ମଧ୍ୟ ଆମର ଗଭୀର କୃତଜ୍ଞତା ନିବେଦିତ ହେଲା ।

ଆମେ ଆସିଛୁ, ଆମେ ଚାଲିଯିବୁ । ଏହି ଅନୁଷ୍ଠାନ ଏହିପରି ରହିଥିବ । ଜୀବନକୁ କର୍ମମୟ ଉଲ୍ଲାସମୟ କରିବା ଲାଗି ଅନୁଷ୍ଠାନ ବ୍ୟକ୍ତିକୁ ଦିଏ ପ୍ରେରଣା । ସେହିପରି ବ୍ୟକ୍ତିର ସାଧନା ଓ ଅବଦାନ ଅନୁଷ୍ଠାନକୁ କରେ ବର୍ଦ୍ଧିଷ୍ଣୁ । ଆମ ବିଭାଗ ଆମ ଜୀବନକୁ ବାସ୍ତବରେ କରିଛି କର୍ମମୟ ଓ ଉଲ୍ଲାସମୟ ଏବଂ ହୋଇଛି ଆମ ପ୍ରାଣ ପ୍ରେରଣାର ଉତ୍ସ । ବିନିମୟରେ ଆମ ବିଭାଗ ପ୍ରତି ଆମର ରହିଛି ଗୁରୁ ଦାୟିତ୍ୱ । ସେ ଦାୟିତ୍ୱ ତୁଲାଇବା ପାଇଁ ସେହି କର୍ତ୍ତବ୍ୟ ପାଳନ ପାଇଁ ଶକ୍ତି ଅର୍ଜନ କରିବା ଲାଗି ଆପଣମାନଙ୍କର ଆଶୀର୍ବାଦ ହେଉ ଆମ ଜୀବନର ପାଥେୟ ।

ଜୟହିନ୍ଦ୍

ଶ୍ରୀ ବାସୁଦେବ ସାହୁ
ଉପଦେଷ୍ଟା, ପାଠଚକ୍ର, ଓଡ଼ିଆ ବିଭାଗ
୧୯।୪।୭୨

ସୁରେନ୍ଦ୍ରନାଥ ଦାଶ
ସମ୍ପାଦକ, ଓଡ଼ିଆ ବିଭାଗ ପାଠଚକ୍ର
୧୯।୪।୭୨